# ମଗଧର ମହାରାଣୀ

ଡକ୍ଟର ବିଧୁପ୍ରଭା ରଥ

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦ ବିହାରୀ, କଟକ-୨

# ମଗଧର ମହାରାଣୀ

■
ଲେଖିକା :
ଡକ୍ଟର ବିଧୁପ୍ରଭା ରଥ
■
ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦ ବିହାରୀ, କଟକ - ୭୫୩୦୦୨
■
ପ୍ରଥମ ସଂସ୍କରଣ : ୨୦୨୦
■
ପ୍ରଚ୍ଛଦ : ବିଜୟ ପ୍ରଧାନ
■
ଅକ୍ଷରସଜ୍ଜା :
ଜି.କେ. ପ୍ରିଣ୍ଟର୍ସ, କଟକ - ୨
■
ମୁଦ୍ରଣ :
ସ୍ୱସ୍ତିକ ପ୍ରିଣ୍ଟର୍ସ, କଟକ
■
ମୂଲ୍ୟ : ଟ. ୧୪୫.୦୦

# MAGADHARA MAHARANI

■
Writer :
**Dr. Bidhuprava Rath**
■
Publisher :
**Sri Gangadhar Tripathy**
**Prachi Sahitya Pratisthan**
Binod Behari, Cuttack - 753002
■
First Edition : 2020
■
Cover Design
**Bijay Pradhan**
■
Laser Typeset :
**G.K. Printers, Cuttack - 2**
■
Printer :
**Swastik Printers, Cuttack**
■
Price : Rs. 145.00

ଉଜ୍ଜୟିନୀ ମହାକାଳମନ୍ଦିର ପ୍ରାଙ୍ଗଣର ନାଟମନ୍ଦିର ଉତ୍ସବ ମୁଖର ।

ସମ୍ରାଟ ସମୁଦ୍ରଗୁପ୍ତଙ୍କ ଜୀବନର ଷଷ୍ଠୀପୂର୍ତ୍ତି ପାଇଁ ଉତ୍ସବର ଆୟୋଜନ ।

ଗୁପ୍ତସାମ୍ରାଜ୍ୟ ଅଧୀନ ବିଭିନ୍ନ ଛୋଟ ବଡ଼ ରାଜ୍ୟ ଓ ମିତ୍ରରାଜ୍ୟ ଗୁଡ଼ିକର ଜନପଦ ଗୁଡ଼ିକରୁ ଆସିଛନ୍ତି, ଶ୍ରେଷ୍ଠୀ– ସାମନ୍ତ ଏବଂ ସେମାନଙ୍କ ହେପାଜତରେ ବହୁ ନଟ–ନଟୀ ଓ ନୃତ୍ୟାଙ୍ଗନା ।

ନାନାରଙ୍ଗୀ – ନାନାଭଙ୍ଗୀର ମୁଦ୍ରାରେ ନଟ–ନଟୀ... ନୃତ୍ୟାଙ୍ଗନାମାନେ ମହାକାଳଙ୍କ ଆଶୀର୍ବାଦ ଓ ନୃତ୍ୟ ଉତ୍ସବରେ ପ୍ରମୁଖ ଭାବେ ସିଂହାସନରେ ଆରୂଢ଼ ମଗଧ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଅନୁକମ୍ପା ଆଶାରେ ବିପୁଳ ଉତ୍ସାହ ଉଦ୍ଦୀପନା ମଧ୍ୟରେ ନୃତ୍ୟ ପରିବେଷଣ କରୁଛନ୍ତି ।

ମଗଧ ସମ୍ରାଟ ସମୁଦ୍ରଗୁପ୍ତ ! ନୃତ୍ୟ ଓ ସଙ୍ଗୀତମୁଖର ଉତ୍ସବର କୋଳାହଳ ଭିତରେ ଅଶ୍ୱମେଧ ଯଜ୍ଞକର୍ତ୍ତା, ପରମଭଟ୍ଟାରକ ସମୁଦ୍ରଗୁପ୍ତ ନିଜର ଘାତ ପ୍ରତିଘାତ, ସଂଘର୍ଷମୟ ଜୀବନର ଅତୀତ ଭିତରକୁ ଉଡ଼ିଯାଇଥିଲେ । ଆଜି ତାଙ୍କର ଜୀବନର ଷଷ୍ଠୀପୂର୍ତ୍ତି ଉତ୍ସବ ଚାଲିଛି । ଜୀବନ କାଳର ଷାଠିଏ ବର୍ଷ ପୂରିଗଲା । କୋଡ଼ିଏ ବର୍ଷର ଯୌବନରୁ ସେ ଆରମ୍ଭ କରିଥିଲେ ଜୀବନର ସଂଘର୍ଷମୟ ଯାତ୍ରା । କୋଡ଼ିଏରୁ ଷାଠିଏ... ଏଇ ଚାଳିଶ ବର୍ଷର ଜୀବନଯାତ୍ରା ମଧ୍ୟରେ କେତେ ରକ୍ତପାତ, ଯୁଦ୍ଧ । ଗୁପ୍ତ ସାମ୍ରାଜ୍ୟ ପ୍ରତିଷ୍ଠା ପାଇଁ, ସମଗ୍ର ଭାରତବର୍ଷକୁ ଏକତା ସୂତ୍ରରେ, ଏକ ଶାସନର ଛତ୍ରଛାୟା ତଳେ ରଖି ବିଦେଶୀ ଯବନ ଆକ୍ରମଣକାରୀମାନଙ୍କୁ ନିପାତ କରିବାପାଇଁ ସେ କେତେ ଉଦ୍ୟମ କରିନାହାନ୍ତି । ସମର ଯାତ୍ରାବେଳେ ଜୀବନକୁ ପଣ କରି ମଗଧର ଯୁଦ୍ଧଯାତ୍ରାରେ ନିଜେ ନାୟକ ହୋଇଛନ୍ତି ।

ନିଜ ଭିତରେ ନିଜେ ହଜିଯାଇଥିଲେ ସମ୍ରାଟ ସମୁଦ୍ରଗୁପ୍ତ । ...ଗୁପ୍ତ ସାମ୍ରାଜ୍ୟର ପ୍ରତିଷ୍ଠାତା ହେ ସମୁଦ୍ରଗୁପ୍ତ ! ମଣିଷର ଜୀବନଟା କ'ଣ କି ? ଗୋଟେ ନଈ । ନଦୀ

କେବେ ଆକାଶୀ ବର୍ଷା ଜଳରେ ପୂର୍ଣ୍ଣଗର୍ଭା, ପ୍ରଖର ସ୍ରୋତର ସ୍ରୋତସ୍ୱିନୀ ତ କେବେ ଶୂନ୍ୟଗର୍ଭା..... ଶୁଷ୍କ ବାଲୁକା ପ୍ରାନ୍ତର । ନଦୀର ଦୁଇଟି କୂଳ । ଗୋଟିଏ ସୁଖମୟ ତ ଆରକୂଳ ଦୁଃଖମୟ । ଏଇତ ଜୀବନ । ଏଇ ସୁଖ-ଦୁଃଖ, ହର୍ଷ ଉଲ୍ଲାସ, ନିରାଶମୟ ଜୀବନକୁ ପ୍ରତିଟି ମଣିଷ ତା'ର ଜୀବନକାଳରେ ଭୋଗ କରେ । ସେ ହୋଇପାରେ ଜଗତର ଦୁଃଖୀରଙ୍କି ଦରିଦ୍ର ତ, ହୋଇପାରେ ରାଜା, ମହାରାଜା, ଏକଛତ୍ରପତି ସମ୍ରାଟ ।

ମଗଧ ସମ୍ରାଟ ସମୁଦ୍ରଗୁପ୍ତ ସମଗ୍ର ଭାରତବର୍ଷର ଯେତେ ସବୁ ଛୋଟ ବଡ଼ ରାଜ୍ୟ ଜନପଦକୁ ଅଶ୍ୱମେଧ ଯଜ୍ଞ ମାଧମରେ ନିଜ ଦଖଲକୁ ଆଣିବା ମଧରେ ମଗଧ ସାମ୍ରାଜ୍ୟର ଥିଲା ଦୁଇଟି ରାଜଧାନୀ । ପାଟଳୀପୁତ୍ର ଓ ଉଜ୍ଜୟିନୀ । ପାଟଳୀପୁତ୍ରର ରାଜସିଂହାସନରେ ବସି ସେ ଭାରତବର୍ଷର ଉତ୍ତର ପଶ୍ଚିମ ପୂର୍ବାଞ୍ଚଳକୁ ନିୟନ୍ତ୍ରଣ କରୁଥିବାବେଳେ ଉଜ୍ଜୟିନୀର ରାଜସିଂହାସନରେ ବସି ଦକ୍ଷିଣାବର୍ତ୍ତର ଶାସନ ନିୟନ୍ତ୍ରଣ କରୁଥିଲେ ।

ଉଜ୍ଜୟିନୀର ମହାକାଳ ହେଉଛନ୍ତି ତାଙ୍କ ଗୁପ୍ତବଂଶର ଆରାଧ ଦେବତା । ମହାକାଳଙ୍କ ଆଶୀର୍ବାଦ କାମନାରେ ସେ ତାଙ୍କର ଷାଠିଏ ବର୍ଷପୂର୍ତ୍ତିର ଜନ୍ମ ଜୟନ୍ତୀ ପାଳନ ପାଇଁ ମଗଧ ସାମ୍ରାଜ୍ୟର ପ୍ରମୁଖ ରାଜଧାନୀ ପାଟଳୀପୁତ୍ରରୁ ଆସିଛନ୍ତି ଦ୍ୱିତୀୟ ରାଜଧାନୀ ଉଜ୍ଜୟନୀକୁ ।

ଉଜ୍ଜୟନୀ ରାଜପ୍ରାସାଦ ସହିତ ମହାକାଳଙ୍କ ବିଶାଳ ଭବ୍ୟମନ୍ଦିର ସଂଯୁକ୍ତ । ମନ୍ଦିରର ବିଶାଳ ପ୍ରାଙ୍ଗଣ ନିମନ୍ତ୍ରିତ ଅତିଥି ରାଜା ମହାରାଜା ସାମନ୍ତ ଶ୍ରେଷ୍ଠୀ ବଣିକ ସାଧାରଣ ନାଗରିକଙ୍କ ସମାବେଶରେ ଉତ୍ସବ ମୁଖର । କୋଳାହଳମୟ ।

ନୃତ୍ୟ ଉତ୍ସବ ଚାଲିଛି । ଚାଲିଛି ମହାକାଳଙ୍କ ବନ୍ଦନା ସହିତ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦୀର୍ଘ ନିରାମୟ ଜୀବନ ପାଇଁ ପ୍ରାର୍ଥନା । ସମଗ୍ର ଭାରତବର୍ଷର ରାଜନ୍ୟମଣ୍ଡଳୀ ମଧରେ ପ୍ରଜାବତ୍ସଳ ଏକଛତ୍ରପତି ମଗଧସମ୍ରାଟ ଭାବେ ଜନପ୍ରିୟ ସମୁଦ୍ରଗୁପ୍ତଙ୍କ ଜନ୍ମ ଜୟନ୍ତୀ ଉତ୍ସବ ପାଇଁ ସମଗ୍ର ଉଜ୍ଜୟିନୀ ନଗରୀରପ୍ରଜା ଉଲ୍ଲାସ ମୁଖର । ସମ୍ରାଟଙ୍କ ଷଷ୍ଠୀପୂର୍ତ୍ତି ଜୟନ୍ତୀ ଉପଲକ୍ଷେ ଉଭୟ ରାଜଧାନୀ ପାଟଳୀପୁତ୍ର ଓ ଉଜ୍ଜୟିନୀ ନଗରୀର ମନ୍ଦିର ମାନଙ୍କରେ ପୂଜାର୍ଚ୍ଚନା, ରାଜ ଭଣ୍ଡାରରୁ ସାଧାରଣ ନାଗରିକମାନଙ୍କୁ ଅନ୍ନ-ବସ୍ତ୍ର ଓ ସ୍ୱର୍ଣ୍ଣ ମୁଦ୍ରା ବିତରଣ ହେଉଛି ।

ସମୁଦ୍ରଗୁପ୍ତଙ୍କ ଯଶୋଗାନ, ଜୟ ଜୟକାରରେ ଆକାଶ-ମେଦିନୀ ସତେ ଯେମିତି ଏକାକାର ହୋଇଛି । ପ୍ରଜାମାନଙ୍କ ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ, ଦୀପମାଳାର ଆଲୋକରେ ରାଜଧାନୀର ଗଳିକନ୍ଦିକୁ ସତେଯେମିତି ସ୍ୱର୍ଗର ପରିକଳ୍ପିତ ଅମରାବତୀ

ଓହ୍ଲାଇ ଆସିଛି । ସମ୍ରାଟଙ୍କ ଜୟନ୍ତୀ ଉପଲକ୍ଷେ ମହାକାଳଙ୍କ ପାଖରେ ସମର୍ପିତ ପ୍ରସାଦ ଉଜ୍ଜୟିନୀର ଘରେ ଘରେ ପରିବେଷଣ ଚାଲିଛି ।

ନୃତ୍ୟ ଉତ୍ସବ ଚାଲିଛି । ସମ୍ରାଟ ସମୁଦ୍ରଗୁପ୍ତ ଉପଭୋଗ କରୁଛନ୍ତି ନୃତ୍ୟ ଓ ସଂଗୀତର ମହାପାର୍ବଣ ଉତ୍ସବକୁ । ରଜନୀଗନ୍ଧାର ମୋହମଗ୍ନ ସୁଗନ୍ଧିରେ ପରିବେଶ ଯେମିତି ସ୍ୱପ୍ନମୟ, ସୁଗନ୍ଧମୟ.......

କିନ୍ତୁ ?

ଜୟନ୍ତୀ ଉତ୍ସବର ଏତେ ବଡ଼ ମହାମିଳନର କୋଳାହଳ ଭିତରେ ସୁଦ୍ଧା ସମ୍ରାଟ ସମୁଦ୍ରଗୁପ୍ତ ସତେ ଯେମିତି ନିଜ ଭିତରେ ନିଃସଙ୍ଗତା, ଅସହାୟତା, କେମିତି ଏକ ଆସନ୍ନଝଡ଼ର ଆଗମନ ଅନୁଭବ କରୁଥିଲେ ।

ଜୀବନକାଳ ମଧ୍ୟରେ ସମୁଦ୍ରଗୁପ୍ତ ବହୁ ଝଡ଼, ଝଂଜାର ସମ୍ମୁଖୀନ ହୋଇଛନ୍ତି । ସମୁଦ୍ରଗୁପ୍ତଙ୍କ ପିତା ଚନ୍ଦ୍ରଗୁପ୍ତ ମଗଧ ରାଜସିଂହାସନ ଆରୋହଣ କଲାପରେ ମଗଧରେ ଗୁପ୍ତବଂଶର ରାଜୁତି ଆରମ୍ଭ ହୋଇଗଲା । ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ବହୁ ସନ୍ତାନ । କିନ୍ତୁ ସମୁଦ୍ରଗୁପ୍ତ ଅନ୍ୟ ଭ୍ରାତାମାନଙ୍କ ତୁଳନାରେ କନିଷ୍ଠ ଥିଲେ ସୁଦ୍ଧା ପିତାଙ୍କ ଦେହାନ୍ତ ପରେ, ବହୁ ରକ୍ତପାତ ମଧ୍ୟରେ ମଗଧ ସିଂହାସନ ଆରୋହଣ କରିଥିଲେ ।

ସମୁଦ୍ରଗୁପ୍ତଙ୍କ ଯୌବନକାଳ ଥିଲା ଦୁର୍ଦ୍ଦାନ୍ତ... ଦୁର୍ବାର... ଅବଦମିତ । ଅତୀତରେ ମଗଧ ସାମ୍ରାଜ୍ୟକୁ ଶାସନ କରିଛନ୍ତି ବହୁ ଦୂରଦୃଷ୍ଟିସଂପନ୍ନ ପ୍ରବଳ ପ୍ରତାପଶାଳୀ ସମ୍ରାଟ ବିମ୍ବିସାର, ଅଜାତଶତ୍ରୁ, ଉଦୟନ, ମହାପଦ୍ମନନ୍ଦ, ଚନ୍ଦ୍ରଗୁପ୍ତ ମୌର୍ଯ୍ୟ, ଅଶୋକ, ପୁଷ୍ୟମିତ୍ର ଶୁଙ୍ଗ । ଏମାନଙ୍କ ମଧ୍ୟରୁ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଗୁରୁ ଚାଣକ୍ୟ ପୁଣି ପୁଷ୍ୟମିତ୍ର ଶୁଙ୍ଗଙ୍କ ରାଜଗୁରୁ – ଆଚାର୍ଯ୍ୟ ପତଞ୍ଜଳୀ । ସମୁଦ୍ରଗୁପ୍ତଙ୍କ କାଳକୁ ମଗଧର ବଶ୍ୟତା ସ୍ୱୀକାର ନକରି ବହୁ ରାଜ୍ୟ, ଜନପଦ ନିଜକୁ ସ୍ୱାଧୀନ ଘୋଷଣା କରିଥିଲେ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଓ ଚାଣକ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ବିଶାଳ ମଗଧ ସାମ୍ରାଜ୍ୟ କ୍ରମଶଃ ସଂକୁଚିତ ହୋଇଆସିଥିଲା । ନିଜ ବାହୁ ଓ ବୁଦ୍ଧି ବଳରେ ସମୁଦ୍ରଗୁପ୍ତ ମଗଧର ଶାସନ ଡୋରି ନିଜ ହାତକୁ ଆଣିବାପରେ ପୁଣି ତାହାରି ବିସ୍ତାର ପାଇଁ ତାଙ୍କୁ ବହୁ କୂଟନୈତିକ ଓ ରାଜନୈତିକ ଖେଳ ଖେଳିବାକୁ ପଡ଼ିଛି ।

ଦୁର୍ବାର ସମୁଦ୍ରଗୁପ୍ତ । ଗୁପ୍ତବଂଶର ଗୌରବ ଓ ସ୍ୱାଭିମାନ ରକ୍ଷାପାଇଁ ବହୁ ସ୍ୱପ୍ନ ଦେଖିଛନ୍ତି । ବହୁ ସଂକଳ୍ପ ଓ ସ୍ୱପ୍ନକୁ ସମ୍ଭାବନାମୟ କରି ସାମ୍ରାଜ୍ୟ ବିସ୍ତାରର ଅଭିଯାନରେ ବାହାରିଛନ୍ତି । ଫଳରେ ଭାରତବର୍ଷର ପଶ୍ଚିମାଞ୍ଚଳର ଯମୁନା ତଥା ଚମ୍ବଲ ନଦୀ ସମୂହଠାରୁ ଆରମ୍ଭ କରି ଦକ୍ଷିଣାଞ୍ଚଳର ନର୍ମଦା ତଥା ବିନ୍ଧ୍ୟପର୍ବତମାଳା ପର୍ଯ୍ୟନ୍ତ ବ୍ୟାପ୍ତ ଆର୍ଯ୍ୟାବର୍ତ୍ତର

ରାଜ୍ୟ, ପୂର୍ବାଞ୍ଚଳରେ ସମତଟ, ଦବାକ୍ ଓ କାମରୂପ, ଉତ୍ତରରେ ନେପାଳ ଏବଂ କର୍ତ୍ତୃପୁର ତଥା ପୂର୍ବ ସମୁଦ୍ର ମାର୍ଗରେ ପ୍ରବେଶକରି ଉତ୍କଳ, କଳିଙ୍ଗ, କଙ୍ଗୋଦ ମଧଦେଇ ଦକ୍ଷିଣପଥ ମଧରେ କ୍ରମାଗତ ବାରୋଟି ରାଜ୍ୟ ଉପରେ କେବଳ ସେ ବିଜୟ ପ୍ରାପ୍ତ ହୋଇଥିଲେ ସେତିକୁ ନୁହେଁ, ଏକଛତ୍ର ଶାସକରେ ପରିଣତ ହୋଇଥିଲେ ।

ସମ୍ରାଟ ସମୁଦ୍ରଗୁପ୍ତ । ସମୁଦ୍ର ପରି ଯେମିତି ବିଶାଳ, ସେପରି ଉଦାର । ପ୍ରଜାବତ୍ସଳ । କଳା ସାହିତ୍ୟ, ଭାସ୍କର୍ଯ୍ୟ, ସଂସ୍କୃତିର ଅନନ୍ୟ ପୃଷ୍ଠପୋଷକ । ନିଜ ଶାସନକାଳର ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଯେଉଁ ପ୍ରବଳ ପ୍ରତାପୀ ଅଶ୍ୱମେଧ ଯଜ୍ଞକର୍ତ୍ତା ପରମ ଭଟ୍ଟାରକ ପ୍ରଜାବତ୍ସଳ ସମ୍ରାଟଙ୍କୁ ଦିନେ ହେଲେ ପରାଜୟର ଛାୟା ସ୍ପର୍ଶ କରିନଥିଲା, ସେହି ସମ୍ରାଟ ସମୁଦ୍ରଗୁପ୍ତ ଆଜି ତାଙ୍କର ଷଷ୍ଠୀପୂର୍ତ୍ତି ଜନ୍ମ ଜୟନ୍ତୀରେ ଏତେ କ୍ଳାନ୍ତ, ବିଷର୍ଣ୍ଣ ଦେଖାଯାଉଛନ୍ତି କାହିଁକି ?

ଜୀବନର ଷାଠିଏଟି ବର୍ଷ ବିତିଗଲା । ଏବେ ସେ କ୍ଳାନ୍ତ । ବୃଦ୍ଧ । ବାର୍ଦ୍ଧକ୍ୟ ଯେମିତି ମାଡ଼ିଆସୁଚି । ଜୀବନ ଦୀପର ତେଲ୍ ସରି ସରି ଆସୁଛି । 'କ୍ଳାନ୍ତ ପଥିକ ଶୁଅରେ... ଜୀବନ ମନ୍ଦିର ଶୁଷ୍କ ହୋଇଲା, ପାତ୍ର ଫେରାଇ ନିଅରେ'.... ନେପଥ୍ୟରେ ଥାଇ କିଏ ଯେମିତି ଜଣେ ଗୁଂଜରଣ କରୁଛି...

ସମୁଦ୍ରଗୁପ୍ତ ଦୀର୍ଘଶ୍ୱାସ ଟାଣିଲେ... ଅତୀତ ମୃତ, ଭବିଷ୍ୟତ ଅନିଶ୍ଚିତ ଆଉ ବର୍ତ୍ତମାନ ହିଁ ସତ୍ୟ........

ମହାକାଳ ମନ୍ଦିର ପ୍ରାଙ୍ଗଣରେ ବାସନ୍ତୀ ସଂଧ୍ୟାରେ ଆୟୋଜିତ ନୃତ୍ୟ ସଂଗୀତ ମହୋତ୍ସବକୁ ଉପଭୋଗ କରୁଥିବା ସାମନ୍ତ ରାଜନ୍ୟବର୍ଗ ଏତେ ମନ୍ତ୍ରମୁଗ୍ଧ, ବାଦ୍ୟ ନୃତ୍ୟ ଓ ସଂଗୀତର ମଧୁମୟ ମୂର୍ଚ୍ଛନାରେ ଭାବବିହ୍ୱଳ ହୋଇ ହୋଇ ଉଠିଥିଲେ ଯେ ସଂଧ୍ୟା ଅତିକ୍ରମ କରିସାରି ମନ୍ଦିର ପ୍ରାଙ୍ଗଣ ଉପରକୁ କେତେବେଳେ ଯେ ପୂର୍ଣ୍ଣମାରାତ୍ରିର ରୂପେଲି ପଣତ ଝଲମଲ ବର୍ଣ୍ଣବିଭା ଟୋକି ଓହ୍ଲାଇ ଆସିଥିଲା, ସମୟ କାଳଜ୍ଞାନ ସଭିଏଁ ଯେପରି ବିସ୍ମୃତ ହୋଇପଡ଼ିଥିଲେ ।

ନୃତ୍ୟ ସଂଗୀତର ମୂର୍ଚ୍ଛନାରେ ଦରବାର ଯେମିତି ଉଚ୍ଛୁଳି ଉଠୁଥିଲା ।

ରତ୍ନଖଚିତ ସିଂହାସନ ଉପରେ ଆରୂଢ଼ ସମ୍ରାଟ ସମୁଦ୍ରଗୁପ୍ତ ଭୂମି ଉପରେ ଦୃଷ୍ଟି ନିବଦ୍ଧ କରି ଯେମିତି ଭାବନା ରାଜ୍ୟରେ ବିଚରଣ କରୁଥିଲେ ।

ସିଂହାସନର ବାମପାର୍ଶ୍ୱରେ ତାଙ୍କର ପ୍ରିୟ କନିଷ୍ଠ ପୁତ୍ର ଚନ୍ଦ୍ରଗୁପ୍ତ ଓ ଡାହାଣ ପାର୍ଶ୍ୱରେ ଜ୍ୟେଷ୍ଠପୁତ୍ର ରାମଗୁପ୍ତ ।

ସମ୍ରାଟ ଭାବୁଥିଲେ ତାଙ୍କ ପରେ ଏତେ ବଡ଼ ବିଶାଳ ସାମ୍ରାଜ୍ୟର ରକ୍ଷାକର୍ତ୍ତା କିଏ ?

ଉତ୍ତରାଧିକାର ସୂତ୍ରରେ ଜ୍ୟେଷ୍ଠକୁମାର ରାମଗୁପ୍ତ ମଗଧରାଜ ସିଂହାସନର ଦାବିଦାର...

କିନ୍ତୁ ରାମଗୁପ୍ତ ଦୁର୍ବଳମନା, ପିଲାଟିବେଳୁ ଭୀରୁ, ଈର୍ଷାକାତର, ସ୍ୱାର୍ଥପର, କ୍ରୂର ଆଉ ନିଷ୍ଠୁର । ବିଳାସପ୍ରିୟ, ତୋଷାମଦକାରୀ ଚାଟୁକାରମାନଙ୍କ ଗହଣରେ ଦିବରାତ୍ରି... ପ୍ରତିଟି ମୁହୂର୍ତ୍ତ ତା'ର ନିୟନ୍ତ୍ରିତ । ଯୌବନରେ ସେ ପାଦ ଦେବା ପରଠାରୁ ସୁରାନାରୀ ଆଉ ଚାଟୁକାରମାନଙ୍କ ଗହଣରେ, ରଙ୍ଗଶାଳାଗୁଡ଼ିକୁ ସେ ତା'ର ଜୀବନଚର୍ଯ୍ୟାର ମୁଖ୍ୟକ୍ଷେତ୍ରରେ ପରିଣତ କରିଛି । ମଗଧ ସାମ୍ରାଜ୍ୟ ଅଧୀନରେ ଆର୍ଯ୍ୟାବର୍ତ୍ତ ଓ ଦକ୍ଷିଣାବର୍ତ୍ତର କେତୋଟି ଯେ ରାଜ୍ୟ-ଜନପଦ ରହିଛି, ସେସବୁ ଯୁବରାଜ ରାମଗୁପ୍ତର ଜ୍ଞାତସାର ବାହାରେ । ରାଜଧାନୀର ସାଧାରଣ ପ୍ରଜାଙ୍କ ସହିତ ପରିଚିତ ହେବା ଦୂରେ ଥାଉ ରାଜମହଲର ସାଧାରଣ ସେବକ, ଦାସ-ଦାସୀ ରାଜକର୍ମଚାରୀଙ୍କ ସହିତ ସଂପର୍କ ସୁଦ୍ଧା ତା'ର ନାହିଁ । କେବଳ, ରଙ୍ଗଶାଳାରେ ସୁରା, ନର୍ତ୍ତକୀ ଆଉ ଚାଟୁକାରମାନଙ୍କ ସହିତ ତା'ର କେବଳ ନିବିଡ଼ ସଂପର୍କ... ମଗଧ ସାମ୍ରାଜ୍ୟର ଭାବି ସମ୍ରାଟ ପଦବୀର ଦାମ୍ଭିକତାରେ ମଦମତ୍ତ -

ଆଉ କନିଷ୍ଠ କୁମାର ଚନ୍ଦ୍ରଗୁପ୍ତ ?

ଜ୍ୟେଷ୍ଠ କୁମାର...ଯୁବରାଜ ରାମଗୁପ୍ତର ଚରିତ୍ରର ବିପରୀତ ।

ଚନ୍ଦ୍ରଗୁପ୍ତ ! ଆଃ ଚନ୍ଦ୍ରଗୁପ୍ତ...

ଶାନ୍ତ, ଧୀର ସ୍ଥିର ବୁଦ୍ଧିସଂପନ୍ନ । ବିଦ୍ୱାନ, ମେଧାବୀ, ବନ୍ଧୁବତ୍ସଳ ପୁଣି ପ୍ରଜାମାନଙ୍କ ଆଦରର ରାଜପୁତ୍ର । ଯୁବରାଜ ରାମଗୁପ୍ତ କ୍ରୂର -ନିଷ୍ଠୁର, ବିଳାସୀ, ପ୍ରଜାପୀଡ଼କ ହୋଇଥିବାବେଳେ ଚନ୍ଦ୍ରଗୁପ୍ତ ପିଲାଟିବେଳୁ ସମ୍ରାଟଙ୍କ କାୟାସଙ୍ଗେ ଛାୟା ଭଳି ଆତଜାତ ।

ସମ୍ରାଟ ସମୁଦ୍ରଗୁପ୍ତ କଳ୍ପନା ରାଜ୍ୟରେ ବିଚରଣ କରୁଥିଲେ । ସୁଦୂର ଅତୀତ ଭିତରେ ଯେମିତି ହଜିଯାଇଥିଲେ ।

ମଗଧ ସାମ୍ରାଜ୍ୟକୁ ଅଧିକ ସୁଦୃଢ଼ ଓ ଶକ୍ତଶାଳୀ କରିବାପାଇଁ କେତେ ଯେ ତାଙ୍କୁ ଉଦ୍ୟମ କରିବାକୁ ପଡ଼ିଛି । ଗଜ, ଅଶ୍ୱ ଓ ପଦାତିକ ସେନାବାହିନୀଙ୍କୁ ଶୃଙ୍ଖଳିତ କରିବା, ପ୍ରଜାମାନଙ୍କ ମଧ୍ୟରେ ଶାନ୍ତି- ସଦ୍‌ଭାବ ପ୍ରତିଷ୍ଠା, ସବୁ ଧର୍ମ ଓ ମତବାଦକୁ ବନ୍ଧୁତ୍ୱ ସୂତ୍ରରେ ବାନ୍ଧି ରଖିବା, ସମଗ୍ର ଭାରତବର୍ଷରେ ଏକତା ପ୍ରତିଷ୍ଠା କରି ବିଦେଶୀ ଯବନ ହୁଣ ଓ ଶକମାନଙ୍କ ଭାରତ ଆକ୍ରମଣକୁ ପ୍ରତିରୋଧ କରିବାପାଇଁ ତାଙ୍କୁ ଦିବାରାତ୍ରି ଜାଗ୍ରତ ରହିବାକୁ ପଡ଼ିଛି । ମଗଧ ଅଧୀନ ମିତ୍ରରାଜ୍ୟମାନଙ୍କ ସହିତ ସୁସଂପର୍କ ରଖିବାପାଇଁ କଳା-ସଂଗୀତ

ଓ ବିଦ୍ୟାଗତ ଭାବ ଆଦାନ-ପ୍ରଦାନ ପାଇଁ କ୍ଷେତ୍ର ପ୍ରତିଷ୍ଠା କରିବାକୁ ଯୋଜନାବଦ୍ଧ ଉଦ୍ୟମ କରିବାକୁ ପଡ଼ିଛି ।

ଶାସକ ବା ରାଜାର ଧର୍ମ କ'ଣ ?

"ଦଣ୍ଡଃ ଶାସ୍ତି ପ୍ରଜାଃ ସର୍ବଦଣ୍ଡ ଏବାଭିରକ୍ଷତି ।

ଦଣ୍ଡଃ ସୁପ୍ତେଷୁ ଜାଗର୍ତି ଦଣ୍ଡଂ ଧର୍ମ ବିଦୁର୍ବୁଧାଃ "

ପ୍ରଜା ଯେବେ ଗଭୀର ନିଦ୍ରାରେ ନିମଗ୍ନ, ସେତିକିବେଳେ 'ଦଣ୍ଡ' ଅର୍ଥାତ୍ ରାଜକାର୍ଯ୍ୟ ଜାଗ୍ରତ ରହିଥାଏ ।

ଏହି ଆପ୍ତବାକ୍ୟର ଗୁରୁତ୍ୱକୁ ଜୀବନବ୍ୟାପୀ ସମ୍ରାଟ ସମୁଦ୍ରଗୁପ୍ତ ବ୍ରତ ଭାବେ ପାଳନ କରିଆସିଛନ୍ତି ।

ଯୌବନ ବେଳେ ମଗଧ ସିଂହାସନ ସେ ଦଖଲ କରିଥିଲେ ବୁଦ୍ଧି ଚାତୁର୍ଯ୍ୟ ଓ କଠୋର ପରିଶ୍ରମ ସହିତ ପ୍ରତିବଦ୍ଧତା ବଳରେ । ପ୍ରତିଟି ଉଚ୍ଚାକାଂକ୍ଷୀ ମଣିଷ ଭିତରେ ସ୍ୱପ୍ନ ଓ ସଂକଳ୍ପ ତ ରହିଥାଏ କିନ୍ତୁ ସେଥିପାଇଁ ସମ୍ଭାବନାର କ୍ଷେତ୍ର ପ୍ରସ୍ତୁତ କରିବାକୁ ପଡ଼ିଥାଏ । ତାହା ହିଁ ତାଙ୍କ ଜୀବନରେ ଘଟିଛି ।

ଯୌବନ କାଳରୁ ଆସନ୍ନ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ତାଙ୍କୁ ସୁଶାସନ ଓ ସାମ୍ରାଜ୍ୟ ବିସ୍ତାରର ନିଶା ଏତେ ଘାରିଥିଲା ଯେ ଯୌବନର ମାଦକତାରେ ଭୋଗବିଳାସ, ସୁଖ ସ୍ୱାଚ୍ଛନ୍ଦ୍ୟର ଅଭିଳାଷ ତାଙ୍କୁ ସ୍ପର୍ଶ ସୁଦ୍ଧା କରିପାରିନଥିଲା । ଭାରତବର୍ଷକୁ ଏକ ଶାସନତଳେ, ଏକତା ସୂତ୍ରରେ ବାନ୍ଧି ରଖି ଆକ୍ରମଣକାରୀ ବିଦେଶୀ ଶକ୍ତିଙ୍କୁ ପ୍ରତିରୋଧ କରିବାରେ ଜୀବନର ଅର୍ଦ୍ଧେକ କାଳ ବିତିଗଲା ।

ସମ୍ରାଟ ସମୁଦ୍ରଗୁପ୍ତ ତାଙ୍କ ବାମପାର୍ଶ୍ୱରେ ବସି ନୃତ୍ୟ ଉତ୍ସବକୁ ଉପଭୋଗ କରୁଥିବା କନିଷ୍ଠ କୁମାର ଚନ୍ଦ୍ରଗୁପ୍ତଙ୍କ ମୁହଁକୁ ଅପଲକ ନେତ୍ରରେ ଚାହିଁ ରହିଥିଲେ ।

ମଗଧ ସାମ୍ରାଜ୍ୟକୁ ସୁରକ୍ଷା ଦେବାରେ ଚନ୍ଦ୍ରଗୁପ୍ତର ଯଥେଷ୍ଟ ଯୋଗ୍ୟତା ଅଛି, ହେଲେ କୁଳାଚାର ଓ ଲୋକାଚାର ଦୃଷ୍ଟିରୁ ଯେତେହେଲେ ସେ କନିଷ୍ଠ କୁମାର । ସିଂହାସନ ଆରୋହଣର ପ୍ରଥମ ଅଧିକାରୀ ଜ୍ୟେଷ୍ଠପୁତ୍ର ରାମଗୁପ୍ତ ।

ରାମଗୁପ୍ତ ହାତରେ ମଗଧ ସାମ୍ରାଜ୍ୟର ଶାସନ ଡୋରି ପଡ଼ିଲେ, ଏତେ ବଡ଼ ସାମ୍ରାଜ୍ୟ ସୁରକ୍ଷିତ ହୋଇପାରିବତ ? ପ୍ରଜାକୁଳ ଏବେ ଯେପରି ଶାନ୍ତିରେ ଜୀବନ ନିର୍ବାହ କରୁଛନ୍ତି, ତାହା ଅବ୍ୟାହତ ରହିବତ ?

ଏଇ କନିଷ୍ଠ କୁମାର ଚନ୍ଦ୍ରଗୁପ୍ତ !

ବାର ବର୍ଷ ବୟସରୁ ସେ ପିତାଙ୍କ ସକଳ କାର୍ଯ୍ୟର ସମର୍ଥକ ଓ ସହାୟକ

ହୋଇଆସିଛି । ମଗଧ ସାମ୍ରାଜ୍ୟକୁ ସଂଗଠିତ କରି ସାରିଲାପରେ ସେ ଆୟୋଜନ କରିଥିଲେ ଅଶ୍ୱମେଧ ଯଜ୍ଞ ।

ଏହି ଅଶ୍ୱମେଧ ଯଜ୍ଞର ଘୋଡ଼ା ସହିତ ଯେଉଁ ସେନାବାହିନୀ ଆର୍ଯ୍ୟାବର୍ତ୍ତର ଉତ୍ତର ପୂର୍ବାଞ୍ଚଳ ରାଜ୍ୟ ଆଡ଼କୁ ଅଗ୍ରସର ହେଉଥିଲେ ସେହି ସେନାବାହିନୀକୁ ଅଧିକ ଉତ୍ସାହିତ କରିବାକୁ ବିଭିନ୍ନ ରାଜ୍ୟଗୁଡ଼ିକର ବିଜୟ ଅଭିଯାନରେ ବାହାରିଥିଲା ଚନ୍ଦ୍ରଗୁପ୍ତ ।

ଆଉ ଜ୍ୟେଷ୍ଠ କୁମାର ରାମଗୁପ୍ତ ?

କନିଷ୍ଠ ଚନ୍ଦ୍ରଗୁପ୍ତ ଠାରୁ ମାତ୍ର ଦୁଇବର୍ଷ ଜ୍ୟେଷ୍ଠ ରାମଗୁପ୍ତ ସେତେବେଳୁ ହିଁ ପାଟଳିପୁତ୍ର ରାଜମହଲ ଭିତରେ ସଂଗୀମାନଙ୍କ ସହିତ ମତ୍ତ ଥିଲା ଦ୍ୟୁତକ୍ରୀଡ଼ା, ରଙ୍ଗଲୀଳାରେ । ରାଣୀହଂସପୁରର ସୁନ୍ଦରୀ ଯୁବତୀ ଦାସୀମାନଙ୍କ ସହିତ ତା'ର ରତିରଙ୍ଗ ଆରମ୍ଭ ହୋଇଯାଇଥିଲା ।

...ଯଜ୍ଞର ଅଶ୍ୱ ମଦମତ୍ତ ଭାବେ ଦୌଡୁଥିଲା ଆଉ ତା'ସହିତ ଦ୍ୱିଗୁଣିତ ଉତ୍ସାହରେ ଚନ୍ଦ୍ରଗୁପ୍ତ ମଗଧ ସେନାପତି ବୁଦ୍ଧାଦିତ୍ୟଙ୍କ ନେତୃତ୍ୱରେ ପରିଚାଳିତ ସେନାବାହିନୀ ସହିତ ଅଭିଯାନର ଅଗ୍ରଭାଗରେ ଥିଲା ଓ ପଛରେ ସମ୍ରାଟ ସମୁଦ୍ରଗୁପ୍ତ ।

ମଗଧ ସ୍ୱାମାଜ୍ୟର ରାଜଧାନୀ ପାଟଳୀପୁତ୍ରରେ ସମ୍ରାଟ ସମୁଦ୍ରଗୁପ୍ତ ଆୟୋଜନ କରିଥିଲେ ଅଶ୍ୱମେଧ ଯଜ୍ଞ । ଅଶ୍ୱମେଧ ଯଜ୍ଞ ଆୟୋଜନରେ ସମୁଦ୍ରଗୁପ୍ତ ମଗଧର ପ୍ରଥମ ସମ୍ରାଟ । ଯଜ୍ଞର ଅଶ୍ୱ ଭାରତବର୍ଷର ଯେଉଁ ରାଜ୍ୟରେ ପ୍ରବେଶ କରିବ ସେହି ରାଜ୍ୟ ଯଜ୍ଞ ଆୟୋଜିତ କରିଥିବା ରାଜ୍ୟ ସହିତ ଅଧିନତା ଓ ବନ୍ଧୁତ୍ୱ ରକ୍ଷା କରିବାକୁ ପଡ଼ିବ । ବିରୋଧ କଲେ ଯୁଦ୍ଧ ନିଶ୍ଚିତ । ଅଶ୍ୱମେଧ ଯଜ୍ଞର ଅଶ୍ୱ ପାଟଳୀପୁତ୍ରରୁ ଯାତ୍ରା ଆରମ୍ଭକରି ବ୍ରହ୍ମପୁତ୍ର ନଦୀ ଉପତ୍ୟକାର ବିଶାଳ ରାଜ୍ୟ କାମରୂପରେ ପହଞ୍ଚିଥିଲା । କାମରୂପ ରାଜା ମଗଧର ବଶ୍ୟତା ସ୍ୱୀକାର କଲାପରେ ଅଶ୍ୱ ସହିତ ସେନାବାହିନୀ ବିପୁଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ଗୋଟିଏ ପରେ ଗୋଟିଏ ରାଜ୍ୟ ଅତିକ୍ରମ କରିଚାଲିଥିଲେ ।

କାମରୂପରୁ ଅଙ୍ଗ, ବଙ୍ଗ, କଳିଙ୍ଗ ଆଡ଼କୁ ମଗଧ ବାହିନୀ ମାଡ଼ି ଚାଲିଥିଲେ । ସମୁଦ୍ରଗୁପ୍ତଙ୍କ ସାମ୍ରାଜ୍ୟ ବିସ୍ତାର ପୂର୍ବରୁ ସାତବାହନ ଶକ୍ତିର ପତନ ଘଟିସାରିଥିଲା । ସେହି ସମୟରେ ସୁଦ୍ଧା କଳିଙ୍ଗର ଅଭ୍ୟୁଥାନ ହୋଇପାରିଲାନାହିଁ । କଳିଙ୍ଗ ସାମ୍ରାଜ୍ୟ ବହୁ ଭାବରେ ବିଭକ୍ତ ହୋଇସାରିଥିଲା । 'ସାହସିକାଃ କଳିଙ୍ଗାଃ' ପରସ୍ପର ମଧ୍ୟରେ ଏକତା ହରାଇ କ୍ଲୀବ ହୋଇପଡ଼ିଥିଲେ । ଏହା ବହୁଧା ବିଭକ୍ତ ଗଣରାଜ୍ୟ ଓ ଜନପଦରେ ପରିଣତ ହୋଇଥିଲା । ସମୁଦ୍ରଗୁପ୍ତ ଅଙ୍ଗ ବଙ୍ଗ ଉତ୍କଳରାଜ୍ୟ ଅତିକ୍ରମକରି କଳିଙ୍ଗରେ

ପ୍ରବେଶ କଲାବେଳକୁ ସାହସୀ କଳିଙ୍ଗମାନେ ସମୁଦ୍ରଗୁପ୍ତଙ୍କର କୌଣସି ବିରୋଧ ବା ପ୍ରତିରୋଧ କରିବାକୁ ସାହସ ସଞ୍ଚୟ କରିପାରିନଥିଲେ ।

କଳିଙ୍ଗ ପରେ ପରେ ଆରମ୍ଭ ହୋଇଥିଲା ଅଶ୍ୱମେଧ ଯଜ୍ଞର ଘୋଡ଼ା ଓ କିଶୋର ରାଜପୁତ୍ର ଚନ୍ଦ୍ରଗୁପ୍ତଙ୍କ ସହିତ ମଗଧ ସେନାବାହିନୀର ଦକ୍ଷିଣାବର୍ତ୍ତ ଅଭିଯାନ । ସମୁଦ୍ରଗୁପ୍ତ ଦାକ୍ଷିଣାତ୍ୟ ଅଭିଯାନରେ ବାରଜଣ ରାଜାଙ୍କୁ ପରାସ୍ତ କରିଥିଲେ । ପରାସ୍ତ ରାଜାମାନଙ୍କ ମଧ୍ୟରେ ଥିଲେ କୋଶଳର ରାଜା ମହେନ୍ଦ୍ର, ମହାକାନ୍ତାରର ରାଜା ବ୍ୟାଘ୍ରରାଜ, କୁରାଳର ମଣ୍ଟ୍ୟରାଜ, ପିଷ୍ଟପୁରର ରାଜା ମହେନ୍ଦ୍ରଗିରି, କୌଡ୍ଡୁରର ରାଜା ସ୍ୱାମୀଦତ୍ତ, ଏରଣ୍ଡପଲ୍ଲର ରାଜା ଦମନ, କାଞ୍ଚି ନରେଶ ବିଷ୍ଣୁଗୋପ, ଅବମୁକ୍ତର ନୀଳରାଜ, ବେଙ୍ଗୀର ହସ୍ତୀବର୍ମନ, ପାଲକ୍କର ଉଗ୍ରସେନ୍, ଦେବରାଷ୍ଟ୍ରର କୁବେର ଓ କୁସ୍ଥଳପୁରର ଧନଞ୍ଜୟ ।

ସେନବାହିନୀ ଦ୍ୱାରା ପରାଜିତ ରାଜାମାନେ ମଗଧର ବଶ୍ୟତା ସ୍ୱୀକାର କରିଥିଲେ । ମଗଧ ସହିତ ବନ୍ଧୁତ୍ୱ ସ୍ଥାପନ କରିଥିଲେ । ବହୁଧା ବିଭକ୍ତ କଳିଙ୍ଗର ଛୋଟଛୋଟ ରାଜ୍ୟର ଯେଉଁ ନରପତିମାନେ ସମୁଦ୍ରଗୁପ୍ତଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିଥିଲେ ସେମାନଙ୍କ ଭିତରେ ଥିଲେ ପଷ୍ଟପୁରୁ ରାଜ୍ୟର ମହେନ୍ଦ୍ରଗିରି, କୌଡ୍ଡୁର ସ୍ୱାମୀଦତ୍ତ ଏବଂ ଏରଣ୍ଡାପଲ୍ଲର ଦମନ ।

ଅଶ୍ୱମେଧ ଯଜ୍ଞ ପରେ ସମୁଦ୍ରଗୁପ୍ତଙ୍କ ଦାକ୍ଷିଣାତ୍ୟ ଅଭିଯାନ ବେଳେ କଳିଙ୍ଗ ଅତିକ୍ରମ କରିବା କାଳରେ ଯଜ୍ଞର ଅଶ୍ୱ ସହିତ କୁମାର ଚନ୍ଦ୍ରଗୁପ୍ତଙ୍କ ସହିତ ମଗଧ ସେନାବାହିନୀ ଋଷିକୂଲ୍ୟା ତଟରେ ଛାଉଣୀ ପକାଇଥିଲେ ।

ପିତା ସମୁଦ୍ରଗୁପ୍ତଙ୍କ ପରି ଚନ୍ଦ୍ରଗୁପ୍ତ ମଧ୍ୟ ଅତୀତ ଇତିହାସ ପ୍ରତି ଅତି ଜିଜ୍ଞାସୁ । ସମ୍ରାଟଙ୍କ ଛାଉଣୀ ପାଖରେ କୁମାରଙ୍କ ଛାଉଣୀ । ପାଟଳୀପୁତ୍ରରୁ କାମରୂପ ଦେଇ ଉତ୍କଳ ଅତିକ୍ରମ କରିବା ମଧ୍ୟରେ ସେନାବାହିନୀ, ଅଶ୍ୱ ଓ ଗଜବାହିନୀ କ୍ଲାନ୍ତ । ଏଠାରେ ଏକପକ୍ଷ ବିଶ୍ରାମ ପରେ ପୁଣି ସାମରିକ ଯାତ୍ରା ପାଇଁ ଚନ୍ଦ୍ରଗୁପ୍ତ ସମ୍ରାଟ ଓ ସେନାପତିଙ୍କୁ ଅନୁରୋଧ କରିଥିଲେ । ପୁତ୍ରର ଏହି ପ୍ରସ୍ତାବରେ ସମୁଦ୍ରଗୁପ୍ତ ପ୍ରଶ୍ନ କରିଥିଲେ –''ଏଠାରେ ବିଶ୍ରାମ ଜନିତ ଅବସ୍ଥାନ ପାଇଁ ତୁମର ଅଭିପ୍ରାୟ କାହିଁକି ?''

ଚନ୍ଦ୍ରଗୁପ୍ତ କହିଥିଲେ – ''ଏହି ସ୍ଥାନର ମହତ୍ତ୍ୱ ଅଛି ମହାରାଜ । ଏଠାରେ ଅତୀତର ମୌର୍ଯ୍ୟବଂଶୀ ସମ୍ରାଟ ଅଶୋକଙ୍କୁ ସ୍ଥାନୀୟ ଅଟବୀ ଅଧିବାସୀମାନେ ବିଚିତ୍ର ରଣ କୌଶଳରେ ଆକ୍ରାନ୍ତ କରିଥିଲେ । ସେତିକିବେଳେ ପରା ଗ୍ରୀକ୍‌ଯବନ ରକ୍ତଧାରୀ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହେବାକୁ ବାଧ ହୋଇଥିଲେ । କଳିଙ୍ଗ ଯଦିଓ ଏବେ

ବହୁଧା ବିଭକ୍ତ ଓ ଛୋଟ ଛୋଟ ଗଣରାଜ୍ୟରେ ପରିଣତ ହୋଇଛି, ତଥାପି ଏହି ଭୂମିର ଅଧିବାସୀମାନେ କୁଆଡ଼େ, 'କଳିଙ୍ଗାଃ ସାହାସିକାଃ' ବୋଲି ଲୋକମୁଖରେ ପ୍ରଚାରିତ ହେଉଛନ୍ତି । ସେମାନେ ଯେତେ ଦୁର୍ବାର, ଦୁର୍ଦ୍ଦାନ୍ତ, ଦୁର୍ଦ୍ଧର୍ଷ ହେଲେ ସୁଦ୍ଧା ଆମର ଦାକ୍ଷିଣାତ୍ୟ ଅଭିଯାନରେ ପ୍ରତିବନ୍ଧକ ହୋଇନାହାନ୍ତି । ଏଠାରେ ରହଣୀ ମଧ୍ୟରେ ମୁଁ ସ୍ଥାନୀୟ ଜନଜୀବନର ଚରିତ୍ର, ଚାଳିଚଳଣ, ଅଶୋକ ଏଠାରେ ସ୍ଥାପନ କରିଥିବା ତାଙ୍କ ଅନୁଶାସନବାର୍ତ୍ତାର ଶିଳାଲେଖ ଅଧ୍ୟୟନ କରିବାକୁ ଆଗ୍ରହୀ ।''

ସମ୍ରାଟ ସମୁଦ୍ରଗୁପ୍ତ ପୁତ୍ରର ଏପରି ଜିଜ୍ଞାସାରେ ସମ୍ମତିରୂପକ ସ୍ମିତହାସ୍ୟ ତୋଳିଥିଲେ ।

ପିତା ଓ ପୁତ୍ର ଋଷିକୂଲ୍ୟାତଟରେ ସେନାଛାଉଣିରେ ବିଶ୍ରାମ ଓ ସାମୟିକ ରହଣି ମଧ୍ୟରେ ଅଶୋକଙ୍କ ଅନୁଶାସନବାର୍ତ୍ତାର ଶିଳାଲେଖ ଅନୁଧ୍ୟାନ କରିବାକୁ ଯାଇଥିଲେ । ମଗଧବାହିନୀ ସହିତ ଥିବା ବିଦ୍ୱାନ ଶିଳାଲିପି ପାଠକ ଯୋଗାଚାର୍ଯ୍ୟ ସିଦ୍ଧନାଥ ଭଟ୍ଟ ଅଶୋକଙ୍କ ଅନୁଶାସନବାର୍ତ୍ତା ପାଠକରି ସମ୍ରାଟ ଓ ଚନ୍ଦ୍ରଗୁପ୍ତଙ୍କୁ ଶୁଣାଇଲା ପରେ ଚନ୍ଦ୍ରଗୁପ୍ତ କିଛି କ୍ଷଣ ଅନ୍ୟମନସ୍କ ହୋଇପଡ଼ିଥିଲେ । ପୁତ୍ରର ଏହି ଅନ୍ୟମନସ୍କତା ଓ ଭାବାବେଗ ଦେଖି ସମୁଦ୍ରଗୁପ୍ତ ପଚାରିଥିଲେ – ''ଅଶୋକଙ୍କ ଅନୁଶାସନ୍‌ବାର୍ତ୍ତାରୁ କ'ଣ ବୁଝିଲ ?''

ଚନ୍ଦ୍ରଗୁପ୍ତ ତୀକ୍ଷଣ ବୁଦ୍ଧି ସଂପନ୍ନ, ଜନ୍ମକାଳରୁ ଜିଜ୍ଞାସୁ – ଅନୁସନ୍ଧିତ୍ସୁ ।

ଚନ୍ଦ୍ରଗୁପ୍ତ କହିଲେ – ''ସମ୍ରାଟ ! ଆପଣ ଏବେ ମଗଧର ସମ୍ରାଟ । ଆପଣ ଜଣେ ପ୍ରଜାବତ୍ସଳ ସମ୍ରାଟ ଭାବେ ପ୍ରଜାକୁଳ ନିକଟରେ ପୂଜ୍ୟ । ମଗଧ ସିଂହାସନ ଆପଣ କୌଣସି ଯୁଦ୍ଧ ବିଗ୍ରହ ଓ ରକ୍ତପାତ ମଧ୍ୟରେ ଦଖଲ କରିନାହାନ୍ତି । କିନ୍ତୁ ଆପଣଙ୍କର ମଗଧର ପୂର୍ବବର୍ତ୍ତୀ ସମ୍ରାଟ ଅଶୋକ ତ ଜଣେ ଭାତୃହତ୍ୟାକାରୀ, ନିର୍ମମ ପାଷାଣ୍ଡ । ତାଙ୍କର ଏହି ଅନୁଶାସନବାର୍ତ୍ତା କେବଳ ଛଳନା ଓ ପ୍ରବଞ୍ଚନା । କଳିଙ୍ଗ ଯୁଦ୍ଧରେ ସେ ବିଜିତ ନା ପରାଜିତ ? କଳିଙ୍ଗ ଯୁଦ୍ଧପରେ ଚଣ୍ଡାଶୋକ ହଠାତ୍ ଜଣେ ମହାନ୍ ବୌଦ୍ଧ ଧର୍ମାଚାର୍ଯ୍ୟ ଓ ବୌଦ୍ଧଧର୍ମର ପୃଷ୍ଠପୋଷକ ହୋଇଗଲେ ! କିନ୍ତୁ ଅଶୋକଙ୍କ ଶିଳାରେଖରେ ତଥାଗତ ବୁଦ୍ଧ, ଅର୍ହତ ବା ଧର୍ମର କୌଣସି ଉଲ୍ଲେଖ ନାହିଁ ତ ! ଶିଳାଲେଖ ଗୁଡ଼ିକରେ ଅଶୋକଙ୍କର ନିଜର ପ୍ରଶସ୍ତି ଅଛି ସିନା ସେଥିରେ କିନ୍ତୁ କୌଣସି ବୌଦ୍ଧଦର୍ଶନ, ବୁଦ୍ଧ ବନ୍ଦନା କିମ୍ବା ଧର୍ମ ପ୍ରଶସ୍ତି ନାହିଁ । ଲମ୍ପଟ, ଦୁରାଚାରୀ, ଅନେଶ୍ୱତ ଭାତୃହନ୍ତା ପ୍ରଜାପୀଡ଼କ ସାମ୍ରାଜ୍ୟବାଦୀ କାଳାଶୋକ ବା ଚଣ୍ଡାଶୋକ ଧର୍ମାଶୋକ ହେବାପାଇଁ ନିଜର ନିର୍ଲ୍ଲଜ ପ୍ରଚାର କରିଛନ୍ତି । ଧର୍ମର ଦ୍ୱାହି ଦେଇ କଳିଙ୍ଗର

ଅତ୍ୟାଚାରିତ ଓ ନିପୀଡ଼ିତ ପ୍ରଜାମାନଙ୍କୁ ବାଧ ଓ ବଶମ୍ବଦ କରି ରଖିବାପାଇଁ ଅଶୋକ ବୌଦ୍ଧ ଧର୍ମାଚାର୍ଯ୍ୟ ରୂପେ ନିଜକୁ ପ୍ରଚାରିତ କରିଛନ୍ତି ସତ୍ୟ ମାତ୍ର ତାଙ୍କ ପରି ନିର୍ମମ-ନିଷ୍ଠୁର ସମ୍ରାଟ କଦାପି ବୌଦ୍ଧ ଭାକ୍ଷୁ ହୋପାରେନା କିମ୍ବା କୌଣସି ବୌଦ୍ଧ ଭିକ୍ଷୁ ତାଙ୍କ ପରି ଶୋଣିତଲିପ୍ତ ରାଜଦଣ୍ଡ ଧରିବା ମଧ ସମ୍ଭବ ନୁହେଁ ।''

ସମ୍ରାଟ ସମୁଦ୍ରଗୁପ୍ତ ପୁତ୍ରର ଏପରି ଯୁକ୍ତିରେ ବିସ୍ମୟ ବିମୂଢ଼ ହୋଇପଡ଼ିଥିଲେ ଆଉ ଅନୁଧ୍ୟାନ କରୁଥିଲେ କିଶୋର ଚନ୍ଦ୍ରଗୁପ୍ତଙ୍କ ବିବେକାନୁମୋଦିତ ବିଚାର ବୁଦ୍ଧିକୁ ।

ସମ୍ରାଟ ସମୁଦ୍ରଗୁପ୍ତ ପ୍ରଶ୍ନ କଲେ - ''କୁମାର, ତୁମେ ସାରନାଥର ଅଶୋକ ସ୍ତମ୍ଭକୁ ଦେଖିଛି ତ ! ସେହି ସ୍ତମ୍ଭରେ କେଉଁ ବାର୍ତ୍ତା ତୁମେ ଅଧ୍ୟୟନ କରିଛ, କହିଲ !''

କୁମାର ଚନ୍ଦ୍ରଗୁପ୍ତ ଭାବଗମ୍ଭୀର କଣ୍ଠରେ କହିଲେ- 'ଅଶୋକ ସ୍ତମ୍ଭ ! ହାୟ, ଧର୍ମଶକ୍ତି ଉପରେ ପଶୁ ଶକ୍ତିର ବିଜୟ ସଂକେତ ରୂପେ ତିନୋଟି କ୍ଷୁଧିତ ସିଂହ ଆଉ ଧର୍ମଚକ୍ର ଉପରେ ହିଂସ୍ର ପଂଝା ଚାପି ବସିଛନ୍ତି । ଚଣ୍ଡାଶୋକଙ୍କ ଧର୍ମାଶୋକତ୍ୱର ସବୁ ପ୍ରବଞ୍ଚନା ଏହି ସ୍ଥାପତ୍ୟରେ ହିଁ ଧରାପଡ଼ିଯାଇଛି, ସମ୍ରାଟ !''

ପିତା ଓ ପୁତ୍ରଙ୍କ ଆଳାପ ମଧ୍ୟରେ ଯୋଗାଚାର୍ଯ୍ୟ ସିଦ୍ଧିନାଥ ଭଟ୍ଟ ହସ୍ତକ୍ଷେପ କରି ଚନ୍ଦ୍ରଗୁପ୍ତଙ୍କ ଉଦ୍ଦେଶ୍ୟରେ କହିଲେ - ''କୁମାର, ଆପଣ ଜାଣନ୍ତି ? ଆମ୍ଭେମାନେ ଯେଉଁ ଭୂମିରେ ଏବେ ଅବସ୍ଥାନ କରିଛେ, ଏହା ଏକ ଆରଣ୍ୟକ ଅଟବୀ ଅଞ୍ଚଳ । ଅଟବୀମାନେ ହେଉଛନ୍ତି ଆଦିମ ଜନଜାତିର ଅଧିବାସୀ । ଘଞ୍ଚଅରଣ୍ୟ ହେଉଛି ଏମାନଙ୍କ ବିଚରଣ ସ୍ଥଳୀ । ସମ୍ରାଟ ଅଶୋକ ପାଟଳୀପୁତ୍ରରୁ ଯୁଦ୍ଧ ଅଭିଯାନ ଚଳାଇବା ମଧରେ ତାଙ୍କ ସେନାବାହିନୀରେ ଥିବା ନିର୍ମମ ନିଷ୍ଠୁର ଗ୍ରୀକ୍ ସେନାବାହିନୀ ନିରସ୍ତ୍ର କଳିଙ୍ଗ ପ୍ରଜାମାନଙ୍କୁ ନିର୍ମମ ଭାବରେ ହତ୍ୟା ଚଳାଇଥିଲେ । ଅଶୋକଙ୍କ ହୃଦୟହୀନ ରକ୍ତପିପାସୁ ସେନାବାହିନୀ ନଗର ଜନପଦ ଗୁଡ଼ିକ ଉପରେ ଅଚାନକ ଆକ୍ରମଣ କରି ରକ୍ତପାତ ଘଟାଇବା ମଧରେ ଅବଳା ନାରୀ ଓ ଶିଶୁପୁତ୍ରମାନେ ସୁଦ୍ଧା ସେମାନଙ୍କ ଖଡ୍‌ଗ ଚୋଟରୁ ବର୍ତ୍ତିପାରିନଥିଲେ । ଅଶୋକଙ୍କ କଳିଙ୍ଗ ଆକ୍ରମଣ ମଧରେ ଏକ ଲକ୍ଷରୁ ଊର୍ଦ୍ଧ୍ୱ କଳିଙ୍ଗ ପ୍ରଜା ନିହତ ହୋଇଥିଲେ । ଲକ୍ଷାଧିକ ଆହତ, ଅକର୍ମଣ୍ୟ ଓ ପଙ୍ଗୁ ହୋଇପଡ଼ିଥିଲେ ।''

...''କଳିଙ୍ଗର ଅସହାୟ ଏକ ଲକ୍ଷରୁ ଊର୍ଦ୍ଧ୍ୱ ଯୋଦ୍ଧା, ନିରୀହ ବୃଦ୍ଧବୃଦ୍ଧା, ଅବଳା, ନିରସ୍ତ୍ର ନରନାରୀ, ବାଳକ -ବାଳିକାଙ୍କୁ ସମ୍ରାଟ ଅଶୋକଙ୍କ ସେନାବାହିନୀ ହତ୍ୟାକରି ଏହି ବୀର ପ୍ରସବିନୀ ଭୂମିକୁ ରକ୍ତପାତରେ ରକ୍ତରଂଜିତ କରି ସାମ୍ରାଜ୍ୟ ବିସ୍ତାର ଆଶାରେ କଳିଙ୍ଗ ଅତିକ୍ରମ କରି ଦାକ୍ଷିଣାତ୍ୟ ଆଡ଼କୁ ଅଗ୍ରସର ହେଲାବେଳେ ମଗଧବାହିନୀର

ଯୁଦ୍ଧଯାତ୍ରାର ପ୍ରତିରୋଧ କରିଥିଲେ ଋଷିକୂଲ୍ୟା ଅବବାହିକାର ଦୁର୍ଦ୍ଧର୍ଷ ଅଟବୀମାନେ । ସେମାନେ ଧଉଳୀଗିରି ନିକଟସ୍ଥ ଦୟାନଦୀର ଜଳସ୍ରୋତକୁ ରକ୍ତସ୍ରୋତରେ ପରିଣତ କରି ଏଇ ଆଡ଼କୁ ମୁହାଁଇବା ମଧ୍ୟରେ ଋଷିକୂଲ୍ୟା ନଦୀ କୂଳରେ ଦାକ୍ଷିଣାତ୍ୟ ଜୟଯାତ୍ରା ପାଇଁ ସୈନ୍ୟ ଶିବିର ପକାଇଥିଲେ ।...''

...''ଅଶୋକଙ୍କ ମଗଧ ବାହିନୀ ଏଇ ଆଡ଼କୁ ମାଡ଼ି ଆସୁଥିବାର ସୂଚନା ଋଷିକୂଲ୍ୟା ଅବବାହିକାର ଅରଣ୍ୟ ଗିରିକନ୍ଦରରେ କେଉଁ ଆଦିମକାଳରୁ ବଂଶାନୁକ୍ରମେ ରହିଆସୁଥିବା ଜନଜାତିର ଆଦିମ ଅଧିବାସୀ ଅଟବୀମାନେ ଜାଣିସାରିଥିଲେ । ଅଶୋକ ସେନାବାହିନୀର ଯୁଦ୍ଧଯାତ୍ରାକୁ – ପ୍ରତିହତ କରିବାପାଇଁ ସେମାନଙ୍କ ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଯାଇଥିଲା ।''

କୁମାର ଚନ୍ଦ୍ରଗୁପ୍ତଙ୍କ ପାଇଁ ନିଯୁକ୍ତ ସକଳ ଶାସ୍ତ୍ରର ଗୁରୁ ଯୋଗାଚାର୍ଯ୍ୟ ସିଦ୍ଧନାଥ ଭଞ୍ଜ କହିଲେ– ''ଜାଣିଚ କୁମାର, ଆମର ସମ୍ମୁଖରେ ଥିବା ଯେଉଁ ଘଞ୍ଚ ଅରଣ୍ୟାନୀପୂର୍ଣ୍ଣ ଉଚ୍ଚତମ ପର୍ବତଟି ଦେଖୁଛ, ତାହାଥିଲା ଅଟବୀମାନଙ୍କ ଗୁପ୍ତ ସମାବେଶର ଆସ୍ଥାନ । ଏହି ପର୍ବତରେ ପୂଜା ପାଉଛନ୍ତି ଅଟବୀମାନଙ୍କ ଇଷ୍ଟଦେବୀ ଅପରାଜିତା । ଏହି ପର୍ବତର ନାମ ପୂର୍ଣ୍ଣଗିରି । ପୂର୍ଣ୍ଣଗିରିରେ ପୂଜିତା ଦେବୀ ଅପରାଜିତା ଅତି ପ୍ରତ୍ୟକ୍ଷା । ଅପରାଜିତା ଅଟବୀମାନଙ୍କ ସକଳ ପ୍ରେରଣାର ଉତ୍ସ । ଅଟବୀମାନେ ଯେକୌଣସି ମାଙ୍ଗଳିକ କାର୍ଯ୍ୟ, ଯୁଦ୍ଧ ହେଉ ବା ଶିକାରରେ ଦଳବଦ୍ଧ ହୋଇ ବାହାରିଲାବେଳେ ସେମାନଙ୍କ ସାଙ୍ଗରେ ପ୍ରଚ୍ଛନ୍ନ ରୂପରେ କୁଆଡ଼େ ଅପରାଜିତା ରହିଥା'ନ୍ତି ବୋଲି ସେମାନଙ୍କର ଅଖଣ୍ଡ ବିଶ୍ୱାସ ।''

''...ହଁ, କୁମାର ଚନ୍ଦ୍ରଗୁପ୍ତ ! ବିଶ୍ୱାସ, ଆତ୍ମବିଶ୍ୱାସ, ଯାବତୀୟ ପରାଜୟ ପରେ ଅନ୍ତିମ ବିଜୟର ବିଶ୍ୱାସ, ମଣିଷ ଜାତିକୁ ତଥାପି ଅପରାଜିତ କରି ବଞ୍ଚାଇ ରଖିଆସିଛି । ସରଳ ବିଶ୍ୱାସୀ, ଅତିଥିବତ୍ସଳ ଆଦିମ ଅଧିବାସୀ ଅଟବୀମାନେ ପୁରୁଷ ପୁରୁଷ ଧରି ଏଠାରେ ଅପରାଜିତାଙ୍କ ପାଖରେ ସେମାନଙ୍କର ସକଳ ଆସ୍ଥା, ବିଶ୍ୱାସ ଅର୍ପଣ କରିଦେଇ ଆଶ୍ରିତ ହେଇରହିବା ଫଳରେ ନିର୍ମମ, ନିଷ୍ଠୁର, ନିର୍ଦ୍ଦୟ ଯୁଦ୍ଧଖୋର ସମ୍ରାଟ ଅଶୋକଙ୍କ ଯୁଦ୍ଧଯାତ୍ରାକୁ ପ୍ରତିହତ କରି ଅପରାଜେୟ ଶକ୍ତି ପ୍ରଦର୍ଶନ କରିପାରିଥିଲେ ।''

''...ବୁଝିଲେ କୁମାର, ନିଷ୍ଠୁର ସମ୍ରାଟ ଅଶୋକଙ୍କ ମ୍ଳେଚ୍ଛ ସୈନ୍ୟବାହିନୀ ପାଟଳୀପୁତ୍ରରୁ କଳିଙ୍ଗ ବିରୋଧରେ ଯୁଦ୍ଧଯାତ୍ରା ଆରମ୍ଭ କରି ଧଉଳିଗିରି ଅତିକ୍ରମ କରି ଏହି ପୂର୍ଣ୍ଣଗିରି ପର୍ବତର ପାଦଦେଶରେ ପ୍ରବାହିତ ଋଷିକୂଲ୍ୟା ତଟଦେଶର ଅବବାହିକାରେ ପହଞ୍ଚିଲାବେଳକୁ କ୍ଳାନ୍ତ ହୋଇପଡ଼ିଥିଲେ । ଋଷିକୂଲ୍ୟାତଟରେ ସାମୟିକ ଅବସ୍ଥାନ କାଳରେ ବିଜୟ ଉନ୍ମତ୍ତ ସେନାବାହିନୀ ଓ ସମ୍ରାଟ ଅଶୋକ ସେମାନଙ୍କ ପରବର୍ତ୍ତୀ କାର୍ଯ୍ୟପନ୍ଥା ଓ ସମର ଅଭିଯାନର ପ୍ରସ୍ତୁତିବେଳେ ଦିନେ ରାତିରେ ଅଟବୀବାହିନୀ ପୂର୍ଣ୍ଣଗିରି ପାହାଡ଼

ଉପରେ ଥାଇ ସେମାନଙ୍କ ରଣନୀତି ନିର୍ଦ୍ଧାରଣ କରିଥିଲେ । ଅମାବାସ୍ୟାର ଗଭୀର ରାତ୍ରିରେ ଅଶୋକଙ୍କ ନିରସ୍ତ୍ର ସେନାବାହିନୀ ଶିବିର ଭିତରେ ଗଭୀର ନିଦ୍ରାରେ ଜଡ଼ ପାଲଟି ଯାଇଥିଲାବେଳେ ଶିବିର ଭିତରେ ପ୍ରବେଶ କରିଥିଲେ ଆଟବୀମାନଙ୍କ ଯୁଦ୍ଧ ତାଲିମପ୍ରାପ୍ତ ଗଜବାହିନୀ । ଅଶୋକଙ୍କ ସୈନ୍ୟବାହିନୀ ଅପ୍ରସ୍ତୁତ ଅବସ୍ଥାରେ ଥିବାବେଳେ କଳିଙ୍ଗ ଗଜମାନେ ଦଳଚକଟା ଆରମ୍ଭ କରିଥିଲେ । ପୂର୍ଣ୍ଣଗିରି ପର୍ବତର ଘଞ୍ଚ ବୃକ୍ଷଲତା ଭିତରେ ଥିବା ଅଟବୀ ଯୋଦ୍ଧାମାନେ ବିଷାକ୍ତ ତୀର ବର୍ଷା ଆରମ୍ଭ କରିଦେଇଥିଲେ । ମଗଧ ବାହିନୀର ରଣକୁଶଳୀ ଅଶ୍ୱମାନେ କଳିଙ୍ଗା ହାତୀମାନଙ୍କ ଆକ୍ରମଣରେ ଶିବିର ଛାଡ଼ି ଯେ' ଯୁଆଡ଼ ପ୍ରାଣ ବିକଳରେ ଦୌଡ଼ିବା ଆରମ୍ଭ କରିଦେଇଥିଲେ । ମଗଧ ସେନାବାହିନୀର ଶିବିର ଭୂଲୁଣ୍ଠିତ ହୋଇଥିଲା । ବିଷାକ୍ତ ତୀରବର୍ଷାର ମାଡ଼ରେ ଭୂମି ଉପରେ ଲୋଟି ପଡ଼ିଥିଲା ରକ୍ତପିପାସୁ ମଗଧ ବାହିନୀର କୁଢ଼ କୁଢ଼ ଶବ । ସକାଳ ହେଲା । ଦିଗ୍‌ବିଜୟୀ ସମ୍ରାଟ ଅଶୋକ ନିଜ ସେନାବାହିନୀର ଏପରି ଦୁର୍ଦ୍ଦଶା ଦେଖି ମ୍ରିୟମାଣ ହୋଇପଡ଼ିଥିଲେ । ଏହି ଋଷିକୂଲ୍ୟାକୂଳରୁ ହିଁ ଯୁଦ୍ଧ ବିରତି ଘଟାଇ ମଗଧ ପ୍ରତ୍ୟାବର୍ତ୍ତନ ଛଡ଼ା ତାଙ୍କର ଆଉ ଗତ୍ୟନ୍ତର ନଥିଲା । ଏବେ ଖଡ଼ଗ-ତରବାରୀର ଯୁଦ୍ଧ ବଦଳରେ କୂଟନୈତିକ ଖେଳ ଖେଳିବା ଛଡ଼ା ସମ୍ରାଟ ଅଶୋକଙ୍କ ପାଇଁ ଅନ୍ୟ କୌଣସି ଉପାୟ ନଥିଲା । ବୌଦ୍ଧ ଧର୍ମାବଲମ୍ବୀ କଳିଙ୍ଗର ଜନତାଙ୍କୁ ଆକୃଷ୍ଟ କରିବାପାଇଁ ଚଣ୍ଡାଶୋକ ରାତାରାତି ଧର୍ମାଶୋକରେ ପରିଣତ ହୋଇଗଲେ !''

''...ଆସିଲେ କଳିଙ୍ଗ ବୌଦ୍ଧଭୀକ୍ଷୁ ଉପଗୁପ୍ତ । ମ୍ଳେଚ୍ଛ ପିଶାଚ ନିର୍ମମ ନିଷ୍ଠୁର ଚଣ୍ଡାଶୋକ କମରରୁ ତରବାରୀ ବାହାର କରି ବୌଦ୍ଧଭିକ୍ଷୁ ଉପଗୁପ୍ତଙ୍କ ପାଦତଳେ ସମର୍ପଣ କରି ବୌଦ୍ଧଧର୍ମ ଗ୍ରହଣର ଛଳନା କଲେ । ଚଣ୍ଡାଶୋକ ଧର୍ମାଶୋକରେ ରୂପାନ୍ତରିତ ହୋଇ ବୌଦ୍ଧଧର୍ମର ପୃଷ୍ଠପୋଷକ ପାଲଟିଗଲେ ।''

ଯୋଗାଚାର୍ଯ୍ୟ ସିଦ୍ଧନାଥ ଭଞ୍ଜଙ୍କ ଏପରି ବର୍ଣ୍ଣନାରେ ପିତା ସମୁଦ୍ରଗୁପ୍ତ ଓ ପୁତ୍ର ଚନ୍ଦ୍ରଗୁପ୍ତ ମୁଗ୍ଧ ହୋଇପଡ଼ିଥିଲେ । ସମ୍ରାଟ ସମୁଦ୍ରଗୁପ୍ତ ସିଦ୍ଧନାଥ ଓ ପୁତ୍ର ଚନ୍ଦ୍ରଗୁପ୍ତଙ୍କ ମୁହଁକୁ ଚାହିଁ ରହିଥିଲେ ।

ସମ୍ମୁଖରେ ପୁତ୍ର ଚନ୍ଦ୍ରଗୁପ୍ତ ।

ସମ୍ରାଟ ସମୁଦ୍ରଗୁପ୍ତଙ୍କ ପିତା ଚନ୍ଦ୍ରଗୁପ୍ତ ମଗଧରେ ଗୁପ୍ତସାମ୍ରାଜ୍ୟର ପ୍ରତିଷ୍ଠାତା । ପୁତ୍ର ଚନ୍ଦ୍ରଗୁପ୍ତଙ୍କ ଭିତରେ ସମୁଦ୍ରଗୁପ୍ତ ତାଙ୍କର ସ୍ୱର୍ଗତ ପିତା ଚନ୍ଦ୍ରଗୁପ୍ତଙ୍କର ଅନେକ ସୁଲକ୍ଷଣ ଦେଖି ଆସିଛନ୍ତି । ସମୁଦ୍ରଗୁପ୍ତଙ୍କ ଅନେକ ଭ୍ରାତା । ସମାଟ ଚନ୍ଦ୍ରଗୁପ୍ତଙ୍କ ବହୁ ପୁତ୍ରଙ୍କ ମଧ୍ୟରେ ସମୁଦ୍ରଗୁପ୍ତ ଥିଲେ ସର୍ବ କନିଷ୍ଠ । କନିଷ୍ଠ ହେଲେ ସୁଦ୍ଧା ମଗଧ ସିଂହାସନ ଆରୋହଣ ପାଇଁ ତାଙ୍କ ପାଖରେ ବହୁ ରାଜକୀୟ ଲକ୍ଷଣ ଥିବା ସମ୍ରାଟ ଚନ୍ଦ୍ରଗୁପ୍ତ ଲକ୍ଷ୍ୟ କରିଥିଲେ ।

ସମ୍ରାଟ ଚନ୍ଦ୍ରଗୁପ୍ତଙ୍କ ଦେହାନ୍ତ ପରେ ମଗଧ ସିଂହାସନ ଦଖଲ ପାଇଁ ଭ୍ରାତାମାନଙ୍କ ମଧ୍ୟରେ ଶୀତଳ ଯୁଦ୍ଧ ଆରମ୍ଭ ହୋଇଥିଲା ଏବଂ ଶେଷରେ ବିନା ରକ୍ତପାତ ମଧ୍ୟରେ ସମୁଦ୍ରଗୁପ୍ତ ଅନ୍ୟ ଭ୍ରାତାମାନଙ୍କୁ ପ୍ରତିହତ କରି ମଗଧ ସିଂହାସନ ଆରୋହଣ କରିଥିଲେ । ସେହିପରି ସମ୍ରାଟ ଚନ୍ଦ୍ରଗୁପ୍ତ ମଧ୍ୟ ଥିଲେ ଶାନ୍ତ, ସୁଧୀର ଓ ପ୍ରଜାବତ୍ସଳ ଶାସକ । ସେ ସାମ୍ରାଜ୍ୟ ବିସ୍ତାରର ସ୍ୱପ୍ନ ଦେଖିବା ଅପେକ୍ଷା ମଗଧ ସିଂହାସନ ଦଖଲ ଓ ନିଜ ପଦବୀର ସୁରକ୍ଷା, ଭାତୃବିବାଦ ଜଡ଼ିତ ଷଡ଼ଯନ୍ତ୍ରକୁ ପ୍ରତିହତ କରିବା ମଧ୍ୟରେ ତାଙ୍କର କାର୍ଯ୍ୟକାଳ ସମାପ୍ତ ହୋଇଯାଇଥିଲା, କିନ୍ତୁ ତାଙ୍କ କନିଷ୍ଠ ପୁତ୍ର ଅନ୍ୟ ଭ୍ରାତାମାନଙ୍କୁ ପ୍ରତିହତ କରି ମଗଧ ସିଂହାସନ ଆରୋହଣ କରିବାପରେ, ବିଦେଶୀ ଯବନ ଶତ୍ରୁ, ଶକ ହୁଣମାନଙ୍କ ଆକ୍ରମଣରୁ ନିଜ ମଗଧ ସାମ୍ରାଜ୍ୟକୁ ରକ୍ଷା କରିବାପାଇଁ ଭାରତ ଭୂମିରେ ଶାସନ ଚଳାଇଥିବା ଛୋଟ ରାଜ୍ୟଗୁଡ଼ିକୁ ଜୟ କରି ସମସ୍ତଙ୍କୁ ଏକତା ସୂତ୍ରରେ ବାନ୍ଧି ରଖିବା ଦିଗରେ ଉଦ୍ୟମ ଆରମ୍ଭ କରିଦେଇଥିଲେ । ଏଥିପାଇଁ ତାଙ୍କୁ ସଫଳତା ମଧ୍ୟ ମିଳିଥିଲା । ରାଜଲକ୍ଷ୍ମୀ, ଭାଗ୍ୟଦେବୀ ତାଙ୍କ ପ୍ରତି ପ୍ରସନ୍ନ ହୋଇଥିଲେ । ବହୁ ଭାଷା, ବହୁ ଜାତି, ବହୁ ଧର୍ମ ମତବାଦର ଭୂମି ଏଇ ଭାରତବର୍ଷ । ଭାରତର ଭିନ୍ନ ଭିନ୍ନ ଜାତି ଓ ବିବିଧ ସଂସ୍କୃତି ମଧ୍ୟରେ ସହବସ୍ଥାନ ରକ୍ଷା, ଶାନ୍ତି ଓ ମୈତ୍ରୀ ପ୍ରତିଷ୍ଠାପାଇଁ ସେ ଜୈନ ଧର୍ମ ଓ ବୌଦ୍ଧଧର୍ମର ସମ୍ମାନ ରକ୍ଷା ମଧ୍ୟରେ ଭାଗବତ ଧର୍ମକୁ ମଧ୍ୟ ପୃଷ୍ଠପୋଷକତା କରିଥିଲେ । ମଗଧ ସାମ୍ରାଜ୍ୟ ଭିତରେ ଅତୀତରେ ସମ୍ରାଟ ବିମ୍ବିସାରଙ୍କ ଠାରୁ ଆରମ୍ଭ କରି ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଏବଂ ଅଶୋକଙ୍କ ପର୍ଯ୍ୟନ୍ତ ଅନେକ ସମ୍ରାଟ ଜୈନଧର୍ମ ଓ ବୌଦ୍ଧଧର୍ମର ପୃଷ୍ଠପୋଷକତା କରିବା ଦ୍ୱାରା ସେଇ ଦୁଇ ଧର୍ମ ରାଜଧର୍ମରେ ପରିଣତ ହୋଇଥିଲା । ନିର୍ଦ୍ଦିଷ୍ଟ ଧର୍ମ ରାଜକୀୟ ପୃଷ୍ଠପୋଷକତା ପାଇବା ଫଳରେ ସେହି ଧର୍ମରେ ଯେବେ ଗ୍ଲାନି ପ୍ରବେଶ କରେ ଓ ଅନ୍ୟ ସନାତନ ଧର୍ମଗୁଡ଼ିକ ଅବହେଳିତ, ଅତ୍ୟାଚାରିତ ହୋଇଉଠନ୍ତି, ସେତେବେଳେ ଆରମ୍ଭ ହୁଏ ଜାତିଗତ ଓ ଧର୍ମଗତ ମତମତାନ୍ତର ତହିଁର ପରିଣତି ହୁଏ ବିଦ୍ରୋହ, ସଂଘର୍ଷ ଏବଂ ରକ୍ତପାତ । ଅତୀତରେ ମଗଧ ସାମ୍ରାଜ୍ୟ ଭିତରେ ଏପରି ବହୁ କଟୃତିକ୍ତ ଘଟଣା, ରକ୍ତପାତର ସଂଘର୍ଷ ଘଟିଥିବା ସମୁଦ୍ରଗୁପ୍ତ ଲକ୍ଷ୍ୟ କରିଥିଲେ । ତେଣୁ ସେ ସବୁଧର୍ମର ମୂଳଉତ୍ସ ସନାତନ ଧର୍ମର ପୁର୍ନଜାଗରଣ ପାଇଁ ଭାଗବତ ଧର୍ମର ପୃଷ୍ଠପୋଷକତା ଆରମ୍ଭ କରିଦେଇଥିଲେ । ଅତୀତର ମହାଭାରତ ଯୁଦ୍ଧର ମହାନାୟକ ଶ୍ରୀକୃଷ୍ଣଙ୍କ ପ୍ରବର୍ତ୍ତିତ ଭାଗବତ ଧର୍ମରେ ଥିବା ଭାବଗତ ଐକ୍ୟ ଭାବନା ସମ୍ରାଟ ସମୁଦ୍ରଗୁପ୍ତଙ୍କୁ ମୁଗ୍ଧ କରିଥିଲା । ଏଇ ପୁଣ୍ୟଭୂମି ଭାରତବର୍ଷ ସମଗ୍ର ବିଶ୍ୱରେ ଶ୍ରେଷ୍ଠଭୂମି । ଏହାର ବେଦ –ଉପନିଷଦକାଳୀନ ସନାତନ ସଂସ୍କୃତି ଗୋଟିଏ କଥା କହି ଆସିଚି – 'ସର୍ବଧର୍ମ

ସମାନତ୍ୱ ସ୍ୱଦେଶୀ ସ୍ପର୍ଶଭାବନା । ସର୍ବେ ଭବନ୍ତୁ ସୁଖୀନଃ, ସର୍ବେସନ୍ତୁ ନିରାମୟା, ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ, ମା' କଶ୍ଚିତ୍ ଦୁଃଖଭାକ୍ ଦୁଃଖଭାଗ "ଭବେତ୍" ।'

ସମ୍ରାଟ ସମୁଦ୍ରଗୁପ୍ତ ଋଷିକୂଲ୍ୟାର ବାଲୁକାଶଯ୍ୟାରେ ପଦଚାରଣ କରୁଥିଲେ । ଜ୍ୟୋତ୍ସ୍ନା ବିଚ୍ଛୁରିତ ଆକାଶରେ ପୌଷ ପୂର୍ଣ୍ଣିମାର ଚନ୍ଦ୍ର । ଚନ୍ଦ୍ରଜ୍ୟୋତ୍ସ୍ନା ଋଷିକୂଲ୍ୟାର କ୍ଷୀଣ ଜଳାଧାରରେ ପ୍ରତିଫଳିତ ହେଉଥିଲା । ସାଙ୍ଗରେ ଥିଲେ କାୟାସଙ୍ଗେ ଛାୟାଭଳି କୁମାର ଚନ୍ଦ୍ରଗୁପ୍ତ ଆଉ ତାଙ୍କ ଗୁରୁ ଯୋଗାଚାର୍ଯ୍ୟ ସିଦ୍ଧନାଥ ଭଟ୍ଟ । ଶିବିରରେ ସୈନ୍ୟମାନେ ଦଳ ଦଳ ହୋଇ ଖୁସିଗପ ମଉଜ ମଜଲିସ୍‌ରେ ମତ୍ତ । ନଦୀତଟବର୍ତ୍ତୀ ପୁଣ୍ୟଗିରି ପର୍ବତର ଶିଖର ଦେଶରୁ ଭାସିଆସୁଥାଏ କାହାଳୀ, ଢ଼ୋଲ, ମର୍ଦ୍ଦଳର ବୀର ବାଦ୍ୟ ଧ୍ୱନି ।

ସମୁଦ୍ରଗୁପ୍ତ ଯୋଗାଚାର୍ଯ୍ୟଙ୍କୁ ଉଦ୍ଦେଶ୍ୟ କରି ପଚାରିଲେ- "ଏହି ସାଂଧବେଳାରେ ପାହାଡ଼ ଶିଖରରେ ଏ'କି ଧ୍ୱନି ?"

ଯୋଗାଚାର୍ଯ୍ୟ କହିଲେ – "ସମ୍ରାଟ, ଆଜି ପୌଷ ପୂର୍ଣ୍ଣିମା । ସ୍ଥାନୀୟ ଅଧିବାସୀ ଅଟବୀମାନେ ପୌଷପୂର୍ଣ୍ଣିମାରେ ଦେବୀ ଅପରାଜିତାଙ୍କ ପାଖରେ ରୁଣ୍ଡ ହୋଇ ଦେବୀଙ୍କ ପୂଜାର୍ଚ୍ଚନା କରୁଛନ୍ତି । ଚୈତ୍ରମାସର ପ୍ରତିଟି ମଙ୍ଗଳବାରରେ ବଳିପୂଜା କରନ୍ତି । ସରଳ ବିଶ୍ୱାସୀ, ଅତିଥି ପରାୟଣ ଅଟବୀମାନଙ୍କ ଦଳପତି ଆଜି ସକାଳ ଆମ ସୈନ୍ୟ ଶିବିରକୁ ଆସି ଉତ୍ସବରେ ଯୋଗଦେବାକୁ ନିମନ୍ତ୍ରଣ କରିଯାଇଛନ୍ତି । ଆଉ କିଛି କ୍ଷଣ ପରେ ସେମାନେ ଦେବୀ ଅପରାଜିତାଙ୍କୁ ସମର୍ପିତ ପଶୁବଳିର ପ୍ରସାଦ ଆଉ ସେମାନଙ୍କ ଦ୍ୱାରା ପାରଂପାରିକ କୌଶଳରେ ପ୍ରସ୍ତୁତ ନିଶାଯୁକ୍ତ ପାନୀୟ କାଦମ୍ବରୀ ଆମ ସୈନ୍ୟମାନଙ୍କୁ ପରିବେଷଣ କରିବାକୁ ସମ୍ରାଟଙ୍କ ସମ୍ମତି କାମନା କରିଛନ୍ତି । ଯୁଦ୍ଧ ଅଭିଯାନରେ କ୍ଳାନ୍ତ ଆମ ସୈନ୍ୟମାନେ ମଦମାଂସର ପ୍ରସାଦ ପାଇଁ ଆଗ୍ରହୀ । କାଦମ୍ବରୀ ମଦ୍ୟପାନ ଆଉ ମାଂସ ଖାଇ ସେମାନେ ଆଜି ରାତିରେ ମତୁଆଲା ହେବେ ।"

ସମ୍ରାଟ ହସି ହସି କହିଥିଲେ –"ମୋର ସେଥିରେ ଆପତ୍ତି ନାହିଁ । ତେବେ ସେମାନଙ୍କ ଦେବୀ ଅପରାଜିତାଙ୍କ ପ୍ରସାଦ ଆମ ସେନାମାନେ ଗ୍ରହଣ କରିବା ପୂର୍ବରୁ ବୈଦରାଜ ଗୁଣ୍ଡରିକାକ୍ଷଙ୍କ ଦ୍ୱାରା ପରୀକ୍ଷା କରାଯିବା ଦରକାର । ଏଇ ଅରଣ୍ୟାଞ୍ଚଳର ଅଧିବାସୀମାନେ ଶାନ୍ତ, ସରଳ ଓ ବନ୍ଧୁତ୍ୱପ୍ରିୟ ହୋଇଥିବା ଦୃଷ୍ଟିରୁ ଏହି ଅଞ୍ଚଳ ମଗଧ ଶାସନାଧୀନ କରି ରଖିବାକୁ ହେଲେ ସେମାନଙ୍କ ସହିତ ଆମର ସଂପର୍କ ପ୍ରତିଷ୍ଠା ଓ ବନ୍ଧୁତ୍ୱ ସ୍ଥାପନ ନିହାତି ଆବଶ୍ୟକ ।"

ପାଖରେ ଥିବା ମଗଧ ସେନାପତି ବୁଦ୍ଧାଦିତ୍ୟଙ୍କୁ ଲକ୍ଷ୍ୟକରି ସମ୍ରାଟ ଆଦେଶ

ଦେଲେ- "ସେନାପତି, ଏଠାରେ ଆମେ ଏକପକ୍ଷବ୍ୟାପୀ ବିଶ୍ରାମ କରିସାରିଲେଣି । ଆସନ୍ତାକାଲି ଠାରୁ ଦାକ୍ଷିଣାତ୍ୟ ଯାତ୍ରା ପାଇଁ ଯଜ୍ଞର ଅଶ୍ୱକୁ ପ୍ରସ୍ତୁତ କରାଯାଉ.... "

ସମ୍ରାଟ ସମୁଦ୍ରଗୁପ୍ତଙ୍କ ଭାବାନ୍ତର ହେଲା । ଭାବନା ରାଜ୍ୟରେ ଘୂରି ଘୂରି ସେ ସୁଦୂର ଅତୀତକୁ ଚାଲିଯାଇଥିଲେ ।

ନୃତ୍ୟ ସଂଗୀତର ଉତ୍ତାଳ ତରଙ୍ଗ ମଧ୍ୟରେ ମହାକାଳ ମନ୍ଦିରର ନାଟମନ୍ଦିର ପ୍ରାଙ୍ଗଣ ଉଚ୍ଛୁଳି ଉଠୁଛି । ନୃତ୍ୟ ଉତ୍ସବର ପରିସମାପ୍ତି ପରେ ରାଜଭୋଜ ପାଇଁ ମନ୍ଦିରର ଭୋଗ ମଣ୍ଡପରେ ବ୍ୟବସ୍ଥା ହୋଇଛି । ସମ୍ରାଟ ସମୁଦ୍ରଗୁପ୍ତଙ୍କ ନିର୍ଦ୍ଦେଶ- ଆଜି ସେ ପ୍ରଜାକୁଳ, ଅତିଥି ଅଭ୍ୟାଗତ, ରାଜକର୍ମଚାରୀଙ୍କ ସହିତ ଭୋଜନ କରିବେ । ଏବେ ସେ ମଗଧର ସମ୍ରାଟ କେବଳ ନୁହନ୍ତି ଏହି ବିଶାଳ ସାମ୍ରାଜ୍ୟର ଜଣେ ସାଧାରଣ ନାଗରିକ ବୋଲି ନିଜକୁ ମନେ କରୁଛନ୍ତି ।

ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦୀର୍ଘ ନିରାମୟ ଜୀବନ କାମନା କରି ନଟନଟୀ, ନୃତ୍ୟ ସଂଗୀତ ଶିଳ୍ପୀମାନେ ବୃନ୍ଦଗାନ କଲାପରେ ଆସରର ପରିସମାପ୍ତି ଘୋଷଣା ହେଲା ।

ମଗଧ ସାମ୍ରାଜ୍ୟର ପ୍ରାଣକେନ୍ଦ୍ର, ମୁଖ୍ୟ ରାଜଧାନୀ ପାଟଳୀପୁତ୍ରର ରାଜମହଲର ରାଜଦରବାର ଏକମାସ ପରେ ଆୟୋଜନ ହୋଇଥିଲା । ସମ୍ରାଟ ସମୁଦ୍ରଗୁପ୍ତ ଉଜ୍ଜୟିନୀରୁ ପାଟଳୀପୁତ୍ର ପ୍ରତ୍ୟାବର୍ତ୍ତନର ସପ୍ତାହେ ବିତିଗଲାଣି ।

ପାଟଳିପୁତ୍ରର ଶ୍ରେଷ୍ଠୀ, ସାମନ୍ତ, ବଣିକମାନଙ୍କ ଉପସ୍ଥିତିରେ ସମ୍ରାଟଙ୍କ ଦରବାର ଭରପୁର । ଶ୍ରେଷ୍ଠୀ ସାମନ୍ତ ବଣିକମାନେ ସମ୍ରାଟଙ୍କୁ ତାଙ୍କ ଷଷ୍ଠୀପୂର୍ତ୍ତି ଉପଲକ୍ଷେ ସମ୍ବର୍ଦ୍ଧନା ଜଣାଉଥିବାବେଳେ ରାଜସଭାର ପଣ୍ଡିତ ବିଦ୍ୱାନମାନେ ଆଶୀର୍ବାଦର ଶ୍ଳୋକ ଆବୃତ୍ତି କରୁଥା'ନ୍ତି । ସମ୍ରାଟ ସମୁଦ୍ରଗୁପ୍ତ ତାଙ୍କ ହିତାକାଂକ୍ଷୀମାନଙ୍କୁ ଯୋଡ଼ହସ୍ତରେ ପ୍ରତିଅଭିବାଦନ - ପ୍ରଣାମ ଜଣାଇ ସେମାନଙ୍କ ପରିବାର, ନଗର ଜନପଦମାନଙ୍କର କୁଶଳ ଜିଜ୍ଞାସା କରୁଥା'ନ୍ତି । ସମ୍ରାଟଙ୍କ ସିଂହାସନକୁ ଲାଗି ଅନ୍ୟଦୁଇଟି ପାର୍ଶ୍ୱ ସିଂହାସନରେ ବସିଥା'ନ୍ତି କନିଷ୍ଠ କୁମାର ଚନ୍ଦ୍ରଗୁପ୍ତ ଆଉ ମହାରାଣୀ ଦତ୍ତାଦେବୀ । ଯୁବରାଜ, ଜ୍ୟେଷ୍ଠ କୁମାର ରାମଗୁପ୍ତଙ୍କ ପାଇଁ ରାଜଦରବାରରେ ଉଦ୍ଦିଷ୍ଟ ସିଂହାସନଟି ଖାଲି ପଡ଼ିଛି ।

ରାଜଦରବାରର ସଭାକକ୍ଷ ବହୁଦିନର ବ୍ୟବଧାନରେ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଉପସ୍ଥିତିରେ ସରଗରମ ହୋଇଉଠିଛି । ସଭାସଦମାନେ ଉତ୍‌ଫୁଲ୍ଲିତ ହୋଇଉଠିଥା'ନ୍ତି ।

ସମ୍ରାଟଙ୍କ ଦରବାରର ଶୋଭାବର୍ଦ୍ଧନ କରୁଥିବା ରାଜକବି ହରିସେଣ, ବସୁବନ୍ଧୁ ଓ ଅସଙ୍ଗ ନିଜ ନିଜ ଆଶୁ କବିତା ଉଚ୍ଚାରଣ ମଧ୍ୟରେ ସମୁଦ୍ରଗୁପ୍ତଙ୍କ ବୀରତ୍ୱଗାଥା ବର୍ଣ୍ଣନା କରୁଛନ୍ତି । କ୍ଲାନ୍ତ, ଅବସନ୍ନ ଓ ବିଷର୍ଣ୍ଣ ବଦନରେ ସମ୍ରାଟ ସମୁଦ୍ରଗୁପ୍ତ ଦରବାରରେ ଉପସ୍ଥିତ ସଭାସଦ ମାନଙ୍କ ଆସନ ଗୁଡ଼ିକ ଉପରେ ଦୃଷ୍ଟି ପହଁରାଇ ଆଣିଲେ । ହଠାତ୍ ତାଙ୍କ ଦୃଷ୍ଟି ଯୁବରାଜ ରାମଗୁପ୍ତଙ୍କ ପାଇଁ ଉଦ୍ଦିଷ୍ଟ ଶୂନ୍ୟସିଂହାସନ ଉପରେ ନିବଦ୍ଧ ହେଲା ।

ସମ୍ରାଟ କନିଷ୍ଠ କୁମାର ଚନ୍ଦ୍ରଗୁପ୍ତଙ୍କୁ ଉଦ୍ଦେଶ୍ୟ କରି ପଚାରିଲେ – "କୁମାର ! ଯୁବରାଜ ରାମଗୁପ୍ତଙ୍କ ଖବର କ'ଣ ? ଆଜି ଏଠାରେ ତାଙ୍କର ଅନୁପସ୍ଥିତିର କାରଣ ?"

ବିନମ୍ର କଣ୍ଠରେ କୁମାର ଚନ୍ଦ୍ରଗୁପ୍ତ କହିଲେ – "ଯୁବରାଜ ଆପଣଙ୍କ ଷଷ୍ଠୀପୂର୍ତ୍ତି ଉତ୍ସବ ଉପଲକ୍ଷେ ଉଜ୍ଜୟିନୀ ଯାହା ଯାଇଥିଲେ, ସେଠାରେ ତାଙ୍କୁ ଯାହା ମୁଁ ଦେଖିଥିଲି । ସେହିଦିନଠାରୁ ସେ ଯେତେଦୂର ସମ୍ଭବ ଉଜ୍ଜୟିନୀରେ ଅଛନ୍ତି । ପାଟଳିପୁତ୍ରକୁ ସେ ଫେରିଛନ୍ତି କି ନାହିଁ ତା'ର କୌଣସି ସୂଚନା ମୋ ପାଖରେ ନାହିଁ ।"

ଅନୁଭବୀ, ଦୂରଦୃଷ୍ଟିସଂପନ୍ନ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଚିନ୍ତାମଗ୍ନ ଦୃଷ୍ଟି ଭୂମି ଉପରେ ନିବଦ୍ଧ ହୋଇରହିଥିଲା । ସେ ଭାବଗମ୍ଭୀର କଣ୍ଠରେ କହିଲେ – "ହୁଁ !"

ମହାରାଣୀ ଦତ୍ତାଦେବୀ ଓ କୁମାର ଚନ୍ଦ୍ରଗୁପ୍ତ ସମ୍ରାଟଙ୍କୁ ଜିଜ୍ଞାସୁ ଦୃଷ୍ଟିରେ, ଅପଲକ ନୟନରେ ଚାହିଁ ରହିଥିଲେ । ମହାଅମାତ୍ୟ ଶିଖରସେଣ ସେନାପତି ବୁଦ୍ଧାଦିତ୍ୟ, ରାଜଗୁରୁ ଯୋଗାଚାର୍ଯ୍ୟ ସିଦ୍ଧନାଥ ଭଟ୍ଟ ସମ୍ରାଟଙ୍କ ଭାବଗମ୍ଭୀର ମୁଖମଣ୍ଡଳରୁ ଏକ ଆସନ୍ନ ଝଡ଼ର ସୂଚନା ଯେମିତି ପାଇସାରିଥିଲେ ।

ସମ୍ରାଟଙ୍କ ଦୃଷ୍ଟି ମହାଅମାତ୍ୟ ଶିଖରସେଣଙ୍କ ଉପରେ କେନ୍ଦ୍ରୀଭୂତ ହେଲା । ସମ୍ରାଟ ସ୍ଥିର କଣ୍ଠରେ କହିଲେ – "ଅମାତ୍ୟ !"

ଶିଖରସେଣ ଆସନ ଉପରୁ ଉଠି ଠିଆହେଲେ । ଯୋଡ଼ ହସ୍ତରେ ସମୁଦ୍ରଗୁପ୍ତଙ୍କୁ ପ୍ରଣାମ କରି କହିଲେ –" ଆଦେଶ କରନ୍ତୁ ସମ୍ରାଟ ।"

–"ଅମାତ୍ୟ ! ଅନୁଗ୍ରହ କରି ତମେ କହିପାରିବ, ମୁଁ କିଏ ?" ସମ୍ରାଟଙ୍କ ଏପରି ପ୍ରଶ୍ନରେ ମହାଅମାତ୍ୟ ଚମକି ପଡ଼ିଲେ । ମୂକ, ବଧିର ଭଳି ସେ କରୁଣଭରା ଦୃଷ୍ଟିରେ ସମ୍ରାଟଙ୍କୁ ଚାହିଁରହିଥିଲେ ।

–"ଶିଖରସେଣ ! ତମେ ବିଶାଳ ମଗଧ ସାମ୍ରାଜ୍ୟର ମହାଅମାତ୍ୟ । ତମେ

ଏଇ ସାମ୍ରାଜ୍ୟର ଶାସନକାର୍ଯ୍ୟରେ ମୋ ସହିତ ବହୁ ବର୍ଷ ଧରି କାର୍ଯ୍ୟ କରିଛ । ତମେ ଜଣେ ଅନୁଭବୀ ବ୍ୟକ୍ତି ବୋଲି ପ୍ରଶ୍ନ ମୁଁ କରୁଛି । କୁହ, ମୁଁ ଜାଣିବାକୁ ଚାହୁଁଛି ମୁଁ କିଏ ?''

ସାହସ ସଂଚୟ କରି ଶିଖରସେଣ କହିଲେ – ''ମହାରାଜାଧିରାଜ ! ସକଳ ଶକ୍ତିର ଆଧାର ସୂର୍ଯ୍ୟଦେବଙ୍କୁ ଆଲୋକଶିଖାର ବା କି ପ୍ରୟୋଜନ ? ଆପଣ ତ ସମୁଦ୍ର ପରି ବିଶାଳ, ଆକାଶ ପରି ଉଦାର ପୁଣି ସମଗ୍ର ଭାରତବର୍ଷ... ଆକୁମାରୀ ହିମାଳୟ ବ୍ୟାପୀ ଆର୍ଯ୍ୟାବର୍ତ୍ତ, ଦକ୍ଷିଣାବର୍ତ୍ତ ପୁଣି ପୂର୍ବ-ପଶ୍ଚିମ ଉତ୍ତର ଦକ୍ଷିଣ ପର୍ଯ୍ୟନ୍ତ ବ୍ୟାପ୍ତ ଏହି ଭାରତ ଭୂଖଣ୍ଡର ଏକଛତ୍ର ସମ୍ରାଟ । ସୂର୍ଯ୍ୟଦେବ ଯଦି ଚନ୍ଦ୍ର ଆଉ ତାରାପୁଞ୍ଜଙ୍କୁ ପଚାରିବେ ମୁଁ କିଏ, ତେବେ କାହାର ବା ସାମର୍ଥ୍ୟ ଅଛି ଏହି ପ୍ରଶ୍ନର ଉତ୍ତର ଦେବାରେ କିବା ପ୍ରୟୋଜନ ମହାରାଜ ।''

–''ଯଦି ପ୍ରୟୋଜନ ନାହିଁ, ତେବେ ମୁଁ ବା କାହିଁକି ତୁମକୁ ଏପରି ପ୍ରଶ୍ନ କରନ୍ତି ?''

ପୁଣି ଯୋଡ଼ହସ୍ତରେ, ବିନମ୍ର ଭାବ ତୋଳି ଶିଖରସେଣ କହିଲେ – ''ସମ୍ରାଟ ଆପଣ ଦିଗ୍‌ବିଜୟୀ, ଅଶ୍ୱମେଧ ଯଜ୍ଞକର୍ତ୍ତା, ଗୁପ୍ତ ସାମ୍ରାଜ୍ୟର ମହାନ ଶାସକ ।''

–''ଅଶ୍ୱମେଧ ଯଜ୍ଞର ଆୟୋଜକ ମୁଁ ହିଁ ଥିଲି ନା, ଅମାତ୍ୟ ?'' ସଂଶୟଭରା କଣ୍ଠରେ ସମୁଦ୍ରଗୁପ୍ତ ରାଜଦରବାରରେ ଉପସ୍ଥିତ ସଭାସଦମାନଙ୍କୁ ଚାହିଁ କହିଲେ ।

–''ହଁ, ମହାରାଜାଧିରାଜ ! ଆପଣ ସମଗ୍ର ଭାରତବର୍ଷର ରାଜା ମହାରାଜା, ପ୍ରଜାବର୍ଗଙ୍କୁ ଏକତାସୂତ୍ରରେ ବାନ୍ଧି ରଖିବାପାଇଁ ଅଶ୍ୱମେଧ ଯଜ୍ଞର ଆୟୋଜନ କରିଥିଲେ ଆଉ ଯଜ୍ଞର ଅଶ୍ୱ ଭାରତବର୍ଷର ଯେଉଁ ରାଜ୍ୟ ଜନପଦରେ ପାଦ ଦେଇଛି, ସେହି ଭୂଖଣ୍ଡ ପରା ମଗଧ ସାମ୍ରାଜ୍ୟର ଅଧିନସ୍ଥ ହୋଇଛନ୍ତି । ଆପଣଙ୍କ ଭଳି ଉଦାର, ମହାପ୍ରତାପଶାଳୀ ଶାସକଙ୍କ ବିକଳ୍ପ ଏଇ ଭୂମିରେ ନାହାନ୍ତି, ଛାମୁ !''

ସମ୍ରାଟ ସମୁଦ୍ରଗୁପ୍ତ ନିଜକୁ ନିଜେ ବ୍ୟଙ୍ଗ କରିବା ଠାଣିରେ ଅଟ୍ଟହାସ କଲେ ଏବଂ ସଭାସଦମାନଙ୍କୁ ପ୍ରଶ୍ନ କଲେ –''ମୁଁ ପ୍ରବଳ ପ୍ରତାପୀ ଦିଗ୍‌ବିଜୟୀ ମଗଧ ସମ୍ରାଟ ସମୁଦ୍ରଗୁପ୍ତ ! କିନ୍ତୁ.... ''

''କିନ୍ତୁ ପୁଣି କ'ଣ ମହାରାଜାଧିରାଜ ?'' ମହାଅମାତ୍ୟ ଶିଖରସେଣ ସାହସ ସଂଚୟ କରି କହିଲେ ।

ସମୁଦ୍ରଗୁପ୍ତ ମହାରାଣୀ ଦତ୍ତାଦେବୀ ଓ ପାର୍ଶ୍ୱସିଂହାସନରେ ବସିଥିବା କନିଷ୍ଠ ପୁତ୍ର ଚନ୍ଦ୍ରଗୁପ୍ତଙ୍କ ଆଡ଼କୁ ଚାହିଁ କହିଲେ – ''କିନ୍ତୁ ଜୀବନର ଏଇ ଆସନ୍ନ ଅନ୍ତିମ କ୍ଷଣରେ ମୁଁ ନିଜ ପାଖରେ ନିଜେ ଯେମିତି ହାରିଯାଉଥିବା ଭଳି ଅନୁଭବ କରୁଛି କାହିଁକି, ଅମାତ୍ୟ ?''

ମହାଅମାତ୍ୟ ଶିଖରସେଣ କହିଲେ –" ଏହା ବୟସର ଲକ୍ଷଣ ସମ୍ରାଟ । ସେ ସାଧାରଣ ପ୍ରଜା ହୁଅନ୍ତୁ ବା ସମ୍ରାଟ... ସମସ୍ତେ ରକ୍ତମାଂସର ମଣିଷ । ମଣିଷ ଜାତି ସକଳ ପ୍ରାପ୍ତି ଓ ପ୍ରାଚୁର୍ଯ୍ୟ ସତ୍ତ୍ୱେ ଜୀବନର ସୂର୍ଯ୍ୟାସ୍ତ ବେଳକୁ କିଛି ନପାଇବା, ଅନେକ କିଛି ହରେଇଥିବା ଭଳି ଅବଶୋଷରେ ହତାଶ ହୋଇପଡ଼େ । ଆପଣ ସମୁଦ୍ରପରି ବିଶାଳ ହୃଦୟ, ଇଚ୍ଛାଶକ୍ତିର ସମର୍ଥ ପୁରୁଷ, ସମ୍ରାଟ ! ମଗଧରେ ଗୁପ୍ତ ବଂଶୀ ଶାସନର ପ୍ରତିଷ୍ଠାତା, ପିତା ଚନ୍ଦ୍ରଗୁପ୍ତଙ୍କ ଯୋଗ୍ୟ ଉତ୍ତରାଧିକାରୀ ଭାବେ ମଗଧ ସାମ୍ରାଜ୍ୟର ବିସ୍ତାର କରିଛନ୍ତି । ନିଜର ଭୋଗବିଳାସ ଅପେକ୍ଷା ମଗଧ ସାମ୍ରାଜ୍ୟ ଶାସନାଧୀନ ପ୍ରଜାକୁଳର ମଙ୍ଗଳ, କଳା, ସାହିତ୍ୟ, ସଙ୍ଗୀତ, ସ୍ଥାପତ୍ୟ ଆଦି ଅପୂର୍ବ କୀର୍ତ୍ତିରାଜି ଆପଣଙ୍କ ପ୍ରୋତ୍ସାହନ ଓ ପୃଷ୍ଠପୋଷକତାରେ ବିକାଶ ଘଟିଛି । ଆପଣ ମଗଧ ସାମ୍ରାଜ୍ୟରେ ସ୍ୱର୍ଣ୍ଣଯୁଗର ପ୍ରବର୍ତ୍ତକ । ଆପଣ ଜଣେ ପ୍ରଜାବତ୍ସଳ ଶାସକଭାବେ ପ୍ରଜାକୁଳର ଆସ୍ଥା ଓ ବିଶ୍ୱାସର ପ୍ରତୀକ, ଛାମୁ ! ଆପଣଙ୍କ ଭିତରେ ହତାଶାଭାବ କାହିଁକି ସମ୍ରାଟ !"

ମ୍ଳାନ ହସ ହସି ସମୁଦ୍ରଗୁପ୍ତ କହିଲେ –"ମତେ ଆପଣମାନେ ସମର୍ଥ ପୁରୁଷ ବୋଲି ଯେତେ ମିଥ୍ୟା ସାନ୍ତ୍ୱନା ଦେଲେ ସୁଦ୍ଧା ମୁଁ ମୋ ରକ୍ତ ପାଖରେ ପରାସ୍ତ ହୋଇଯାଇଛି । ଯେମିତି ସୃଷ୍ଟି ପାଖରେ ସ୍ୱୟଂ ସ୍ରଷ୍ଟା ନତମସ୍ତକ । ଏହା କ'ଣ ମୋର ନିୟତିର ପରିଣତି ?"

ମହାରାଣୀ ଦତ୍ତାଦେବୀ ଶଂକିତ ଦୃଷ୍ଟିରେ ସମ୍ରାଟ ସମୁଦ୍ରଗୁପ୍ତଙ୍କୁ ଚାହିଁ ରହିଥିଲେ । କୁମାର ଚନ୍ଦ୍ରଗୁପ୍ତ ସମ୍ରାଟଙ୍କ ଏପରି ହତାଶଭରା ମନ୍ତବ୍ୟ ପାଇଁ ଉଦ୍‌ବିଗ୍ନ ହୋଇଉଠିଲେ । ସଭାସଦପୂର୍ଣ୍ଣ ରାଜଦରବାରରେ ସମ୍ରାଟଙ୍କ ଏପରି କ୍ଷୋଭଭରା ମନ୍ତବ୍ୟ ସଜ୍ଜନମଣ୍ଡଳୀକୁ ଚକିତ କରିଦେଇଥିଲା ।

ମହାଅମାତ୍ୟ ଶିଖରସେଣ ସମ୍ରାଟଙ୍କୁ ଉଦ୍ଦେଶ୍ୟ କରି କହିଲେ– "କ୍ଷମା କରିବେ ମହାରାଜ, ଆପଣଙ୍କ ଏଇ ଅଶାନ୍ତି ଓ କ୍ଷୋଭ ଜ୍ୟେଷ୍ଠ କୁମାର ରାମଗୁପ୍ତଙ୍କୁ ସଂକେତ କରୁନାହିଁ ତ ?

ସମୁଦ୍ରଗୁପ୍ତ ଭାବଗମ୍ଭୀର ମୁଦ୍ରାରେ ଦୃଷ୍ଟି ଟେକି କହିଲେ – "ହଁ, ମୋର ଯେତେ ସବୁ ଚିନ୍ତା, କ୍ଷୋଭ ଓ ଅଶାନ୍ତି ଯୁବରାଜ ରାମଗୁପ୍ତଙ୍କୁ କେନ୍ଦ୍ର କରି ସୃଷ୍ଟି ହେଉଚି, ଅମାତ୍ୟ ! ମୁଁ ମୋର ବୁଦ୍ଧି ଓ ବାହୁ ବଳରେ ଯେଉଁ ମଗଧ ସାମ୍ରାଜ୍ୟ ବିସ୍ତାର କରିଛି, ମୋର ଅବସାନ ସହିତ ଇଏ ଗୁପ୍ତବଂଶର ବିଶାଳ ସାମ୍ରାଜ୍ୟ ପାଇଁ ପତନର କାରଣ ହେବ ନାହିଁ ତ ?"

ଅମାତ୍ୟ କହିଲେ-" ଶାନ୍ତ ହୁଅନ୍ତୁ ରାଜାଧିରାଜ । ଏହି ସମୟରେ ଅଶୁଭ ଆଶଙ୍କା କରାଯିବା ଉଚିତ ନୁହେଁ ! ଜ୍ୟେଷ୍ଠ କୁମାର ଏବେ ମଧ୍ୟ ଗୋଟେ ବାଳକ ।"

ସମ୍ରାଟ ଅଟ୍ଟହାସ କଲେ – "କ'ଣ କହୁଛ ଅମାତ୍ୟ, ବାଳକ ? ରାମଗୁପ୍ତ ଏବେ ସୁଦ୍ଧା ବାଳକ ? ହୁଁ ! ପଚିଶି ବର୍ଷର ଯୁବକକୁ ଯଦି ବାଳକ କୁହାଯିବ, ତେବେ ମୋତେ ବୁଝାପଡୁନାହିଁ, ମଣିଷକୁ ଯୌବନ କେବେ ଆସେ ?"

–"ଯୁବରାଜ ରାମଗୁପ୍ତ ଏବେ ଦାୟିତ୍ୱହୀନ । ଆପଣଙ୍କ ଛତ୍ରଛାୟା ତଳେ ଆଶ୍ରିତ । ତାଙ୍କ ଉପରକୁ ଯେବେ ରାଜ୍ୟଶାସନ ଭାର ଆସିଯିବ, ଯୁବରାଜ ଆପେ ଆପେ ରାଜାର ଧର୍ମ ଓ କର୍ତ୍ତବ୍ୟ ପାଳନ ପାଇଁ ଦାୟିତ୍ୱବାନ ହୋଇଯିବେ, ପ୍ରଭୁ ।"

–"ନା, ଅମାତ୍ୟ ! ରାମଗୁପ୍ତ ଯଦି ତୁମ ଦୃଷ୍ଟିରେ ଏବେ ସୁଦ୍ଧା ବାଳକ ତେବେ ସେ କେଉଁ ଆବଶ୍ୟକତା ଓ ଯୋଗ୍ୟତା ବଳରେ ସୁରାପାନ ଓ ସୁନ୍ଦରୀମଣୀମାନଙ୍କ ସହିତ ଭୋଗବିଳାସରେ ଦିନରାତି ମତ୍ତ ରହୁଛି ?"

ଅମାତ୍ୟ ଶିଖରସେଣ ଯୁବରାଜ ରାମଗୁପ୍ତଙ୍କୁ ସମ୍ରାଟଙ୍କ ରୋଷରୁ ରକ୍ଷା କରିବାପାଇଁ କହିଲେ –"ସମ୍ରାଟ ! ଏସବୁ କାର୍ଯ୍ୟକଳାପ ଦୃଷ୍ଟିରୁ ତାହା ଯୁବରାଜଙ୍କ ବାଳସୁଲଭ ଚପଳତା ବା ସଂଗଦୋଷର କାରଣ ବୋଲି କୁହାଯାଇପାରେ । କିନ୍ତୁ ମୋର ସଂପୂର୍ଣ୍ଣ ବିଶ୍ୱାସ ରହିଛି , ଆପଣଙ୍କ ଉତ୍ତରଧାରୀ ଭାବେ ଯୁବରାଜ ରାମଗୁପ୍ତ ଯେବେ ଦାୟିତ୍ୱ ଗ୍ରହଣ କରିବେ ସେ ଆପଣଙ୍କ କୀର୍ତ୍ତିରାଜି ଗୁଡ଼ିକର ସୁରକ୍ଷା ଓ ବିଜୟଧ୍ୱଜାକୁ ଅକ୍ଷୂର୍ଣ୍ଣ ରଖିବେ ।"

–"କ'ଣ କହିଲ, ଅମାତ୍ୟ ? ତୁମର ଯୁବରାଜ ମୋର ଯଶ ଓ କୀର୍ତ୍ତିରାଜିକୁ ରଖିବ ନା ଗୁପ୍ତବଂଶରେ କଳଙ୍କ ବୋଳିବ ?"

–"ମୋତେ କ୍ଷମା କରିବେ ମହାରାଜାଧିରାଜ, ଏବେ ଆପଣ ଯୁବରାଜ ରାମଗୁପ୍ତଙ୍କୁ ଏକ ପିତା ଦୃଷ୍ଟିରେ ଦେଖୁଛନ୍ତି ବୋଲି ଏପରି କହୁଛନ୍ତି । ଅନ୍ୟଥା ଜ୍ୟେଷ୍ଠ କୁମାରଙ୍କ ବିଷୟରେ ଏପରି ଦୁର୍ବଳ, ଆସ୍ଥାହୀନ ମନ୍ତବ୍ୟ ଦେଇନଥାନ୍ତେ । କିନ୍ତୁ ଏକଥା ସତ୍ୟ, ଯେବେ ସୁଯୋଗ ମିଳିବ ଓ ସେପରି ପରିବେଶ ସୃଷ୍ଟିହେବ ଯୁବରାଜ ରାମଗୁପ୍ତ ମଗଧ ସାମ୍ରାଜ୍ୟର ପ୍ରଜାବତ୍ସଳ ଶାସକ ଭାବେ ନିଜ ଯୋଗ୍ୟତା ପ୍ରଦର୍ଶନ କରିବେ । ଏବେ ସେ ବାଳସୁଲଭ ଚପଳତାରେ ତ୍ରୁଟିପୂର୍ଣ୍ଣ କାର୍ଯ୍ୟମାନ ଯାହା କରୁଛନ୍ତି ତାହା ଅବଶ୍ୟ ଭିନ୍ନ ପ୍ରସଙ୍ଗ ।"

–"ହୁଁ...." ସମୁଦ୍ରଗୁପ୍ତଙ୍କ ଓଠରେ ବ୍ୟଙ୍ଗଭରା କ୍ଷୋଭ ପ୍ରକଟ ହେଲା – "ଅମାତ୍ୟ !"

–''ଆଜ୍ଞା, ଦେବ !'' ଅମାତ୍ୟ ମଥାନତ କରି ଯୋଡ଼ ହସ୍ତରେ ଠିଆ ହୋଇଥିଲେ ।

–''ମଗଧ ସାମ୍ରାଜ୍ୟର ତୁମେ ଏବେ ମହାଅମାତ୍ୟ । ମୋର ବହୁ ବର୍ଷର ପୁରୁଣା ସହଯୋଗୀ । ତୁମର ବୟସାଧିକ୍ୟ ଯୋଗୁଁ ଦୃଷ୍ଟିଶକ୍ତି କ୍ଷୀଣ ହୋଇନାହିଁ ତ ?''

ମହାଅମାତ୍ୟ ଶିଖରସେଣ ବ୍ୟସ୍ତ ବିବ୍ରତ ହୋଇପଡ଼ି କହିଲେ –''ମୋର ଦୃଷ୍ଟିଶକ୍ତିହୀନତା ଉପରେ ସମ୍ରାଟଙ୍କ ସନ୍ଦେହର କାରଣ କ'ଣ ହୋଇପାରେ, ପ୍ରଭୁ ?''

–''ତୁମେ ଦେଖୁଛ ତ ମୁଁ କେଉଁ ଆସନ ଉପରେ ବସିଛି ? ରାଜସିଂହାସନ ଉପରେ ରାଜା ବସିଥାଏ, ପିତା ନୁହେଁ ।''

ମହାଅମାତ୍ୟଙ୍କ ମୁଣ୍ଡ ତଳକୁ ନଇଁଗଲା ।

ଯୁବରାଜ ରାମଗୁପ୍ତଙ୍କୁ କେନ୍ଦ୍ରକରି ସମ୍ରାଟ ସମୁଦ୍ରଗୁପ୍ତ ଓ ମହାଅମାତ୍ୟ ଶିଖରସେଣଙ୍କ ମଧ୍ୟରେ ଯୁକ୍ତିତର୍କ ଚାଲିଥିବା ବେଳେ ପ୍ରତିହାରୀ ରାଜଦରବାର ମଧ୍ୟରେ ପ୍ରବେଶକରି କହିଲା – ''ପରମ ଭଟ୍ଟାରକଙ୍କୁ ପ୍ରଣାମ, ସମ୍ରାଟଙ୍କର ଜୟ ହେଉ ।''

ଚିନ୍ତାମଗ୍ନ ଅବସ୍ଥାରେ ଚଟାଣ ଉପରେ ଦୃଷ୍ଟିନିବଦ୍ଧ କରିଥିବା ସମ୍ରାଟ ଦୃଷ୍ଟି ଉତ୍ତୋଳନ କଲେ । କହିଲେ– ''କଥା କ'ଣ ପ୍ରତିହାରୀ ?''

–''ପ୍ରଭୁ ! ଆପଣଙ୍କ ଦର୍ଶନ ପାଇଁ ଆତୁର ମହାଦଣ୍ଡନାୟକ ହରିଶେଣ ଦରବାର ଦ୍ୱାରରେ ଉପସ୍ଥିତ ଅଛନ୍ତି ।''

–''ତାଙ୍କୁ ଆଦର ସତ୍କାର ସହିତ ଦରବାର ମଧ୍ୟକୁ ନିମନ୍ତ୍ରଣ କରି ଆଣ ।''

–''ଛାମୁଙ୍କ ଯାହା ଆଦେଶ...'' କହି ପ୍ରତିହାରୀ ଚାଲିଗଲା ।

କିଛି କ୍ଷଣ ପରେ ଉନ୍ନତ କପାଳର ଜଣେ ପ୍ରୌଢ଼ ପୁରୁଷ ପ୍ରତିହାରୀ ସହିତ ରାଜଦରବାର ମଧ୍ୟରେ ପ୍ରବେଶ କଲେ । ତାଙ୍କ କପାଳର ରେଖା ଓ ଗୌରକାନ୍ତି ଯୁକ୍ତ ସୁଠାମ ସୁନ୍ଦର ଦୀର୍ଘକାୟ ଶରୀର ବିଦ୍ୱତ୍ତାର ପରିଚୟ ଦେଉଥିଲା । ମହାଦଣ୍ଡ ନାୟକଙ୍କ ସ୍ୱାଗତ ସତ୍କାର ପାଇଁ ସମ୍ରାଟ ସମୁଦ୍ରଗୁପ୍ତ ରାଜଦରବାରରେ ଉପସ୍ଥିତ ସକଳ ସଜ୍ଜନମଣ୍ଡଳୀ ସହିତ ଆସନ ତ୍ୟାଗ କରି ଠିଆହେଲେ । ମହାଦଣ୍ଡନାୟକ ତାଙ୍କ ପାଇଁ ଉଦ୍ଦିଷ୍ଟ ଆସନ ଗ୍ରହଣ କଲାପରେ ସମ୍ରାଟଙ୍କ ସମେତ ସମସ୍ତେ ନିଜ ନିଜ ଆସନ ଗ୍ରହଣ କଲେ ।

ସମ୍ରାଟ ସମୁଦ୍ରଗୁପ୍ତ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ମହାଦଣ୍ଡନାୟକଙ୍କୁ ଚାହିଁରହିଥିଲେ ।

ମହାଦଣ୍ଡନାୟକଙ୍କ ମୁଖମଣ୍ଡଳରେ ଚିନ୍ତାପୂର୍ଣ୍ଣ ଚିହ୍ନ ଦେଖି ସମୁଦ୍ରଗୁପ୍ତ ଉଦ୍‌ବିଗ୍ନ ହୋଇଉଠିଲେ ।

–"କଥା କ'ଣ ମହାଦଣ୍ଡନାୟକ ? ଆଜି ମୁଁ ଜୀବନରେ ପ୍ରଥମଥର ପାଇଁ ମହାଦଣ୍ଡନାୟକଙ୍କୁ ଅସମୟରେ ରାଜଦରବାରରେ ଉପସ୍ଥିତ ହେବା ଦେଖୁଛି ?"

ହରିସେଣ କହିଲେ – "ସମ୍ରାଟ ! ଦଣ୍ଡବିଧାନ ଗୃହରୁ ମୁଁ ଅକାରଣରେ ଆସି ଏହି ରାଜଦରବାରରେ ଉପସ୍ଥିତ ହୋଇନାହିଁ । ମୋତେ ଏଠାକୁ ଆସିବାକୁ ପରିସ୍ଥିତି ବାଧ କରିଛି ।"

–"ମହାଦଣ୍ଡନାୟକ ଆଗମନର କାରଣ ସ୍ପଷ୍ଟ କରନ୍ତୁ ।"

–"ସମ୍ରାଟ ! ମୁଁ ଏବେ ଧର୍ମସଙ୍କଟରେ ପଡ଼ିଛି । ମାମଲା ଗୁରୁତର ଏବଂ ଏକାନ୍ତ ଗୋପନୀୟ ! ଆଜି ଦଣ୍ଡବିଧାନ ଗୃହରେ ନ୍ୟାୟଗତ ମାମଲାକୁ କେନ୍ଦ୍ରକରି ଏପରି ଏକ ସମସ୍ୟା ଦେଖାଦେଇଛି ଯେ ତାହାର ସମାଧାନ ଦୃଷ୍ଟିରୁ ଆପଣଙ୍କ ସମ୍ମତି ନିହାତି ଆବଶ୍ୟକ । ମୁଁ ଆପଣଙ୍କ ସହିତ ଗୋପନରେ ବିଚାର ବିମର୍ଷ କରିବାକୁ ଚାହୁଁଛି ।"

ସମ୍ରାଟ ସମୁଦ୍ରଗୁପ୍ତ ଚିନ୍ତାମଗ୍ନ ହୋଇପଡ଼ିଲେ ଏବଂ କହିଲେ – "ଏପରି ବିକଟ ସମସ୍ୟା ଯଦି କିଛି ସୃଷ୍ଟି ହୋଇଚି, ତେବେ ଆପଣ କୁମାରାମାତ୍ୟ ବିଷ୍ଣୁଦାସଙ୍କୁ ଡାକି ପାରିଥାନ୍ତେ ।"

–"ନା, ପ୍ରଭୁ ! ଏପରି ସମସ୍ୟାର ସମାଧାନ ମଗଧ ସାମ୍ରାଜ୍ୟର୍ ଭାଗ୍ୟବିଧାତା, ପରମ ଭଟ୍ଟାରକଙ୍କ ଦ୍ୱାରା ହିଁ ସମ୍ଭବ ବୋଲି ମୋର ବିବେକ ନିର୍ଦ୍ଦେଶ ଦେଉଛି ।"

–"ତେବେ, ଠିକ୍ ଅଛି । ଆପଣ ମନ୍ତ୍ରଣାକକ୍ଷକୁ ଆସନ୍ତୁ ।" ସମ୍ରାଟ ସିଂହାସନ ତ୍ୟାଗ କରି ଠିଆହେଲେ । ରାଜଦରବାରର ସଭା ଭଙ୍ଗହେଲା ।

ମନ୍ତ୍ରଣାକକ୍ଷ ।

କକ୍ଷରେ ସମ୍ରାଟ ସମୁଦ୍ରଗୁପ୍ତ, ମହାଦଣ୍ଡନାୟକ ହରିସେଣ ଏବଂ ମହାଅମାତ୍ୟ ଶିଖରସେଣ ।

ହରିସେଣ ଓ ସମୁଦ୍ରଗୁପ୍ତ ଦୁହେଁ ଚିନ୍ତାମଗ୍ନ ଅବସ୍ଥାରେ ମୁହଁ ତଳକୁ କରି ବସିଥା'ନ୍ତି । ଉଭୟେ ନୀରବ, ନିଶ୍ଚଳ ।

ଏମିତି କିଛିକ୍ଷଣ ବିତିଗଲାପରେ ସମ୍ରାଟ ନୀରବତା ଭଙ୍ଗ କଲେ – "ହଁ, କୁହନ୍ତୁ ମହାଦଣ୍ଡନାୟକ ।"

ହରିସେଣ ଆରମ୍ଭ କଲେ – "ମହାଭାଗ ! ଜ୍ୟେଷ୍ଠ କୁମାରଙ୍କ ଅତ୍ୟାଚାରରେ ପ୍ରଜାମାନେ ଆଜି ପର୍ଯ୍ୟନ୍ତ ଅତିଷ୍ଠ ହୋଇପଡ଼ିଥିଲେ ବି ରାଜଦଣ୍ଡ ଭୟରେ କେହି ମୁହଁ ଖୋଲିନଥିଲେ, କିନ୍ତୁ ଏବେ ସେ ଆମ ମିତ୍ରରାଜ୍ୟର ଅତିଥିମାନଙ୍କ ପ୍ରତି ଯେପରି ନିର୍ମମ ଅସଦାଚରଣ ଓ ଅକ୍ଷମଣୀୟ ଅପରାଧ କରିଛନ୍ତି, ଏହାଦ୍ୱାରା ପରମଭଟ୍ଟାରକଙ୍କ ବ୍ୟକ୍ତିତ୍ୱ ଉପରେ କାଳିମା ବୋଳିଛନ୍ତି, ସେତିକି ନୁହେଁ ମଗଧ ବିରୁଦ୍ଧରେ ବିଦ୍ରୋହ ପାଇଁ ପଥ ପରିଷ୍କାର କରିଦେଇଛନ୍ତି ।"

–"ଜ୍ୟେଷ୍ଠ କୁମାର ରାମଗୁପ୍ତ ପୁଣି କି ଅପରାଧ ଘଟାଇଛି ?"

–"ହଁ, ମହାଭାଗ ! ଏଥର ସେ ଯେଉଁ ଅପରାଧ ଘଟାଇଛନ୍ତି ତାହା ଜଘନ୍ୟ ଓ ଅକ୍ଷମ୍ୟ । ଯୁବରାଜ ଉଜ୍ଜୟିନୀ ଉତ୍ସବକୁ ଆସିଥିବା ଆମ ମିତ୍ରରାଜ୍ୟ ମାନଙ୍କର ନର୍ତ୍ତକୀମାନଙ୍କୁ ଧର୍ଷଣ ଓ ନଟମାନଙ୍କୁ ହତ୍ୟା କରିଛନ୍ତି । ଏହି ଅଭିଯୋଗ ଆସିଚି ଉଜ୍ଜୟିନୀରୁ । ଉଜ୍ଜୟନୀରେ ଆପଣଙ୍କ ଷଷ୍ଠୀପୂର୍ତ୍ତି ଉତ୍ସବରେ ଯୋଗଦେବାକୁ ଏହି ନଟନଟୀମାନେ ଆସିଥିଲେ । ଆପଣ, ମହାରାଣୀ ଓ କୁମାର ଚନ୍ଦ୍ରଗୁପ୍ତଙ୍କ ସହିତ ପାଟଳୀପୁତ୍ରରୁ ଫେରିଆସିଥିଲେ ସୁଦ୍ଧା ଜ୍ୟେଷ୍ଠ କୁମାର ସେତେବେଳେ ଉଜ୍ଜୟିନୀ ରାଜମହଲରେ ରହିଥିଲେ । ଆପଣଙ୍କ ପାଟଳୀପୁତ୍ର ପ୍ରତ୍ୟାବର୍ତ୍ତନ ପରେ ପରେ ଉଜ୍ଜୟିନୀ ରାଜମହଲର ଅତିଥିଶାଳାରେ ଏହି ନାରକୀୟ ଘଟଣା ଘଟିଥିବା ଓ ଘଟଣାର ନାୟକ ନିଜେ ଜ୍ୟେଷ୍ଠ କୁମାର ବୋଲି ଅଭିଯୋଗ ହୋଇଛି ।"

–"ହୁଁ... " ସମ୍ରାଟ ସମୁଦ୍ରଗୁପ୍ତ ଦୀର୍ଘଶ୍ୱାସ ଟାଣିଲେ । ଦୁଇ ଚକ୍ଷୁ ଚିନ୍ତାରେ ସଂକୁଚିତ ହୋଇଉଠିଲା । କହିଲେ – "ମହାଦଣ୍ଡନାୟକ !"

–"ଆଦେଶ କରନ୍ତୁ ସମ୍ରାଟ !"

–"ଏପରି ଅପରାଧ ଓ ଏଇ ଅପରାଧ ପାଇଁ ଉତ୍ପନ୍ନ ସମସ୍ୟାର ସମାଧାନ ପାଇଁ ଆପଣଙ୍କ ନ୍ୟାୟ ବ୍ୟବସ୍ଥା କେଉଁ ସମ୍ମତି ଦେଉଛି ?"

–"ମୃତ୍ୟୁ ଦଣ୍ଡ !"

–"ତେବେ ଆପଣ ମୋ ପାଖକୁ କାହିଁକି ଆସିଛନ୍ତି ?"

–"ସମସ୍ୟାଟା ରାଜ ପରିବାର ସହିତ ଜଡ଼ିତ, ମହାଭାଗ !"

–"କିନ୍ତୁ ଅତ୍ୟାଚାର, ଶୋଷଣ ଓ ହତ୍ୟା ପ୍ରଜାଙ୍କ ପ୍ରତି ହୋଇଚି, ପୁଣି ଆମ ମିତ୍ରରାଜ୍ୟର ଅତିଥି କଳାକାରଙ୍କ ଉପରେ ହୋଇଛି । ଏହା ତ ଘୋର ଅପରାଧ, ଅକ୍ଷମଣୀୟ ଅପରାଧ ।"

-''ଏହା ନିହାତି ସତ୍ୟ, ମହାଭାଗ !''

ସମ୍ରାଟ ସମୁଦ୍ରଗୁପ୍ତ ନିର୍ଣ୍ଣାୟକ ସ୍ୱରରେ କହିଲେ - ''ଆପଣଙ୍କ ନ୍ୟାୟ ବ୍ୟବସ୍ଥାରେ ଯାହା କରଣୀୟ, ତାହା ହିଁ ନିଷ୍ପତ୍ତି ନିଆଯାଉ । ଅପରାଧୀ ସାଧାରଣ ପ୍ରଜା ହେଉ ଅବା ରାଜପୁତ୍ର । ଏବେ ରାମଗୁପ୍ତ ରାଜପୁତ୍ର ନୁହେଁ, ଜଣେ ଜଘନ୍ୟ ଅପରାଧୀ। ଏହି ନାରୀ ନିର୍ଯ୍ୟାତନା ଓ ନଟ ହତ୍ୟା ପଛରେ ରାମଗୁପ୍ତ ସହିତ ତାର ଯେଉଁ ଚାଟୁକାର - ସ୍ତାବକ ଅନୁଚରମାନେ ଜଡ଼ିତ ଅଛନ୍ତି, ସମସ୍ତଙ୍କ ବିରୁଦ୍ଧରେ ଦଣ୍ଡବ୍ୟବସ୍ଥା କରାଯାଉ ।''

ମହାଦଣ୍ଡନାୟକ ହରିସେଣ ମନ୍ତ୍ରଣା କକ୍ଷରୁ ବିଦାୟ ନେବାକୁ ଆସନ ତ୍ୟାଗ କରି ଠିଆହେଲେ ।

ସମୁଦ୍ରଗୁପ୍ତ ପ୍ରଶ୍ନ କଲେ - ''ଏହି ସମୟରେ ଅପରାଧୀମାନେ କେଉଁଠି ଅଛନ୍ତି ?''

-''ଯୁବରାଜ ରାମଗୁପ୍ତ ଓ ତାଙ୍କ ଅନୁଗତ ସାଥୀ ମାନେ ଉଜ୍ଜୟିନୀ ଭିତରେ କେଉଁଠି ଲୁଚିରହିଛନ୍ତି ?''

-''ସେମାନଙ୍କ ସନ୍ଧାନ କରି ବିଧିବିଧାନ ଅନୁଯାୟୀ ଦଣ୍ଡ ବ୍ୟବସ୍ଥା କରାଯାଉ ।''

ମହାଦଣ୍ଡନାୟକ ସ୍ୱୀକାରାତ୍ମକ ଢ଼ଙ୍ଗରେ ମୁଣ୍ଡ ହଲାଇଲେ ।

ସମ୍ରାଟ ସମୁଦ୍ରଗୁପ୍ତଙ୍କ ଏପରି କଠୋର ନିର୍ଦ୍ଦେଶରେ କିନ୍ତୁ ମହାଅମାତ୍ୟ ଶିଖରସେଣଙ୍କ ଲଲାଟରେ ବିନ୍ଦୁ ବିନ୍ଦୁ ସ୍ୱେଦ ଝରିଗଲା । ମୁଖମଣ୍ଡଳ ମ୍ଳାନ ପଡ଼ିଗଲା ।

ସମ୍ରାଟ ସମୁଦ୍ରଗୁପ୍ତ ମହାଅମାତ୍ୟଙ୍କ ମୁଖମଣ୍ଡଳକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁରହିଥିଲେ । ସନ୍ଦିଗ୍ଧ ଦୃଷ୍ଟିରେ ତାଙ୍କୁ କିଛି କ୍ଷଣ ନିରୀକ୍ଷଣ କଲାପରେ ସମ୍ରାଟ କହିଲେ- ''ମହାଅମାତ୍ୟ ! ମୁଁ ଲକ୍ଷ୍ୟ କରୁଛି, ମୋର ନିର୍ଣ୍ଣୟରେ ଆପଣ ଅସନ୍ତୁଷ୍ଟ ବୋଧହୁଏ ।''

ମହାଅମାତ୍ୟ ଶିଖରସେଣ ସମ୍ରାଟଙ୍କର ଏପରି ପ୍ରଶ୍ନରେ ମୂକ ଓ ଅବାକ୍ ପାଲଟିଯାଇଥିଲେ । ସମ୍ରାଟଙ୍କୁ କ'ଣ ଉତ୍ତର ଦେବେ କିଛି ସ୍ଥିର କରିପାରୁନଥିଲେ । ତଥାପି ସାହସ ସଂଚୟ କରି କହିଲେ - ''ମହାଭାଗ ! ଆପଣଙ୍କ ନିର୍ଣ୍ଣୟ ଶୁଣିଲି, ଆପଣ ଜଣେ ପିତା ଭାବରେ ନୁହେଁ, ଜଣେ ପ୍ରଜାବତ୍ସଳ ଲୋକପ୍ରିୟ ସମ୍ରାଟ ଭାବରେ ଏହି ନିଷ୍ପତ୍ତି ଯଦିଓ ଶୁଣାଇଛନ୍ତି, ତଥାପି...'' ଶିଖରସେଣ ହଠାତ୍ ନୀରବ ହୋଇଗଲେ ।

ସମୁଦ୍ରଗୁପ୍ତ ପଚାରିଲେ -'' ହଁ...ହଁ.... କୁହନ୍ତୁ ମଗଧ ସାମ୍ରାଜ୍ୟର ମହାଅମାତ୍ୟ ! ହଠାତ୍ ଚୁପ୍ ହୋଇଗଲ ଯେ... ''

-"ମହାଭାଗ, କ୍ଷମା କରିବେ ! କଥା ହେଉଛି, ଜ୍ୟେଷ୍ଠ କୁମାରଙ୍କ ସଂକ୍ରାନ୍ତରେ ଆପଣ ଏତେ ଶୀଘ୍ର କୌଣସି ନିର୍ଣ୍ଣୟ କରିବା ଠିକ୍ ହୋଇନାହିଁ ।"

ସମ୍ରାଟଙ୍କ କପାଳ ଓ ଭ୍ରୂଲତା ସଂକୁଚିତ ହୋଇଗଲା -"କାହିଁକି "?

-"କାରଣ, ଏହି ସମସ୍ୟା ରାଜକୀୟ କାର୍ଯ୍ୟକଳାପ ସହିତ ଜଡ଼ିତ, କେବଳ ନୁହେଁ, ଗୁପ୍ତବଂଶର ମର୍ଯ୍ୟାଦା ସହିତ ସଂପୃକ୍ତ, ମହାଭାଗ !"

-"ମହାଅମାତ୍ୟ, ମୁଁ ବହୁତ ଭାବିଚିନ୍ତି ଏହି ନିର୍ଣ୍ଣୟ ଗ୍ରହଣ କରିଛି । ବଂଶଗତ ସମସ୍ୟା ଅପେକ୍ଷା ରାଜକୀୟ ସମସ୍ୟା ଅଧିକ ଗୁରୁତ୍ୱପୂର୍ଣ୍ଣ । ପୁନଶ୍ଚ ଆପଣଙ୍କ କାର୍ଯ୍ୟ ରାଜକୀୟ କାର୍ଯ୍ୟକୁ ସଞ୍ଚାଳନ କରିବା । ବଂଶଗତ ସମସ୍ୟାକୁ ନେଇ ରାଜକୀୟ କାର୍ଯ୍ୟରେ ହସ୍ତକ୍ଷେପ ଅନ୍ୟାୟ ଓ ଅସଂଗତ, ମହାଅମାତ୍ୟ !"

ସମ୍ରାଟଙ୍କ ଏପରି ସ୍ପଷ୍ଟ ମନ୍ତବ୍ୟରେ ମହାଅମାତ୍ୟ ଲଜ୍ଜାରେ ଝାଳ ସରସର ହୋଇଗଲେ । ପରମ ଭଟ୍ଟାରକ ସମ୍ରାଟ ସମୁଦ୍ରଗୁପ୍ତ ତାଙ୍କୁ ଏପରି କଟୁ ମନ୍ତବ୍ୟ ଯେ କହିପାରନ୍ତି, ଏହା ସେ ଭାବିପାରିନଥିଲେ । ସେ ମହାଦଣ୍ଡନାୟକ ଓ ସମ୍ରାଟ ସମୁଦ୍ରଗୁପ୍ତଙ୍କୁ ଆତଙ୍କିତ ଦୃଷ୍ଟିରେ ଚାହିଁ ରହିଥିଲେ ।

ସମ୍ରାଟ ସମୁଦ୍ରଗୁପ୍ତ ମହାଦଣ୍ଡନାୟକ ହରିସେଣଙ୍କୁ ଉଦ୍ଦେଶ୍ୟ କରି କହିଲେ- "ମହାଦଣ୍ଡନାୟକ ! ଅସହାୟ ପ୍ରଜାଙ୍କ ମଂଗଳ ପାଇଁ, ସେମାନଙ୍କୁ ନ୍ୟାୟଦେବା ଓ ଅପରାଧୀକୁ ଦଣ୍ଡଦେବା ଆପଣଙ୍କ କର୍ତ୍ତବ୍ୟ । ପୁତ୍ର ସ୍ନେହର ବନ୍ଧନରେ ମୁଁ ବନ୍ଦୀ ହୋଇ ଗୁପ୍ତବଂଶର ମର୍ଯ୍ୟାଦାକୁ କଦାପି ନଷ୍ଟ ଭ୍ରଷ୍ଟ କରିବା ଚାହେଁନାହିଁ ।"

-"ଆପଣଙ୍କ ନିଷ୍ପତ୍ତି ଶିରୋଧାର୍ଯ୍ୟ, ମହାମହିମ ସମ୍ରାଟ !" ହରିସେଣ ଭାବଗମ୍ଭୀର କଣ୍ଠରେ କହିଲାବେଳେ ମହାଅମାତ୍ୟ ଶିଖରସେଣ ତାଙ୍କୁ ତୀକ୍ଷଣ ଦୃଷ୍ଟିରେ ଚାହିଁ ରହିଥିଲେ ।

ରାଜ ଦରବାରର ମନ୍ତ୍ରଣା କକ୍ଷରେ ତିନିଜଣ ବସି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଉଥିବା ବେଳେ ବାହାରେ କୋଳାହଳ ସୃଷ୍ଟି ହୋଇଥିଲା । ସମ୍ରାଟ ସମୁଦ୍ରଗୁପ୍ତ ପ୍ରଶ୍ନ କଲେ- "ବାହାରେ କିଏ କଳିଗୋଳ କରୁଛି, ମହାଅମାତ୍ୟ ?"

ଠିକ୍ ଏହି ସମୟରେ ମନ୍ତ୍ରଣାକକ୍ଷ ବାହାରେ ଦ୍ୱାରପାଖରେ ଥାଇ ପ୍ରତିହାରୀ କହିଲା -"ମହାରାଜାଧିରାଜ ! ମଗଧ ସାମ୍ରାଜ୍ୟର ଅଧୀନ କୌଣସି ରାଜ୍ୟର ରାଜଦୂତ ଆସିଛନ୍ତି । ସେ ତତ୍କ୍ଷଣାତ୍ ଆପଣଙ୍କୁ ସାକ୍ଷାତ କରିବାକୁ ତତ୍ପର ମନେହେଉଛନ୍ତି ।"

ସମୁଦ୍ରଗୁପ୍ତ କହିଲେ – ''ଆତିଥ୍ୟ ସତ୍କାର ସହିତ ତାଙ୍କୁ ଏହି ମନ୍ତ୍ରଣାକକ୍ଷକୁ ଆମନ୍ତ୍ରଣ କରି ଅଣାଯାଉ । କିନ୍ତୁ ଦରବାର ବାହାରେ କୋଳାହଳ କାହିଁକି ହେଉଛି ?''

ପ୍ରତିହାରୀ କହିଲା –''ପ୍ରଭୁ ! ଆଗନ୍ତୁକ ରାଜଦୂତ ଉତ୍ତ୍ୟକ୍ତ ଅବସ୍ଥାରେ ଆମ ପ୍ରହରୀମାନଙ୍କୁ କିଛି ଅଶିଷ୍ଟ ଶବ୍ଦ ପ୍ରୟୋଗ କରିବାରୁ ସୈନିକମାନେ ଉତ୍ତେଜିତ ହୋଇ ପଡ଼ିଛନ୍ତି !''

–''ଠିକ୍ ଅଛି, ସେ ଆମ ମିତ୍ରରାଜ୍ୟର ରାଜଦୂତ । ଆମର ଅତିଥି । ତାଙ୍କୁ ମନ୍ତ୍ରଣାକକ୍ଷକୁ ନିମନ୍ତ୍ରଣ କରି ଆଣ ।''

ପ୍ରତିହାରୀ ଦୂତକୁ ପାଛୋଟି ଆଣିବାକୁ ମନ୍ତ୍ରଣାକକ୍ଷରୁ ଚାଲିଗଲା ।

ସମ୍ରାଟ ସମ୍ରାଟଗୁପ୍ତଙ୍କ ମୁଖମଣ୍ଡଳରେ ପୁଣି ଚିନ୍ତାର ଲକ୍ଷଣ ସ୍ପଷ୍ଟ ହୋଇଗଲା ।

କିଛି କ୍ଷଣ ମଧ୍ୟରେ ଆଗନ୍ତୁକ ରାଜଦୂତ ମନ୍ତ୍ରଣାକକ୍ଷରେ ପ୍ରବେଶ କରି ରାଜକୀୟ ଠାଣୀରେ ସମ୍ରାଟ ସମୁଦ୍ରଗୁପ୍ତଙ୍କୁ ପ୍ରଣାମ କଲା । ରାଜଦୂତ ହାତରେ ଧରିଥିବା ଏକ ଥଳି ମହାଅମାତ୍ୟ ଶିଖରସେଣଙ୍କ ହାତକୁ ବଢ଼ାଇଦେଲା ।

ମହାଅମାତ୍ୟ ଶିଖରସେଣ୍ ପଚାରିଲେ – '' ଏହା କ'ଣ ?''

ରାଜଦୂତ କହିଲା –''ଏହି ଥଳିରେ ଅଛି ମହାକାନ୍ତାରର ରାଜା ନାଗସେନଙ୍କ ପତ୍ର !''

ସମ୍ରାଟ ସମୁଦ୍ରଗୁପ୍ତ ତାଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ ପଚାରିଲେ–''ରାଜଦୂତ ! କୁହ ତୁମ ମହାକାନ୍ତାର ପ୍ରଜାକୁଳ ଆଉ ଆମ ବନ୍ଧୁ ରାଜା ନାଗସେନ କୁଶଳରେ ଅଛନ୍ତି ତ ?''

ସମ୍ରାଟ ସମୁଦ୍ରଗୁପ୍ତଙ୍କୁ ମହାଅମାତ୍ୟ ଶିଖରସେଣ ଭ୍ରୂକୁଞ୍ଚିତ କରି ଚାହିଁରହିଥିଲେ ।

ରାଜଦୂତ ସମ୍ରାଟଙ୍କୁ ଉଦ୍ଦେଶ୍ୟ କରି କହିଲା– ''ପରମ ଭଟ୍ଟାରକ, ରାଜାଧିରାଜ ମଗଧ ସମ୍ରାଟଙ୍କ ଆଶ୍ରୟରେ ଦକ୍ଷିଣାବର୍ତ୍ତ ରାଜ୍ୟ ସମୂହର ପ୍ରଜାକୁଳ ଶାନ୍ତି ଓ ସୁଖରେ ଆଜି ପର୍ଯ୍ୟନ୍ତ କାଳାତିପାତ କରି ଆସୁଥିଲେ, କିନ୍ତୁ ସମ୍ରାଟ କ୍ଷମା କରିବେ, ଏବେ ପ୍ରଜାମାନେ ଆତଙ୍କିତ । ଆପଣ ମଗଧରେ ଅଶ୍ୱମେଧ ଯଜ୍ଞର କର୍ତ୍ତା । ଦକ୍ଷିଣାବର୍ତ୍ତ ବିଜୟୀ ସମ୍ରାଟ । ଆପଣଙ୍କ ଦାକ୍ଷିଣାତ୍ୟ ଅଭିଯାନ ବିନା ରକ୍ତପାତରେ ସଂଘଟିତ ହୋଇଥିଲା । କିନ୍ତୁ ଏବେ ସମ୍ରାଟ....''

–''**ହଁ**, କୁହ, କୁହ ରାଜଦୂତ । ଏବେ କ'ଣ ଘଟିଯାଇଛି ଯେ ତୁମେ ତୁମ ବକ୍ତବ୍ୟ ଅସଂପୂର୍ଣ୍ଣ ରଖିଲ ଯେ...''

-''ମଗଧ ସମ୍ରାଟଙ୍କ ସମ୍ମୁଖରେ ମୁଁ ଏକ ଆଶ୍ରିତ ରାଜ୍ୟର ଛାର ରାଜଦୂତ ମାତ୍ର । ମୁଁ ବା ଅଧିକ କ'ଣ କହିବି ପରମ କାରୁଣିକ ମଗଧ ସମ୍ରାଟ ପରମ ଭଟ୍ଟାରକ ପ୍ରଭୁ ! ମୁଁ ଯେଉଁ ଚିଠାଉ ମହାକାନ୍ତାର ରାଜଦରବାରରୁ ଆଣିଛି, ତାହା ପଢ଼ିଲା ପରେ ଆପଣ ସବୁ ବୁଝିଯିବେ ସମ୍ରାଟ ।''

ସମ୍ରାଟ ସମୁଦ୍ରଗୁପ୍ତ କେଉଁ ଏକ ଗୋପନ ଯନ୍ତ୍ରଣାର ଆଶଙ୍କାରେ ମନେ ମନେ ଆତଙ୍କିତ ହୋଇପଡ଼ିଲେ ।

ମହାଅମାତ୍ୟ ଶିଖରସେଣ ମହାକାନ୍ତାରରୁ ଆସିଥିବା ରାଜା ନାଗସେନଙ୍କ ଚିଟାଉ ପଢ଼ିବା ଆରମ୍ଭ କଲେ ।

...''ଶ୍ରୀ ଶ୍ରୀ ଶ୍ରୀ ଏକଶହ ଆଠ ଶ୍ରୀ ମଗଧ ସମ୍ରାଟ ରାଜାଧିରାଜ ଆର୍ଯ୍ୟ ସମୁଦ୍ରଗୁପ୍ତଙ୍କୁ ମହାକାନ୍ତାରର ରାଜା ନାଗସେନଙ୍କ ବିନମ୍ର ପ୍ରଣତି ସହ ଏହା ଜଣାଇବାକୁ ପରିସ୍ଥିତି ବାଧ କରୁଛି ଯେ, ଆମେ ମହାକାନ୍ତାରର ରାଜଦରବାର ଓ ପ୍ରଜାକୁଳ ମଗଧ ଯୁବରାଜ ଓ ତାଙ୍କ ଅନୁଚରମାନଙ୍କ ଅତ୍ୟାଚାରରେ କ୍ଷୁବ୍ଧ । ଆପଣଙ୍କ ଷଷ୍ଠୀପୂର୍ତ୍ତି ଉତ୍ସବରେ ଯୋଗଦେବାପାଇଁ ଆମ ରାଜ୍ୟ ସମେତ ଆମ ମିତ୍ରରାଜ୍ୟ ଗୁଡ଼ିକରୁ ଯେଉଁ ରାଜନର୍ତ୍ତକୀ ଓ ନଟମାନେ ଉଜ୍ଜୟିନୀ ଯାଇଥିଲେ, ସେମାନଙ୍କୁ ମଗଧର ଭାବି ସମ୍ରାଟ ରାମଗୁପ୍ତ ଓ ତାଙ୍କ ବ୍ୟଭିଚାରୀ ଲମ୍ପଟ ଅନୁଚରମାନେ ହତ୍ୟା କରିଛନ୍ତି । ଏହା ଆମ ନାଗବଂଶୀମାନଙ୍କ ପ୍ରତି କେବଳ ଅବିଚାର ହୋଇଛି, ସେତିକି ନୁହେଁ, ମଗଧ ବିରୁଦ୍ଧରେ ବିଦ୍ରୋହ ଓ ମଗଧ ସହିତ ମିତ୍ରତା ଛିନ୍ନ ପାଇଁ ପରୋକ୍ଷରେ ସତର୍କବାଣୀ ।''

''.... ମହାନୁଭବ ! ଆମେ ଏଣିକି ମଗଧ ସାମ୍ରାଜ୍ୟର ବଶ୍ୟତା ସ୍ୱୀକାର କରିବାକୁ ଅସମର୍ଥ । ଅନୁଗ୍ରହ କରି ଆପଣ ଆମ ରାଜ୍ୟ ଆମକୁ ଫେରାଇ ଦିଅନ୍ତୁ, ଆମେ ଏଣିକୁ ସ୍ୱାଧୀନ ରାଜ୍ୟ ଭାବେ ରହିବୁ । ଆପଣ ଶାସନ କୁଶଳୀ ସମ୍ରାଟ । ଆପଣ ସହୃଦୟତାର ସହ ଆମ ନିବେଦନ ଗ୍ରହଣ କରନ୍ତୁ । ଶ୍ରଦ୍ଧାରେ, ସ୍ନେହାନୁବନ୍ଧନରେ ଆମ ରାଜ୍ୟ ଯଦି ଫେରିନପାଉ, ତେବେ ଯୁଦ୍ଧ ପାଇଁ ରକ୍ତଦାନ କରିବାକୁ ମଧ୍ୟ ଆମେ ପ୍ରସ୍ତୁତ ଅଛୁ ।''

ଭବଦୀୟ
ନାଗସେନ

ମଗଧ ସାମ୍ରାଜ୍ୟ ଅଧୀନ ମହାକାନ୍ତାରର ରାଜା ନାଗସେନଙ୍କ ପତ୍ରର ସାରାଂଶ ଶୁଣିଲାପରେ ସମ୍ରାଟ ସମୁଦ୍ରଗୁପ୍ତଙ୍କ ମୁଖଭଙ୍ଗୀର କୋମଳତା ଓ ଦୀପ୍ତୀ କ୍ଷଣିକ ମଧ୍ୟରେ

ହଜିଗଲା । ମୁଖମଣ୍ଡଳ ହଠାତ୍ ଲୌହଧାତୁ ପରି କଠିନ ହୋଇଗଲା । କ୍ରୋଧରେ ଚକ୍ଷୁ ଓ ମୁଖମଣ୍ଡଳ ଲାଲ୍ ହୋଇଗଲା । ଓଠ ଥରି ଉଠିଲା, ନିଜ ଅନ୍ତର ଭିତରୁ ଫୁଟି ଆସୁଥିବା ଆକ୍ରୋଶକୁ କୌଣସିମତେ ନିୟନ୍ତ୍ରଣ କରି ସମ୍ରାଟ ସମୁଦ୍ରଗୁପ୍ତ ରାଜଦୂତ ଉଦ୍ଦେଶ୍ୟରେ କହିଲେ- ''ତେବେ ତୁମକୁ ମହାକାନ୍ତାରର ଶାସକ ନାଗସେନ ପଠାଇଛନ୍ତି ?''

-''ହଁ, ରାଜାଧିରାଜ, ମଗଧ ସମ୍ରାଟ !''

-''ହୁଁ...''

-''ହଁ, ସମ୍ରାଟ ! ଉଜ୍ଜୟିନୀର ମହାକାଳ ମନ୍ଦିରରେ ନଟ ନଟୀମାନଙ୍କ ପ୍ରତି ମଗଧ ଯୁବରାଜ ଓ ତାଙ୍କ ଅନୁଚରମାନେ ଯେପରି ପାଶବିକ ଅତ୍ୟାଚାର କଲେ, ତାହା ମଗଧ ଇତିହାସରେ କେବେ ଘଟିନଥିଲା । ନାଗବଂଶୀୟ କ୍ଷତ୍ରୀୟମାନଙ୍କୁ ଏହି ଘଟଣା ଘୋର ଅପମାନ ଆଣିଦେଇଛି । ଏହି ଘଟଣାକୁ ନେଇ ନାଗବଂଶୀୟ କ୍ଷତ୍ରୀୟ ରାଜାମାନଙ୍କ ଏକ ସଂଗଠନ ଏବେ ମଗଧ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଛି । ଏହି ସଂଗଠନର ସଂଚାଳକ ନିଜେ ରାଜା ନାଗସେନ ।''

-''ନାଗସେନଙ୍କ ସହିତ ଆଉ କେଉଁ ଶୃଗାଳ ରାଜାମାନେ ଏହି ସଂଗଠନରେ ଏକାଠି ହୋଇଛନ୍ତି ?''

ଆଗନ୍ତୁକ ରାଜଦୂତ ନିଜ ନେତ୍ର ଯୁଗଳରେ ଦୃଢ଼ତା ଆଣି, ସମ୍ରାଟ ସମୁଦ୍ରଗୁପ୍ତଙ୍କ ଆଖି ସହିତ ଆଖି ମିଳାଇ କହିଲା-''ପରମ ଭଟ୍ଟାରକା ! ମଗଧ ସମ୍ରାଟ ! ମୋତେ କ୍ଷମା କରିବେ । ଆପଣ ଯେଉଁ ରାଜାମାନଙ୍କୁ ଶୃଗାଳ କହୁଛନ୍ତି, ପ୍ରକୃତରେ ସେମାନେ ସିଂହ । ରାଜା ନାଗସେନଙ୍କ ଛତ୍ରଛାୟା ତଳେ ଯେଉଁ ରାଜାମାନେ ଏକତ୍ର ହୋଇଛନ୍ତି ସେମାନଙ୍କ ମଧ୍ୟରେ ଅଛନ୍ତି ଅଚ୍ୟୁତ, ଗଣପତି ନାଗ, ତାମିଲ, ନାଗଦତ୍ତ, ଚନ୍ଦ୍ରବର୍ମନ, ନନ୍ଦିନ ଆଉ ବଳବର୍ମନ !''

ସମ୍ରାଟ ସମୁଦ୍ରଗୁପ୍ତଙ୍କ ଓଠରେ ଘୃଣାର କୁଟିଳ ହସ ଫୁଟି ଉଠିଲା, କହିଲେ - ''ସିଂହ ନୁହେଁ ସେମାନେ ଗୋଟିଏ ଗୋଟିଏ ନାଗ, ନାଗ ସର୍ପ । ମଗଧ ସାମ୍ରାଜ୍ୟରେ ଆଶ୍ରିତ ହୋଇ ଏହି ନାଗମାନେ କ୍ଷୀର ପିଇ ଏତେ ବଳଶାଳୀ ହୋଇପଡ଼ିଛନ୍ତି ଯେ, ଦଂଶନପାଇଁ ଆତୁର ତ ? କିନ୍ତୁ ସାପମାନଙ୍କ ପାଳନକର୍ତ୍ତାଙ୍କୁ ସର୍ପଦମନ ମନ୍ତ୍ର ବି ଭଲ ଭାବେ ଜଣା । ଯାଅ ରାଜଦୂତ, ନାଗସେନକୁ ଜଣାଇଦେବ ଖୁବ୍ ଶୀଘ୍ର ନାଗବଂଶୀମାନଙ୍କ ବିଷଦାନ୍ତ ବାହାର କରିବା ବ୍ୟବସ୍ଥା କରାଯିବ ।''

ରାଜଦୂତ ପ୍ରଣାମ ଜଣାଇ ବିଦାୟ ନେଲା ।

ସମୁଦ୍ରଗୁପ୍ତ ଶିଖରସେଣଙ୍କୁ ଉଦ୍ଦେଶ୍ୟ କରି କହିଲେ –''ଅମାତ୍ୟ !''

–''ଆଦେଶ କରନ୍ତୁ, ସମ୍ରାଟ ।''

–''କୁମାର ଚନ୍ଦ୍ରଗୁପ୍ତଙ୍କ ନେତୃତ୍ୱରେ ଏକ ବିଶାଳ ସେନାବାହିନୀ ମହାକାନ୍ତାର ଉଦ୍ଦେଶ୍ୟରେ ପଠାଇବା ପ୍ରସ୍ତୁତି ଆରମ୍ଭ ହେଉ ।'' ପୁଣି ବିଷ୍ଣୁଦାସଙ୍କୁ ମନ୍ତ୍ରଣା କକ୍ଷକୁ ଡାକି ଆଣି କହିଲେ –'' ଏବଂ କୁମାରାଦିତ୍ୟ ମଧ୍ୟ ଚନ୍ଦ୍ରଗୁପ୍ତଙ୍କ ସହିତ ଏହି ଯୁଦ୍ଧଯାତ୍ରାରେ ଯିବେ ।''

ବିଷ୍ଣୁ ଦାସ ମଥାନତ କରି କହିଲେ – ''ପରମ ଭଟ୍ଟାରକଙ୍କ ଆଦେଶ ତୁରନ୍ତ କାର୍ଯ୍ୟକାରୀ ହେବ ।''

–''ଆଉ ତୁମେ ମଧ୍ୟ କୁମାର ଚନ୍ଦ୍ରଗୁପ୍ତ ଏବଂ କୁମାରାଦିତ୍ୟଙ୍କ ଏହି ଯୁଦ୍ଧ ଯାତ୍ରାବେଳେ ସାଙ୍ଗରେ ରହିବ ।''

–''ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ, ସମ୍ରାଟ । ମଗଧ ସାମ୍ରାଜ୍ୟ ବିରୁଦ୍ଧରେ ବିଦ୍ରୋହ କରିଥିବା ଏହି ନାଗବଂଶୀମାନଙ୍କୁ ନିପାତ କରାଯିବ, ସମ୍ରାଟ ।''

ମହାଅମାତ୍ୟ ଶିଖରସେଣ ଯୋଡ଼ହସ୍ତରେ ବିନମ୍ରତାର ସହିତ କହିଲେ –''ଦେବ, ଅପରାଧ ପାଇଁ କ୍ଷମା ମିଳିଲେ, ଗୋଟିଏ ପ୍ରାର୍ଥନା କରିବି ।''

–''କୁହ, ଅମାତ୍ୟ କ'ଣ କହିବା ଚାହାନ୍ତି ।''

–''ସମ୍ରାଟ, ମୋର ପ୍ରସ୍ତାବ ହେଉଛି ଏହି ଯୁଦ୍ଧଯାତ୍ରାରେ ଯୁବରାଜ ରାମଗୁପ୍ତଙ୍କୁ ମଧ୍ୟ ପଠାଯିବା ଉଚିତହେବ । ମୋର ବିଶ୍ୱାସ ଅଛି, ସେ ଏହି ଯୁଦ୍ଧଯାତ୍ରାରେ ମହାନାୟକ ପଦର ମର୍ଯ୍ୟାଦା ଠିକ୍ ଭାବେ ତୁଲାଇବେ ।''

ସମ୍ରାଟ ସମୁଦ୍ରଗୁପ୍ତ ହାସ୍ୟାସ୍ପଦ ଢ଼ଙ୍ଗରେ କହିଲେ– '' ମହାଅମାତ୍ୟ ! ଆପଣ କ'ଣ ଭାବୁଛନ୍ତି ଯୁଦ୍ଧଯାତ୍ରା ଗୋଟେ ପିଲାଖେଳ ? ଆଉ ଏଇ ଖେଳରେ ଯାହାକୁ ଇଚ୍ଛା ନାୟକ କରିଦେବ ? ରୁଧିରାକ୍ତ ରଣଭୂମିରେ ଶାଣିତ ତରବାରୀ ସହିତ ତରବାରୀର ବିକଟାଳ ଶବ୍ଦ ଓ ଦୃଶ୍ୟରେ ମହାପରାକ୍ରମଶାଳୀ ଯୋଦ୍ଧାମାନେ ରଣାଙ୍ଗନ ଛାଡ଼ି ପ୍ରାଣ ବିକଳରେ ଛତ୍ରଭଙ୍ଗ ଦେଉଥିବାବେଳେ ତୁମ ଯୁବରାଜ ରାମଗୁପ୍ତ ମଗଧର ଏହି ଯୁଦ୍ଧଯାତ୍ରାରେ ଯିବେ । ପୁଣି ମହାନାୟକ ଭାବରେ ? ନା, ନା, କଦାପି ଏହି ତ୍ରୁଟି କରି ମୁଁ ମଗଧ ସେନାବାହିନୀକୁ ଅପମାନିତ କରି ପାରିବିନାହିଁ !''

ଅମାତ୍ୟ ଶିଖରସେଣ ନମ୍ରତାପୂର୍ବକ ସମ୍ରାଟଙ୍କ ଉପରେ ଚାପ ପ୍ରୟୋଗ କରି

କହିଲେ–'' କିନ୍ତୁ ସମ୍ରାଟ ! ଥରେ ମାତ୍ର ପରୀକ୍ଷାକରି ଦେଖିଲେ କ୍ଷତି କ'ଣ ? ମୁଁ ଆପଣଙ୍କ ପାଖରେ ଯୁବରାଜ ରାମଗୁପ୍ତଙ୍କ ଯୋଗ୍ୟତାକୁ ପରିଚିତ କରିବା ଚାହୁଁଛି ! ଏହାଛଡ଼ା ରଣଭୂମିରେ ଯଦି କୌଣସି ବିକଟ ପରିସ୍ଥିତି ହୁଏ, ତେବେ ତାହାକୁ ମୁକାବିଲା କରିବାପାଇଁ କୁମାର ଚନ୍ଦ୍ରଗୁପ୍ତ ଓ ଆମର ରଣକୌଶଳ ବିଶେଷଜ୍ଞ ବିଷ୍ଣୁଦାସ ଓ କୁମାରାଦିତ୍ୟ ତ ଅଛନ୍ତି ।''

ଠିକ୍ ଏତିକିବେଳେ ମନ୍ତ୍ରଣାକକ୍ଷରେ ପ୍ରବେଶ କଲେ ମହାରାଣୀ ଦତ୍ତାଦେବୀ । ସେ ମହାଅମାତ୍ୟ ଶିଖରସେଣଙ୍କ ପ୍ରସ୍ତାବକୁ ସମର୍ଥନ କରି କହିଲେ –''ଯୁବରାଜ ରାମଗୁପ୍ତଙ୍କୁ ଆପଣ ତୁଚ୍ଛ ତାଚ୍ଛଲ୍ୟ ମନେକରିବା ଅପେକ୍ଷା ତାଙ୍କୁ ରାଜକାର୍ଯ୍ୟରେ ଅଧିକ ଜଡ଼ିତ କଲେ, ଆତ୍ମବିଶ୍ୱାସ ବଢ଼ିବ ଏବଂ ଦାୟିତ୍ୱହୀନତା ହ୍ରାସ ପାଇବ ସମ୍ରାଟ !''

ମହାରାଣୀ ଦତ୍ତାଦେବୀ ଓ ମହାଅମାତ୍ୟ ଶିଖରସେଣଙ୍କ ଚାପ ଆଗରେ ସମୁଦ୍ରଗୁପ୍ତ ବିଚଳିତ ହୋଇଉଠିଲେ ।

ସମ୍ରାଟ ସମୁଦ୍ରଗୁପ୍ତ ଶାନ୍ତ ମୁଦ୍ରାରେ କିଛିକ୍ଷଣ ଚିନ୍ତାଗ୍ରସ୍ତ ହେଲାପରେ କହିଲେ – ''କିନ୍ତୁ....କିନ୍ତୁ, ଏହା କିପରି ସମ୍ଭବ ? ଯୁବରାଜ ଏବେ ଏକ ଅପରାଧୀ ଭାବେ ଅଭିଯୁକ୍ତ । ଅଭିଯୁକ୍ତକୁ ଦଣ୍ଡଦେବାର ନିୟମ ଥିବାବେଳେ ତା'କୁ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଯୁଦ୍ଧଯାତ୍ରାର ନେତୃତ୍ୱ ଦିଆଯିବ ? କି ହାସ୍ୟାସ୍ପଦ ପ୍ରସ୍ତାବ ।''

ମହାରାଣୀ ଦତ୍ତାଦେବୀ ହସ୍ତକ୍ଷେପ କଲେ – ''ସମ୍ରାଟ ! ଯୁବରାଜ ରାମଗୁପ୍ତ ଯଦି ଦୋଷୀ ତେବେ ତାଙ୍କୁ ପରେ ଦଣ୍ଡବିଧାନ କରାଯାଇପାରେ । ରାଜ୍ୟରକ୍ଷାଠାରୁ ବଳି ଆଉ କୌଣସି କାର୍ଯ୍ୟ ରାଜପୁରୁଷ ପାଇଁ ଅଧିକ ଗୁରୁତ୍ୱ ରଖେନାହିଁ । ଯେକୌଣସି ସମସ୍ୟାର ସମାଧାନ ରାଜ୍ୟ ରକ୍ଷାପରେ କରାଯାଇପାରେ, ସମ୍ରାଟ ।''

ମହାରାଣୀଙ୍କ ଏହି ଯୁକ୍ତିରେ ମହାଅମାତ୍ୟ ଶିଖରସେଣ ଅଧିକ ଉତ୍ସାହିତ ହୋଇ କହିଲେ – ''ସମ୍ରାଟ ! ଯୁବରାଜ ରାମଗୁପ୍ତଙ୍କୁ ଏହି ଯୁଦ୍ଧଯାତ୍ରାରେ ମହାନାୟକ ପଦ ଦେଇ ତାଙ୍କୁ ଅଧିକ ଦାୟିତ୍ୱବାନ କରିବାକୁ ପଡ଼ିବ ।''

ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦୃଷ୍ଟି ମହାଦଣ୍ଡନାୟକ ହରିସେଣଙ୍କ ଉପରେ ନିବଦ୍ଧ ହେଲା । ସମୁଦ୍ରଗୁପ୍ତ କହିଲେ – ''ମହାଦଣ୍ଡନାୟକ ! ମହାରଣୀ ଓ ମହାଅମାତ୍ୟ ଯୁବରାଜ ରାମଗୁପ୍ତଙ୍କ ପାଇଁ ଯେପରି ଯୁକ୍ତି ବାଢୁଛନ୍ତି, ସେଥିର ଆପଣଙ୍କ ମତ କ'ଣ ?''

ମହାଦଣ୍ଡନାୟକ ହରିସେଣ କିଛି କ୍ଷଣ ଚିନ୍ତା କଲାପରେ କହିଲେ – ''ମହାରାଣୀ ଓ ମହାଅମାତ୍ୟଙ୍କ ବିଚାର ଗ୍ରହଣୀୟ କିନ୍ତୁ ଯୁବରାଜ ରାମଗୁପ୍ତ ଏବେ କେଉଁଠି ?''

ମହାଅମାତ୍ୟ ଶିଖରସେଣ ସ୍ମିତହାସ୍ୟ ଟୋକି କହିଲେ – ''ଯୁବରାଜ ରାମଗୁପ୍ତଙ୍କୁ ଖୋଜି ବାହାର କରିବା କଠିନ କାର୍ଯ୍ୟନୁହେଁ । ଏସବୁ ଦାୟିତ୍ୱ ମୋ ଉପରେ ଛାଡ଼ି ଦିଆଯାଉ ! କିନ୍ତୁ ଆପଣ ନିଜ ମତ ପ୍ରକଟ କରନ୍ତୁ, ମହାଦଣ୍ଡନାୟକ ।

–''ମହାଅମାତ୍ୟ ଯାହା ଉଚିତ ମନେ କରୁଛନ୍ତି, ତାହା କରିପାରିନ୍ତି ।'' ଦୀର୍ଘଶ୍ୱାସ ଟାଣିଲେ ମଗଧ ସାମ୍ରାଜ୍ୟର ମହାଦଣ୍ଡନାୟକ ହରିସେଣ ।

ନାଗବଂଶୀ ରାଜାମାନଙ୍କର ମଗଧ ବିରୁଦ୍ଧରେ ବିଦ୍ରୋହ ଦମନ ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଗଲା ।

ଏହି ଯୁଦ୍ଧ ଅଭିଯାନ ପାଟଳୀପୁତ୍ରରୁ ନୁହେଁ, ଉଜ୍ଜୟିନୀରୁ ଆରମ୍ଭ କରିବା ପାଇଁ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଥିଲା ନିର୍ଦ୍ଦେଶ ।

ପାଞ୍ଚହଜାର ହାତୀ, ଦଶହଜାର ଅଶ୍ୱାରୋହୀ ଓ ପଚିଶ ହଜାର ପଦାତିକ ସେନାବାହିନୀ ଦ୍ୱାରା ସୁସଜ୍ଜିତ ସେନା ଉଜ୍ଜୟିନୀରୁ ଦକ୍ଷିଣାବର୍ତ୍ତ ରାଜ୍ୟ ଆଡ଼କୁ ଅଗ୍ରସର ହେବାକୁ ପ୍ରସ୍ତୁତ ହେଲେ ।

କୁମାର ଚନ୍ଦ୍ରଗୁପ୍ତ ତାଙ୍କ ପ୍ରିୟ ନୀଳ ଅଶ୍ୱ ଉପରେ ଆରୂଢ଼ ହେଲେ । ତାଙ୍କ ଡାହାଣପଟେ ଶ୍ୱେତ ଅଶ୍ୱ ଉପରେ ଆରୂଢ଼ ହେଲେ ବିଷ୍ଣୁଦାସ, କୁମାରାଦିତ୍ୟ ଏବଂ ସାମନ୍ତ ଇନ୍ଦ୍ରଦେବ ।

ଧୀରେ ଧୀରେ ମାଗଧୀସେନାବାହିନୀର ଯୁଦ୍ଧଯାତ୍ରା ସମୟ ଉପସ୍ଥିତ ହେଲା । ମଗଧ ବିରୁଦ୍ଧରେ ବିଦ୍ରୋହ କରିଥିବା ଶତ୍ରୁଦମନ ପାଇଁ କୁମାର ଚନ୍ଦ୍ରଗୁପ୍ତ ରଣକୌଶଳ ମନେ ମନେ ପ୍ରସ୍ତୁତ କରୁଥିଲେ ।

ଯୁଦ୍ଧଯାତ୍ରା ପାଇଁ ସମସ୍ତେ ପ୍ରସ୍ତୁତ ହୋଇ ସାରିଥିବା ବେଳେ ଏହି ଅଭିଯାନର ମହାନାୟକ ଯୁବରାଜ ରାମଗୁପ୍ତ ଗଲେ କୁଆଡ଼େ ?

କୁମାର ଚନ୍ଦ୍ରଗୁପ୍ତ ମନେ ମନେ ଗୁଣୁ ଗୁଣୁ ହେଲେ– ''ଠିକଣା ନାହିଁ, ମହାନାୟକ ଯୁବରାଜ ଏବେ କେଉଁଠି ? ଯୁଦ୍ଧଯାତ୍ରାର ମାହେନ୍ଦ୍ରବେଳା ଅତିକ୍ରମ କରିବାକୁ ବସିଲାଣି ଅଥଚ ଏପର୍ଯ୍ୟନ୍ତ ତାଙ୍କର ଦେଖାଦର୍ଶନ ନାହିଁ ।''

କୁମାରାଦିତ୍ୟ ବ୍ୟଙ୍ଗଭରା କଣ୍ଠରେ କହିଲେ – ''କୁମାର ହୁଏତ ଏବେ ଆମ

ଯୁଦ୍ଧଯାତ୍ରାର ମହାନାୟକ ମହାଅମାତ୍ୟ ଶିଖରସେଣଙ୍କ ସହିତ ଯୁଦ୍ଧ ସଂକ୍ରାନ୍ତରେ ମନ୍ତ୍ରଣା କରୁଥାଇପାରନ୍ତି ! ସମସ୍ୟା ଯୁଦ୍ଧକୁ କେନ୍ଦ୍ରକରି, ତେଣୁ କିଛି ସମୟ ଲାଗିବ ହିଁ ଲାଗିବ !''

କୁମାରାଦିତ୍ୟଙ୍କ ଏପରି ବ୍ୟଙ୍ଗପୂର୍ଣ୍ଣ ବକ୍ତବ୍ୟ ଶୁଣି ଇନ୍ଦ୍ରଦେବ ହସିଲେ ଆଉ କହିଲେ - ''କଥା କ'ଣ କି, ଯେତେହେଲେ ସୁରା ଓ ସୁନ୍ଦରୀଙ୍କ ପାଇଁ ଅସ୍ଥିର ହୋଇ ଥରୁଥିବା ଯୁବରାଜଙ୍କ ହାତ ଏବେ ସମର ଭୂମିରେ ତରବାରୀ ଉଠାଇବାକୁ ପଡ଼ିବ । ଶତ୍ରୁପକ୍ଷର ବ୍ୟୂହ ଭାଙ୍ଗିବା କଥା ମହାଅମାତ୍ୟଙ୍କ ପାଖରୁ ଏବେ ନଜାଣିଲେ ବିଦ୍ରୋହୀ ନାଗବଂଶୀମାନଙ୍କ ବ୍ୟୂହ ଭିତରକୁ ପଶିବେ କେମିତି ଆମ ମହାନାୟକ ? ଆମ ମହାନାୟକ ପରା ବିଦ୍ରୋହୀ ଶତ୍ରୁ ସେନାଙ୍କ ସହିତ ଏକାକୀ ଯୁଦ୍ଧ କରିବେ ଆଉ ଆମେ ତ ଯୁଦ୍ଧଯାତ୍ରାର ସାଧାରଣ ଆଜ୍ଞାଧୀନ ସୈନିକ ମାତ୍ର ।''

କୁମାରାଦିତ୍ୟ ଓ ଇନ୍ଦ୍ରଦେବଙ୍କ ଏପରି ହାସ୍ୟଭରା ମନ୍ତବ୍ୟ ଶୁଣି ଚନ୍ଦ୍ରଗୁପ୍ତ ମଧ ହସିଲେ ।

ବିଷ୍ଣୁଦାସ ଅଟ୍ଟହାସ କରି ହସିଉଠିଲେ । ତାଙ୍କର କୁମାର ଚନ୍ଦ୍ରଗୁପ୍ତଙ୍କ ପ୍ରତି ଯେତିକି ଶ୍ରଦ୍ଧା ଓ ସମ୍ମାନ ଥିଲା ତା'ର ବିପରୀତ ଘୃଣାଭାବ ଥିଲା ଯୁବରାଜ ରାମଗୁପ୍ତଙ୍କ ପ୍ରତି ।

ଯୁଦ୍ଧଯାତ୍ରା ପାଇଁ ଏହି ଚାରିଜଣ ଯୋଦ୍ଧା ଆତୁର ହୋଇ ରହୁଥିବାବେଳେ ତେଣେ ରାମଗୁପ୍ତ.........

ମହାଅମାତ୍ୟ ଶିଖରସେଣଙ୍କ ମୁହଁକୁ ଆତଙ୍କିତ ଦୃଷ୍ଟିରେ ଚାହିଁ ଯୁବରାଜ ରାମଗୁପ୍ତ କହିଲେ - ''ଆପଣ ଇଏ କ'ଣ କଲେ ଅମାତ୍ୟ । ମୁଁ ଆପଣଙ୍କ କୂଟନୀତିକୁ ମୋଟେ ବୁଝିପାରୁନି ! ଆପଣ ମତେ ମୋର ପିତା ସମ୍ରାଟ ସମୁଦ୍ରଗୁପ୍ତଙ୍କ ଅପେକ୍ଷା ଅଧିକ ଭଲପାଆନ୍ତି ଅଥଚ ମୁଁ କିଇଁ ଥାଉ ଥାଉ ମରଣଯନ୍ତା ଭିତରକୁ ଠେଲିଦେବାକୁ ଏପରି ପ୍ରୟାସ କଲେ କାହିଁକି ? ମହାଦଣ୍ଡନାୟକ ହରିସେଣଙ୍କ ମୃତ୍ୟୁଦଣ୍ଡରୁ ପଳାତକ ଭାବେ କୌଣସିମତେ ବର୍ତ୍ତିଯିବା ପାଇଁ ଉପାୟ ଥାଉ ଥାଉ, ଆପଣ ମତେ ସମର ଭୂମିକୁ ସେନାମହାନାୟକର ଶୀରସ୍ତ୍ରାଣ ପିନ୍ଧାଇ ପଠାଇ ଦେଇଛନ୍ତି କାହିଁକି ?''

ମହାଅମାତ୍ୟ ଯେମିତି ପିତୃସୁଲଭ ମମତାରେ ଯୁବରାଜ ରାମଗୁପ୍ତଙ୍କ ମସ୍ତକରେ ହସ୍ତ ସଂଚାଳନକରି କହିଲେ- ''ମଗଧ ସାମ୍ରାଜ୍ୟର ଭାବି ସମ୍ରାଟ ଆପଣ ରାମଗୁପ୍ତ ! ସମ୍ରାଟ ସମୁଦ୍ରଗୁପ୍ତ ଆପଣଙ୍କ ଆଚରଣରେ କ୍ଷୁବ୍ଧ ହୋଇପଡ଼ିଥିଲେ ସୁଦ୍ଧା ଆପଣଙ୍କ

ମାତା ଦତ୍ତାଦେବୀଙ୍କର ଆପଣଙ୍କ ପ୍ରତି ଆଶୀର୍ବାଦ ରହିଛି ! କୁମାର ! ଆପଣ ନିରାଶ ହେଉଛନ୍ତି କାହିଁକି ? ଆଶାର ପଣତକାନି ଆପଣ କଦାପି ତ୍ୟାଗ କରିବା ଉଚିତ ନୁହେଁ । ଏହି ପୃଥିବୀ ଆଶା ଓ ଅଭିଳାଷ ଏବଂ ଆସ୍ଥା ଓ ବିଶ୍ୱାସର ଭିତ୍ତିଭୂମି ଉପରେ ଠିଆହୋଇଛି । ମୁଁ ଯାହା କିଛି କରିଛି, ବହୁତ ଭାବିଚିନ୍ତି କରିଛି । ମୋର କୂଟନୈତିକ ଗୋଟିଚାଳନା କେବେହେଲେ ବ୍ୟର୍ଥ ହୋଇନାହିଁ, ଯୁବରାଜ ! ସମ୍ରାଟଙ୍କ ଅନିଚ୍ଛାସତ୍ତ୍ୱେ ମୁଁ ଓ ମହାରାଣୀ ତାଙ୍କ ଉପରେ ଚାପ ପ୍ରୟୋଗ କରି ଆପଣଙ୍କ ନିମନ୍ତେ ମହାନାୟକ ପଦବୀ ହାସଲ କରିଛୁ ।''

-''ସମର ଭୂମିରେ ମୋତେ ବଳିଦେବାକୁ ?'' ରାମଗୁପ୍ତ ଆତଙ୍କିତ ସ୍ୱରରେ ପଚାରିଲେ ।

-''ନା, ଯୁବରାଜ ! ଏହି ଯୁଦ୍ଧରେ ମଗଧର ଯେଉଁ ବିଜୟ ହେବ, ତାହାର ସକଳ ଶ୍ରେୟ ଆପଣଙ୍କୁ ହିଁ ପ୍ରାପ୍ତ ହେବ ।''

ଆତଙ୍କିତ ରାମଗୁପ୍ତ ଉତ୍ସାହିତ କଣ୍ଠରେ ପଚାରିଲେ- '' ସତେ ? ଏହି ଯୁଦ୍ଧରେ ଆମର ହିଁ ବିଜୟ ହେବ ବୋଲି ଆପଣ ଭାବୁଛନ୍ତି, ଅମାତ୍ୟ ?''

-''ବିଜୟ କାହିଁକି ହେବନାହିଁ ବୋଲି ଆପଣ ଭାବୁଛନ୍ତି ?'' ମହାଅମାତ୍ୟ ସ୍ମିତହାସ୍ୟ ଟୋଳି କହିଲେ ।

- ''କେମିତି ?'' ରାମଗୁପ୍ତ ଜିଜ୍ଞାସୁ ଦୃଷ୍ଟିଟୋଳି ପଚାରିଲେ ।

ମହାଅମାତ୍ୟ ଶିଖରସେଣ କହିଲେ - ''ମଗଧର ବିଦ୍ରୋହୀ ରାଜାମାନଙ୍କୁ ଦମନ ପାଇଁ ଏହି ଯେଉଁ ଯୁଦ୍ଧଯାତ୍ରା ଆରମ୍ଭ ହୋଇଛି, ସେଥିରେ ଅଛନ୍ତି ଚନ୍ଦ୍ରଗୁପ୍ତଙ୍କ ପରି ଯୋଦ୍ଧା, ବିଷ୍ଣୁଦାସ କୁମାରଦିତ୍ୟଙ୍କ ପରି ବିଦ୍ୱାନ୍ ଆଉ ଇନ୍ଦ୍ରଦେବଙ୍କ ପରି ରଣକୌଶଳ କର୍ମଠ ବ୍ୟକ୍ତି । ଏମାନଙ୍କ ପାଇଁ ମଗଧର ବିଜୟ ସୁନିଶ୍ଚିତ ଆଉ ଆପଣ ଏହି ଯୁଦ୍ଧଯାତ୍ରାରେ ମଗଧର ଯୁବରାଜ ଭାବେ ମହାନାୟକ ପଦବୀର ଅଧିକାରୀ !''

ଯୁବରାଜ ରାମଗୁପ୍ତ କୁଟିଳ ହସ ହସି କହିଲେ -''ତେବେ ତ ଏହି ବିଜୟଶ୍ରୀ ଅର୍ଜନ କରିବାକୁ ହିଁ ପଡ଼ିବ, ନା କ'ଣ ମହାଅମାତ୍ୟ ! ଯୁଦ୍ଧ ଯାହାଦ୍ୱାରା ଜୟ ହେଉନା କାହିଁକି, ତାହାର ଶ୍ରେୟ ମୋତେ ହିଁ ମିଳିବ କାରଣ ମୁଁ ଏହି ଯୁଦ୍ଧଯାତ୍ରାର ମହାନାୟକ । କିନ୍ତୁ ଗୋଟିଏ କଥା ଉପରେ ମୋର ସନ୍ଦେହ ରହିଛି ।''

ମହାଅମାତ୍ୟ ରାମଗୁପ୍ତଙ୍କୁ ପ୍ରଶ୍ନାତ୍ମକ ଦୃଷ୍ଟିରେ ଚାହିଁ ପଚାରିଲେ - ''ତାହା ପୁଣି କ'ଣ ?''

ରାମଗୁପ୍ତ ନିର୍ଲଜ ହସ ଟୋଳି କହିଲେ – ''ଅମାତ୍ୟ ! ମୋତେ ତରବାରୀ ସୁଦ୍ଧା ହାତରେ ଧରିବା ଆସେନାହିଁ, ମୁଁ ରଣଭୂମିରେ ଯୁଦ୍ଧ କରିବି କେମିତି ? ଏହାଛଡ଼ା ରକ୍ତପାତର ଦୃଶ୍ୟଦେଖିବା ମୋ ପକ୍ଷରେ ଅସହ୍ୟ । ବିଶେଷ କରି ଯେଉଁଠି ମୃତ୍ୟୁଭୟ ରହିଛି, ସେଠାରେ ଉପସ୍ଥିତ ରହିବା ମଧ ମୋ ପକ୍ଷେ ଅସହ୍ୟ ।''

ମହାଅମାତ୍ୟଙ୍କ ଓଠରେ ଏକ କୁଟିଳ ହାସ୍ୟରେଖା କିଛିକ୍ଷଣ ପାଇଁ ଉକୁଟି ଉଠିଲାପରେ ତାହା ତତ୍‌କ୍ଷଣାତ ଲୁପ୍ତ ହୋଇଗଲା । ଶିଖରସେଣ କହିଲେ – ''କୁମାର ! ରଣଭୂମିରେ ସମସ୍ତଙ୍କୁ ତରବାରୀ ଚଳାଇବାକୁ ପଡ଼େନାହିଁ ! ରଣାଙ୍ଗନକୁ ଯାଇଥିବା କିଛି ଚତୁର ବ୍ୟକ୍ତି ଆପଣାର ପ୍ରାଣରକ୍ଷା ପାଇଁ ଉପାୟ ମଧ ପୂର୍ବରୁ ସ୍ଥିର କରିଥା'ନ୍ତି । ଯିଏ ସମ୍ମୁଖ ଯୁଦ୍ଧରେ ଶତ୍ରୁର ସମ୍ମୁଖୀନ ହୋଇଥାଏ, ତା'କୁ ନିଜର ପ୍ରାଣ ହରାଇବାକୁ ପଡ଼ିଥାଏ । କିନ୍ତୁ ଚତୁର ବ୍ୟକ୍ତି ମୃତ୍ୟୁମୁଖରୁ ସକୁଶଳ ଫେରି ଆସିଥାଏ ।''

–''ହାଃ ହାଃ ହାଃ ହାଃ...'' ଯୁବରାଜ ରାମଗୁପ୍ତ ଅଟ୍ଟହାସ କରି କହିଲେ – ''ବୁଝିଗଲି, ବୁଝିଗଲି ଗୁରୁଦେବ । ଆପଣ ଯଥାର୍ଥରେ ମୋର ହିତାକାଂକ୍ଷୀ ଓ ଗୁରୁ । ମରିବ ସିଏ ଯିଏ ରଣାଙ୍ଗନର ସମ୍ମୁଖ ଭାଗରେ ରହିବ, କିନ୍ତୁ ସେନାବାହିନୀର ସମର ସଜ୍ଜାରେ ଯିଏ ପଛରେ ରହିବ ତା'ର ମୃତ୍ୟୁ ନାହିଁ ! ମୁଁ ଆପଣଙ୍କ ଯୋଜନା ଅନୁସାରେ ପଛରେ ହିଁ ରହିବି । କୁମାର ଚନ୍ଦ୍ରଗୁପ୍ତ ମଗଧସେନାର ନେତୃତ୍ୱ ନେବାପାଇଁ ରଣଭୂମିର ସମ୍ମୁଖ ଭାଗରେ ରହିବେ ଆଉ ମହାନାୟକ ଭାବେ ପଛରେ ରହିବି ମୁଁ । ସେ ମୋତେ କଦାପି ସମ୍ମୁଖ ଭାଗକୁ ପଠାଇବା ପାଇଁ ଯେତେ କୌଶଳ କଲେ ସୁଦ୍ଧା ବ୍ୟର୍ଥ ହେବେ । ମୋର ଆଦେଶ ହିଁ ସମସ୍ତଙ୍କ ପାଇଁ ଶିରୋଧାର୍ଯ୍ୟ ହେବ, କାରଣ ମୁଁ ପରା ଏହି ଯୁଦ୍ଧଯାତ୍ରାର ମହାନାୟକ । ହାଃ ହାଃ ହାଃ.... ।''

ମହାଅମାତ୍ୟ ସନ୍ତୁଷ୍ଟ ହେଲେ ଆଉ କହିଲେ– 'କୁମାର ! ଏଥିପାଇଁ ଆବଶ୍ୟକତା ହିଁ ନାହିଁ । ଚନ୍ଦ୍ରଗୁପ୍ତ ଯୋଦ୍ଧା ଓ ଦୁର୍ବାର... ଦୁଃସାହସୀ । ଦୁର୍ବାର ଦୁଃସାହସୀମାନେ କେବଳ ଯୁଦ୍ଧର ରଣାଙ୍ଗନରେ ଅଗ୍ରଗାମୀ ଥାଆନ୍ତି ସେତିକି ନୁହେଁ, ଜୀବନର ପ୍ରାୟ ସବୁ କ୍ଷେତ୍ରରେ... ପ୍ରେମରେ ହେଉ ବା ପ୍ରତିଯୋଗିତାରେ, ସବୁବେଳେ ଅଗ୍ରଣୀ ହୋଇଥା'ନ୍ତି । ଏଥିପାଇଁ ସେମାନଙ୍କୁ କେହି ପ୍ରଭାବିତ କରୁ ବା ପ୍ରତାରଣା !''

ରାମଗୁପ୍ତ ତରିକି ଉଠିଲେ – ''ତେବେ ମୁଁ କ'ଣ ଭୀରୁ ନା କାପୁରୁଷ ?'' ପୁଣି ନିଜକୁ ସଂଯତ କରି ରାମଗୁପ୍ତ ମନକୁ ମନ ଗୁଣୁ ଗୁଣୁ ହେଲେ –''ହୋଇପାରେ, ମୁଁ ଭୀରୁ ଆଉ କାପୁରୁଷ । କିନ୍ତୁ ଏବେ ଏସବୁ ଭାବି ଲାଭ କ'ଣ ? ଏହି ଯୁଦ୍ଧଯାତ୍ରାରେ

ମୋର ଶୌର୍ଯ୍ୟ ପ୍ରଦର୍ଶନ କରିବା ଅପେକ୍ଷା ବୁଦ୍ଧିବୃତ୍ତି ପ୍ରୟୋଗ କରିବାକୁ ପଡ଼ିବ । ଜାଣିଶୁଣି ମୃତ୍ୟୁର ଅତଳଗର୍ଭକୁ ଲମ୍ଫ ଦେଉଥିବା ମଣିଷଠାରୁ ଅଧିକ ମୂର୍ଖ କିଏ ଥାଇପାରେ ? ସଂକଟବେଳରେ ଆତ୍ମରକ୍ଷା ଓ ପ୍ରାଣରକ୍ଷା କରିବା ନିହାତି ଆବଶ୍ୟକ । ସବୁ କିଛି ସ୍ୱାହା କରିଦେଇ ଆତ୍ମରକ୍ଷା କରିବା କୁଶଳତାପୂର୍ଣ୍ଣ କାର୍ଯ୍ୟ । ମଗଧ ସାମ୍ରାଜ୍ୟର ରାଜଧାନୀ ପାଟଳିପୁତ୍ର ବା ଉଜ୍ଜୟିନୀର ପ୍ରଜାକୁଳ ବା ରାଜପରିଷଦବର୍ଗ ମୋତେ ଭୀରୁ କାପୁରୁଷ କହିଲେ ସୁଦ୍ଧା ଆପଣଙ୍କ ପରି ବିଦ୍ୱାନ ଅନୁଭବୀ ରାଜନୀତି – କୂଟନୀତି କୁଶଳ ମହାଅମାତ୍ୟଙ୍କର ଯେବେ ମୋ ପ୍ରତି ଆଶୀର୍ବାଦ ରହିଛି, ତେବେ ମୋଠାରୁ ଯୋଗ୍ୟତାସଂପନ୍ନ ଯୁବରାଜ କିଏ ଥାଇପାରେ ? ଆପଣଙ୍କ ବିଚାର କ'ଣ ମହାଅମାତ୍ୟ !''

ମହାଅମାତ୍ୟ ଶିଖରସେଣ ଅନ୍ୟମନସ୍କ ହୋଇପଡ଼ିଥିଲେ । ରାମଗୁପ୍ତଙ୍କ ବାଚାଳତାପୂର୍ଣ୍ଣ କଥାପ୍ରତି କର୍ଣ୍ଣପାତ ନକରି କହିଲେ – ''ମୁଁ ଜାଣେ, ଏଣିକି ଆଉ ଆପଣଙ୍କୁ ବିଶେଷ କିଛି ବୁଝାଇବାର ଆବଶ୍ୟକତା ନାହିଁ ।''

ରାମଗୁପ୍ତ କହିଲେ – ''ମୁଁ ଏପର୍ଯ୍ୟନ୍ତ ଆପଣଙ୍କ ଚାତୁର୍ଯ୍ୟପୂର୍ଣ୍ଣ କୂଟନୈତିକ କୌଶଳ ବୁଝିପାରିନଥିଲି । ମୁଁ ଗୋଟେ ନିର୍ବୋଧ ରାଜପୁତ୍ର ହୋଇ ରହିଯାଇଥିଲି । ଏଥର ମୁଁ ସବୁକିଛି ବୁଝିପାରୁଛି । ଯୁଦ୍ଧଭୂମିରେ ସମଗ୍ର ଗୁପ୍ତସେନାବାହିନୀ ମୂଳା–ଗାଜର ପରି ଖଣ୍ଡ ଖଣ୍ଡ ହୋଇ ଲୋଟିପଡ଼ନ୍ତୁ ପଛେ ମୁଁ କିନ୍ତୁ ଯେକୌଣସି ମତେ ଜୀବନ ବଞ୍ଚାଇ ଫେରି ଆସିବି । ନିଶ୍ଚୟ ଫେରିବି । କିନ୍ତୁ ମହାଅମାତ୍ୟ ... ।

–''କିନ୍ତୁ ପୁଣି କ'ଣ ଯୁବରାଜ ?'' ସନ୍ଦିଗ୍ଧ ଦୃଷ୍ଟିରେ ମହାଅମାତ୍ୟ ରାମଗୁପ୍ତଙ୍କୁ ଚାହିଁ ପଚାରିଲେ ।

–''ରାଜଧାନୀ ପାଟଳୀପୁତ୍ରର ବିଭିନ୍ନ ମହଲରେ ଯେଉଁ ମୃଦୁଗୁଞ୍ଜରଣ ହେଉଛି ତାହା ଯେପରି ସତ୍ୟରେ ପରିଣତ ନହୁଏ, ସେଥିପ୍ରତି ଦୃଷ୍ଟି ରଖିବା ଆପଣଙ୍କର ଦାୟିତ୍ୱ ।''

ମହାଅମାତ୍ୟ ରାମଗୁପ୍ତଙ୍କ ବକ୍ତବ୍ୟ ବୁଝିପାରିଲେ ନାହିଁ । ସେ ପୁଣି କହିଲେ – ''କ'ଣ ସବୁ ଗୁଞ୍ଜରଣ ହେଉଛି, ସେ କଥା ସ୍ପଷ୍ଟ କରି କୁହନ୍ତୁ ଯୁବରାଜ !''

ରାମଗୁପ୍ତ କହିଲେ – ''ସେଇ କଥା... ଚନ୍ଦ୍ରଗୁପ୍ତଙ୍କ ରାଜ୍ୟାଭିଷେକ ନେଇ ପ୍ରଜାମାନଙ୍କ ମଧ୍ୟରେ ଚୁପୁର ଚାପର !''

–''ଓଃ ଏଇ କଥା ?'' ମହାଅମାତ୍ୟ ହସିଲେ ଆଉ କହିଲେ–'' ଆପଣ ଏଥିପ୍ରତି ନିଶ୍ଚିନ୍ତ ରୁହନ୍ତୁ, କୁମାର ! ଆପଣ ଯେତେହେଲେ ମଗଧସମ୍ରାଟ ସମୁଦ୍ରଗୁପ୍ତଙ୍କ

ଜ୍ୟେଷ୍ଠପୁତ୍ର । ଏହାଛଡ଼ା ନୈତିକତା ଦୃଷ୍ଟିରୁ ଆପଣ ହିଁ ମଗଧ ସାମ୍ରାଜ୍ୟର ରାଜସିଂହାସନର ଉତ୍ତରାଧିକାରୀ । ମୁଁ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଉପରେ ଚାପ ପ୍ରୟୋଗ କରିବି । ମହାରାଣୀ ଦତ୍ତାଦେବୀଙ୍କର ଆପଣଙ୍କ ପ୍ରତି ମଧ୍ୟ ଆଶୀର୍ବାଦ ରହିଛି । ଆମ ଦୁହିଁଙ୍କର ବିଶ୍ୱାସ - ମହାରାଣୀ ଓ ମୋର ପରାମର୍ଶକୁ ସମ୍ରାଟ ମୋଟେ ଅବଜ୍ଞା କରିବେ ନାହିଁ ।''

ରାମଗୁପ୍ତ ଶଙ୍କା ପ୍ରକଟ କଲେ- ''ଆଉ ସମ୍ରାଟ ଯଦି ଆପଣ ଦୁହିଁଙ୍କ ପରାମର୍ଶକୁ ପ୍ରତ୍ୟାଖ୍ୟାନ କରିଦିଅନ୍ତି ?''

-''ସେତେବେଳେ ଯାହା କରିବା କଥା ଆମେ ଦୁହେଁ କରିବୁ । ମୋ ଉପରେ ଆପଣ ଭରସା ରଖନ୍ତୁ କୁମାର ।''

ରାମଗୁପ୍ତ କହିଲେ - ''ଆପଣଙ୍କ ବିଚାର ବୁଦ୍ଧି ଓ ବିଚକ୍ଷଣ କୁଟନୈତିକ ଖେଳ ପ୍ରତି ମୋର ବିଶ୍ୱାସ ଓ ଭରସା ଅଛି, ମହାଅମାତ୍ୟ !''

ମହାଅମାତ୍ୟ କହିଲେ- ''କୁମାର ! ମୋର କୂଟନୈତିକ ଖେଳ ଓ ଗୋଟିଚାଳନା ଉପରେ ମୁଁ ଏବେ କୌଣସି ସୂଚନା ଦେବାକୁ ଚାହେଁନାହିଁ । ଆମେ ଏବେ ଘଡ଼ିସନ୍ଧି ମୁହୂର୍ତ୍ତ ମଧ୍ୟରେ ଗତି କରୁଛେ । ତେବେ କୌଣସି ଦୁଶ୍ଚିନ୍ତା ବା ଆଶଙ୍କା କରିବା ଉଚିତ ନୁହେଁ । ବରଂ ଯେକୌଣସି ଯୁଦ୍ଧ ବା ପ୍ରତିଯୋଗିତା ବେଳେ କପଟ, ଛଳବଳ ସବୁକିଛି ପ୍ରୟୋଗ କରିବାକୁ ପଡ଼ିଥାଏ । ଯାବତୀୟ ପ୍ରତିବନ୍ଧକ, ପ୍ରତିକୂଳ ପରସ୍ଥିତିକୁ ମୁକାବିଲା କରି ରାଜସିଂହାସନ ଦଖଲ କରିବା କୌଣସି ଯୁଦ୍ଧଠାରୁ କମ୍ ନୁହେଁ । ସ୍ୱାର୍ଥସିଦ୍ଧି ସାଧନପାଇଁ ଉଚିତ ଅନୁଚିତ, ନୀତି ଅନୀତି କାର୍ଯ୍ୟ ନୀତିଶାସ୍ତ୍ର ଅନୁସାରେ କରଣୀୟ ଓ ପୁଣ୍ୟକାର୍ଯ୍ୟ ମଧ୍ୟ କୁମାର !''

-''ମୋତେ ଆଶୀର୍ବାଦ କରନ୍ତୁ ମହାଅମାତ୍ୟ ! ଏଥର ମୁଁ ଯୁଦ୍ଧ ଅଭିଯାନରେ ବାହାରିଲି ! ତେଣେ ମୋତେ ସୈନ୍ୟବାହିନୀ ଅପେକ୍ଷା କରିଥିବେ ।''

-''ହଁ, ବତ୍ସ ! ବିଜୟୀ ଭବଃ ।''

ଜୀବନରେ ପ୍ରଥମଥର ପାଇଁ ଯୁବରାଜ ରାମଗୁପ୍ତ ଯୁଦ୍ଧର ବେଶଭୂଷାରେ ସଜ୍ଜିତ ହୋଇ ସେନାବାହିନୀ ପାଖରେ ପହଞ୍ଚି - ମହାନାୟକଙ୍କ ପାଇଁ ସଜ୍ଜିତ ହାତୀ ଉପରକୁ ଚଢ଼ିଲେ ।

ଯୁଦ୍ଧଯାତ୍ରାର ରଣତୂରୀ ଗଗନଭେଦି ସ୍ୱରରେ ବାଜି ଉଠିଲା । ମଗଧ ସେନା ଯୁଦ୍ଧଯାତ୍ରା ଆରମ୍ଭ କଲେ ।

ମଗଧ ସାମ୍ରାଜ୍ୟର ରାଜଧାନୀ ପାଟଳୀପୁତ୍ରର ରାଜମହଲ ।

ବାର୍ଦ୍ଧକ୍ୟଜନିତ ବ୍ୟାଧିରେ ଗୁରୁତର ଭାବେ ଅସୁସ୍ଥ ସମ୍ରାଟ ସମୁଦ୍ରଗୁପ୍ତ ପଲଙ୍କ ଉପରେ ଅର୍ଦ୍ଧଶାୟିତ ଅବସ୍ଥାରେ ଲୋଟି ପଡ଼ିଛନ୍ତି । ପାର୍ଶ୍ୱରେ  ମହରାଣୀ ଦତ୍ତାଦେବୀ । ବିଶାଳ ମଗଧ ସାମ୍ରାଜ୍ୟର ସଂସ୍ଥାପକ, ଦିଗ୍‌ବିଜୟୀ ସମ୍ରାଟ ସମୁଦ୍ରଗୁପ୍ତଙ୍କୁ କୌଣସି ଏକ ଗୁରୁତର ଚିନ୍ତା ଘାରିଥାଏ । ସମୁଦ୍ରଗୁପ୍ତ ଭବନର ଛାତକୁ ଅପଲକ ନେତ୍ରରେ ଚାହିଁ ରହିଥା'ନ୍ତି ସିନା ତାଙ୍କ ମାନସପକ୍ଷୀ କିନ୍ତୁ ରଣକ୍ଷେତ୍ରର ଆକାଶରେ ଉଡ଼ି ବୁଲୁଥାଏ । ଦିନକୁ ଦିନ ଚିନ୍ତାଗ୍ରସ୍ତ ରହିବା ଫଳରେ ସେ କ୍ରମଶଃ ରୁଗ୍‌ଣ ଆଉ ମାନସିକ ସ୍ତରରେ କେମିତି ଏକ ଶୂନ୍ୟତା...ଅସହାୟତା ଅନୁଭବ କରୁଥା'ନ୍ତି । ସମୁଦ୍ରଗୁପ୍ତଙ୍କ ପରି ଏକ ବୀରଯୋଦ୍ଧାଙ୍କ ଶାରୀରିକ ଶକ୍ତି ଏବେ ସିନା ଶିଥିଳ ହୋଇପଡ଼ିଛି କିନ୍ତୁ ମାନସିକ ଚିନ୍ତାରୁ ମୁକ୍ତି କାହିଁ ?

ଏକଦା ସେ ଦିଗ୍‌ବିଜୟରେ ବାହାରିଥିବା ବେଳେ ଦୁର୍ବାର.. ଦୁର୍ବିନିତ ଅଶ୍ୱର ରଜ୍ଜୁକୁ ଯେଉଁ ହାତ ନିୟନ୍ତ୍ରଣ କରୁଥିଲା ସେହି ହସ୍ତଯୁଗଳ ଏବେ ସାମାନ୍ୟ ତରବାରୀଟିଏ ସୁଦ୍ଧା ଉତ୍ତୋଳନ କରିବାକୁ ଅସମର୍ଥ ହୋଇପଡ଼ିଛି । ଅର୍ଦ୍ଧଶାୟିତ ଅବସ୍ଥାରେ ସମୁଦ୍ରଗୁପ୍ତଙ୍କ ଚକ୍ଷୁଯୁଗଳ ମୁଦ୍ରିତ । ସେଇ ମୁଦ୍ରିତ ଆଖିପତା ଭିତରେ କେବଳ ଆଲୁଅ ଆଉ ଅନ୍ଧାରର ଲୁଚକାଳି ଖେଳ । ସେ ଯେତେ କ୍ଷମତାସଂପନ୍ନ, ମଗଧ ସାମ୍ରାଜ୍ୟର ଭାଗ୍ୟବିଧାତା ବୋଲି ତାଙ୍କ ଗୁଣମୁଗ୍ଧ ପ୍ରଜାକୁଳ ଭାବୁଥିଲେ ସୁଦ୍ଧା ସେ ରକ୍ତମାଂସର ଜଣେ ସାଧାରଣ ମଣିଷ ତ !

ନିଜ ଅତୀତ ଭିତରେ ନିଜେ ବୁଡ଼ି ଯାଇଥିଲେ ସମୁଦ୍ରଗୁପ୍ତ । ତାଙ୍କ ପିତା ଚନ୍ଦ୍ରଗୁପ୍ତ ମଗଧ ସାମ୍ରାଜ୍ୟର ପ୍ରତିଷ୍ଠାତା ସିନା କିନ୍ତୁ ତାଙ୍କୁ ସାମ୍ରାଜ୍ୟ ବିସ୍ତାର କରିବାପାଇଁ ବହୁ ସଂଗ୍ରାମ କରିବାକୁ ପଡ଼ିଛି । ତାଙ୍କର ବହୁ ଜ୍ୟେଷ୍ଠ ଭ୍ରାତା ମଗଧ ସିଂହାସନ ଦଖଲ କରିବାପାଇଁ ପରସ୍ପର ମଧ୍ୟରେ ପ୍ରତିଯୋଗିତା, ଷଡ଼ଯନ୍ତ୍ର ରଚନା କରିଥିଲେ ସୁଦ୍ଧା ସର୍ବକନିଷ୍ଠ ରାଜକୁମାର ଭାବେ ସମୁଦ୍ରଗୁପ୍ତ ହିଁ ପିତା ଚନ୍ଦ୍ରଗୁପ୍ତଙ୍କ ଆସ୍ଥାଭାଜନ ହୋଇ ବିନା ରକ୍ତପାତରେ, ଛଳ ବଳ କୌଶଳରେ ମଗଧ ସିଂହାସନ ଦଖଲ କରିଥିଲେ । ତାଙ୍କୁ ଏଥିପାଇଁ ବହୁ କୂଟନୀତି, ରାଜନୈତିକ କୌଶଳ, ପ୍ରୟୋଗ କରିବାକୁ ପଡ଼ିଛି !

ମଗଧର ସିଂହାସନ ।

ସମ୍ରାଟ ବିମ୍ବିସାରଙ୍କ ଠାରୁ ଆରମ୍ଭ କରି ତାଙ୍କ ପୁତ୍ର ସମ୍ରାଟ ଅଜାତଶତ୍ରୁ, ଅଜାତଶତ୍ରୁଙ୍କ ପୁତ୍ର ଉଦୟନ ଦେଇ ମହାପଦ୍ମନନ୍ଦ, ଅଶୋକ ଏବଂ ପୁଷ୍ୟମିତ୍ରଶୁଙ୍ଗଙ୍କ ପର୍ଯ୍ୟନ୍ତ ଏହି ମଗଧ ସିଂହାସନ ପାଇଁ କେତେ ରକ୍ତପାତ ନଘଟିଛି ? ଯେଉଁ ସିଂହାସନ ପାଇଁ ରକ୍ତପାତ ଓ ଧର୍ମ ଦ୍ୱାହିତାର ଯେତେ ସବୁ ଖଣ୍ଡ, ପ୍ରବଞ୍ଚନା ଓ ଧୂର୍ତ୍ତତା ମଧ୍ୟରେ ପର୍ଦ୍ଦାଚ୍ଛନ୍ନ କରାଯାଇଥାଏ, ସମୟକ୍ରମେ ସେହି ସିଂହାସନ ସୁଦ୍ଧା କ୍ଷମତାଧାରୀର ହାତଛଡ଼ା ହୋଇଯାଇଥାଏ । କାଳେ କାଳେ କ୍ଷମତା ରାଜନୀତି ସୁବିଧାବାଦୀଙ୍କ ଏକ ମୁଖା ମାତ୍ର କିନ୍ତୁ ତାହାର ଅସଲ ଧର୍ମ ହେଉଚି ଆତ୍ମରକ୍ଷା ଓ ଆତ୍ମସ୍ୱାର୍ଥ ସାଧନ ।

ସମ୍ରାଟ ସମୁଦ୍ରଗୁପ୍ତ ମନେ ମନେ ଚିହିଁକି ଉଠିଲେ– "ମୋ ପରେ ଏତେ ବଡ଼ ମଗଧ ସାମ୍ରାଜ୍ୟର ଭାଗ୍ୟବିଧାତା କିଏ ? କିଏ ହେବ ମଗଧ ସାମ୍ରାଜ୍ୟର ପ୍ରଜାବତ୍ସଳ ସମ୍ରାଟ ?"

'ରାମଗୁପ୍ତ ନା ଚନ୍ଦ୍ରଗୁପ୍ତ ?'

ରାମଗୁପ୍ତ ? ଛି... ଧିକ୍. ତା'ର ରାଜୋଚିତ ପୁରୁଷ ପଣିଆକୁ !

ସମ୍ରାଟ ଛାତି ଉପରେ ଦୁଇ ହାତ ଥାପି ପଲଙ୍କ ଉପରେ ଲୋଟିପଡ଼ିଥିଲେ । ଏଇ କେତେଦିନ ହେଲା କି ଦିବସ କି ରାତ୍ରି... ଆଖିକୁ ନିଦ ଆସୁନାହିଁ । ଚିନ୍ତା, କେବଳ ଚିନ୍ତା ଦୁଶ୍ଚିନ୍ତା । ଆଖିକୁ ଛାଇ ନିଦ ସୁଦ୍ଧା ଆସୁନାହିଁ । ରୁଗ୍ଣ, ଜୀର୍ଣ୍ଣଶୀର୍ଣ୍ଣ ଶରୀରଟିକୁ ପଲଙ୍କ ଉପରେ ପକେଇ ରଖିବା ଯାହା ସାର ହେଉଚି । ଖାଦ୍ୟ–ପାନୀୟ ପ୍ରତି ରୁଚି ଆସୁନାହିଁ ।

କେବଳ ଗୋଟିଏ ଚିନ୍ତା, ମଗଧ ସାମ୍ରାଜ୍ୟର ଭବିଷ୍ୟତ । ଯିଏ ନିଜକୁ ମଗଧ ସାମ୍ରାଜ୍ୟର ଉତ୍ତରାଧିକାରୀ ଭାବେ ଗଢ଼ିତୋଳିବା କଥା ସିଏ ଗୋଟେ ଅନାଚାରୀ ଭ୍ରଷ୍ଟାଚାରୀ, ନାରୀ ମାଂସଲୋଭୀ ମଦ୍ୟପ ଲମ୍ପଟ ।

ଗୋଟେ ଜାରଜ !

ରାମଗୁପ୍ତ ପାଖରେ ଗୋଟେ ଜାରଜର ସକଳ ଲକ୍ଷଣ ଫୁଟି ବାହାରୁଛି । ଇଏ ହେବ ମୋର ଜ୍ୟେଷ୍ଠପୁତ୍ର ଭାବେ ମଗଧର ସମ୍ରାଟ ?

ସମ୍ରାଟ ସମୁଦ୍ରଗୁପ୍ତ କ୍ରୋଧରେ ଥରି ଉଠୁଥିଲେ । ତାଙ୍କ ପିତୃତ୍ୱ ତାଙ୍କୁ ଯେପରି ଧିକ୍କାର କରୁଥିଲା । ତାଙ୍କ ଓଠରୁ ଅଚାନକ ବାହାରି ଆସିଲା – "ଗୋଟେ ଜାରଜ କଦାପି ମୋର ପୁତ୍ର ହୋଇନପାରେ ।"

ପଲଙ୍କର ଗୋଟିଏ କୋଣରେ ବସି ସମ୍ରାଟ ସମୁଦ୍ରଗୁପ୍ତଙ୍କ ମସ୍ତକ ସଂଚାଳନ କରୁଥିବା ମହାରାଣୀ ଦତ୍ତାଦେବୀ ହଠାତ୍ ସମୁଦ୍ରଗୁପ୍ତଙ୍କ ଏପରି ଉଚ୍ଚାରଣରେ ଚମକିପଡ଼ିଲେ । କହିଲେ – ''ରାଜାଧିରାଜ ! ଆପଣ କାହାକୁ ଜାରଜ ବୋଲି ଭର୍ତ୍ସନା କରୁଛନ୍ତି ? ଆପଣଙ୍କର ଉଚ୍ଚରକ୍ତଚାପ ରହିଛି ବୋଲି ରାଜବୈଦ୍ୟ ବାରମ୍ବାର ସତର୍କ କରାଇଛନ୍ତି । ରକ୍ତଚାପ ଯୋଗୁଁ ଯେକୌଣସି ମୁହୂର୍ତ୍ତରେ ଅଘଟଣ ଘଟିବ ବୋଲି କହିଛନ୍ତି । ଆପଣଙ୍କୁ ନିଦ୍ରା ପାଇଁ ଏତେ ଔଷଧ ପଥି ଦିଆଗଲାଣି, ଅଥଚ ଆପଣ ଅଯଥା ଚିନ୍ତାରେ ନିଜେ ଭାରାକ୍ରାନ୍ତ ହେଉଛନ୍ତି ଆଉ ମୋତେ ଅସହାୟ କରିଦେଇଛନ୍ତି ।''

ସମୁଦ୍ରଗୁପ୍ତ ଶଯ୍ୟାତ୍ୟାଗ କରି ପଲଙ୍କ ଉପରେ ବସିପଡ଼ିଲେ !

କ୍ରୋଧ ଜର୍ଜରିତ କଣ୍ଠରେ ପଚାରିଲେ–''ଗୋଟିଏ ସନ୍ତାନର ପ୍ରକୃତ ପିତା କିଏ ତା'ର ଜନ୍ମଦାତ୍ରୀ ମାତା ହିଁ ଜାଣେ, ମଗଧର ମହାରାଣୀ ! ପ୍ରକୃତରେ ମୁଁ ତୁମ ପୁତ୍ର ରାମଗୁପ୍ତର ପିତା ନା ତା'ର ଗୋପନରେ ଆଉ କେହି ପିତା ରହିଚି ?''

ମହରାଣୀ ଦତ୍ତାଦେବୀ ଚମକି ପଡ଼ିଲେ–'' ଏ କ'ଣ କହୁଛନ୍ତି ମଗଧ ସମ୍ରାଟ ? ଆପଣ ଶାନ୍ତ ହୁଅନ୍ତୁ, ଚିନ୍ତା ଦୁଶ୍ଚିନ୍ତା ମଧ୍ୟରେ ଆପଣ ବିଭ୍ରାନ୍ତିକର ସ୍ୱପ୍ନମାନ ଦେଖୁଛନ୍ତି ।''

–''ମହାରାଣୀ ସତ କରି କୁହ ରାମଗୁପ୍ତର ଅସଲ ପିତା କିଏ ? ରାମଗୁପ୍ତ ଗୋଟେ ଜାରଜ ସନ୍ତାନ ନୁହେଁ ତ ?''

–ଯୁବରାଜ ରାମଗୁପ୍ତ ଯଦି ଗୋଟେ ଜାରଜ ସନ୍ତାନ ତେବେ ମୁଁ କ'ଣ ଗୋଟେ ବହୁବଲ୍ଲଭା ନାରୀ ?''

–''ସେ କଥା ମୁଁ ଜାଣେନା । ତାହା ତୁମକୁ ହିଁ ସ୍ପଷ୍ଟ କରିବାକୁ ପଡ଼ିବ । ରାମଗୁପ୍ତ ପାଖରେ ମୁଁ ଗୋଟେ ଜାରଜ ସନ୍ତାନର ଲକ୍ଷଣ ଏଇ କେତେବର୍ଷ ହେଲା ଲକ୍ଷ୍ୟ କରୁଛି । ପିତୃବଂଶହୀନ ପୁରୁଷମାନେ ସାଧାରଣତଃ ଲମ୍ପଟ, ନୃଶଂସ, ବ୍ୟଭିଚାରୀ ଓ ଭ୍ରଷ୍ଟାଚାରୀ ଚରିତ୍ରହୀନ ହୋଇଥା'ନ୍ତି । ସେମାନେ ସାଧାରଣତଃ ଅତି ବିଚକ୍ଷଣ ଓ ବୁଦ୍ଧିମାନ ମଧ୍ୟ ହୋଇଥା'ନ୍ତି, କିନ୍ତୁ ଭୀରୁ ଓ କାପୁରୁଷ । ସେମାନଙ୍କର ବୁଦ୍ଧିବୃତ୍ତି ବିଚକ୍ଷଣତା ଅନେକ ସମୟରେ କାହିଁକି ପ୍ରାୟ ସବୁବେଳେ ନକରାତ୍ମକ ଓ ଧ୍ୱଂସମୁଖୀ ହୋଇଥାଏ । ସେମାନେ ନିଜେ ଗୋଟେ ଅନାଚାରର ପରିଣତି ହୋଇଥିବାରୁ, ଅନାଚାରୀ ବିରୁଦ୍ଧରେ ପ୍ରତିହିଂସାର ପ୍ରବୃତ୍ତି ସେମାନଙ୍କ ସହଜାତ ଦୁର୍ଗୁଣ ହୋଇଥାଏ । କିଏ ତା'ର ଅନାଚାରୀ ପିତା ତାହାର ସଠିକ୍ ସନ୍ଧାନ ନାନା କାରଣରୁ ନପାଇ, ସମୁଦାୟ ପୃଥିବୀର ପ୍ରତିଟି ମଣିଷ ବା ବ୍ୟକ୍ତି ବିଶେଷ ବିରୁଦ୍ଧରେ ସେମାନେ ପ୍ରତିହିଂସା ପରାୟଣ ହୋଇଥା'ନ୍ତି । ସେଥିପାଇଁ ସେମାନଙ୍କର ଭୂମିକା ଚିରକାଳ ଧ୍ୱଂସମୁଖୀ ହୋଇଥାଏ ।''

ମହାରାଣୀ ଦତ୍ତାଦେବୀ ସମୁଦ୍ରଗୁପ୍ତଙ୍କ ଏପରି ନିଷ୍ଠୁର ବକ୍ତବ୍ୟରେ ମନେ ମନେ ଜଳୁଥାନ୍ତି ।

ସମ୍ରାଟ ସମୁଦ୍ରଗୁପ୍ତଙ୍କ ସ୍ୱଭାବ ଭଲଭାବେ ଜାଣନ୍ତି ମହାରାଣୀ ଦତ୍ତାଦେବୀ । ଏପରି ନିଷ୍ଠୁର ମନ୍ତବ୍ୟର ସେ କେଉଁ ଭାବରେ ଉତ୍ତର ଦେବେ, ଭାବିପାରୁନଥିଲେ ।

ସମ୍ରାଟ ସମୁଦ୍ରଗୁପ୍ତ କିଛିକ୍ଷଣ ନୀରବ ରହିଲାପରେ କହିଲେ – ‘‘ମହାରାଣୀ ଦତ୍ତାଦେବୀ ! ମତେ ଏକାନ୍ତରେ ରହିବାକୁ ଦିଅ ।’’

–‘‘ସମ୍ରାଟଙ୍କ ଯାହା ଇଚ୍ଛା...’’ କହି ମହାରାଣୀ ଦତ୍ତାଦେବୀ ସମୁଦ୍ରଗୁପ୍ତଙ୍କ ଶୟନ କକ୍ଷ ତ୍ୟାଗ କରି ନିଜ କକ୍ଷ ଆଡ଼କୁ ଅଗ୍ରସର ହେଲାବେଳେ ଜଣେ ପରିଚାରିକା ଦୌଡ଼ି ଆସି ସୂଚନା ଦେଲା – ‘‘ମହାଅମାତ୍ୟ ରାଜମହଲ ଅତିଥିଶାଳାରେ ସମ୍ରାଟଙ୍କ ସହିତ ସାକ୍ଷାତ ଆଲୋଚନା ପାଇଁ ଅପେକ୍ଷା କରିଛନ୍ତି ।’’

–‘‘ଠିକ୍ ଅଛି...’’କହି ମହାରାଣୀ ଦତ୍ତାଦେବୀ ଅତିଥି କକ୍ଷ ଆଡ଼କୁ ଅଗ୍ରସର ହେଲେ ।

–‘‘କ’ଣ ସମାଚାର ମହାଅମାତ୍ୟ ?’’ ଦତ୍ତାଦେବୀ ପ୍ରଶ୍ନ କଲେ ।

ମହାଅମାତ୍ୟ ପ୍ରଶ୍ନ କଲେ – ‘‘ରାଜାଧିରାଜଙ୍କ ସ୍ୱାସ୍ଥ୍ୟ ଅବସ୍ଥା ବର୍ତ୍ତମାନ କିପରି ଅଛି ?’’

ମହାଅମାତ୍ୟ ଶିଖରସେଣଙ୍କୁ ମହରାଣୀ ସମ୍ରାଟଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଉପରେ କ’ଣ ବା ଉତ୍ତର ଦେବେ ?

ମହାଅମାତ୍ୟ ଶିଖରସେଣ ମହାରାଣୀ ଦତ୍ତାଦେବୀଙ୍କ ନିକଟତର ହେଲାବେଳକୁ ସେ ପଛକୁ ହଟି କହିଲେ–‘‘ସମ୍ରାଟ ମାନସିକ ସନ୍ତୁଳନ ହରାଇ ବସିଲେଣି ଶିଖରସେଣ ! ରାମଗୁପ୍ତଙ୍କୁ କେନ୍ଦ୍ରକରି ସେ ଖୁବ୍ ଉଦ୍‌ବିଗ୍ନ ଓ କ୍ରୋଧାନ୍ୱିତ । ତାଙ୍କ କ୍ରୋଧ ଏବେ ଚରମ ସୀମାରେ ଏପରି ପହଞ୍ଚିଛି ଯେ, ରାମଗୁପ୍ତଙ୍କୁ ସେ..’’

ମହାରାଣୀ ଦତ୍ତାଦେବୀ ଅଧିକ କିଛି କହିନପାରି କଇଁ କଇଁ ହୋଇ କାନ୍ଦି ଉଠିଲେ ।

ମଗଧ ସାମ୍ରାଜ୍ୟର ମହାଅମାତ୍ୟ, ସମ୍ରାଟ ସମୁଦ୍ରଗୁପ୍ତଙ୍କ ଏକଦା ଏକାନ୍ତ ଘନିଷ୍ଠବନ୍ଧୁ ଶେଖରସେଣ ମହାରାଣୀ ଦତ୍ତାଦେବୀଙ୍କୁ ସାନ୍ତ୍ୱନା ଦେବା ଭଙ୍ଗୀରେ ତାଙ୍କ ପିଠି ଥାପୁଡ଼ାଇ କହିଲେ...,‘‘ହଁ, କୁହନ୍ତୁ ଦତ୍ତାଦେବୀ !’’

ମହାରାଣୀ କୋହ ସମ୍ବରଣ କରି କହିଲେ– ‘‘ସମ୍ରାଟ ରାମଗୁପ୍ତଙ୍କୁ ଗୋଟେ ଜାରଜ ସନ୍ତାନ ଆଉ ମୋତେ ଗୋଟେ...’’

ଶିଖରସେଣ ଆତଙ୍କିତ ଦୃଷ୍ଟିରେ ଦତ୍ତାଦେବୀଙ୍କୁ ଚାହିଁ ରହିଲେ ।

ମହାରାଣୀ କହିଲେ–''ସମ୍ରାଟ ମୋର ଗର୍ଭଧାରଣକୁ କେବଳ ସନ୍ଦେହ କରୁଛନ୍ତି ସେତିକି ନୁହେଁ, ସେ ଆପଣଙ୍କୁ ମଧ୍ୟ ସନ୍ଦେହ କରିବା ଆରମ୍ଭ କଲେଣି ।''

ଶିଖରସେଣ ଅଟ୍ଟହାସ କଲେ– ''ସତେ ? ତେବେ, ଦେବୀ ! ସେ ଗୋଟେ ସାମ୍ରାଜ୍ୟର କ୍ଷମତାଶାଳୀ ସମ୍ରାଟ ହେଉ ବା ସାଧାରଣ ନାଗରିକ, ଯେତେହେଲେ ରକ୍ତମାଂସର ମଣିଷ ତ ! ଗୋଟେ ଗୋଟେ ମଣିଷର ମରଣକାଳେ ଯେପରି ବିପରୀତ ବୁଦ୍ଧି ସମ୍ରାଟ ସମୁଦ୍ରଗୁପ୍ତଙ୍କର ଏବେ ସେହି ଅବସ୍ଥା ।''

–'କିନ୍ତୁ ଶିଖରସେଣ ! ପଚିଶି ବର୍ଷ ତଳେ ଯାହା ଘଟିଯାଇଥିଲା, ସେ ବିଷୟରେ ଦିନେ କୌଣସି ମନ୍ତବ୍ୟ କରିନଥିବା ସମୁଦ୍ରଗୁପ୍ତ ଏବେ ବାର୍ଦ୍ଧକ୍ୟରେ, ସେ ଆଶଙ୍କା ପ୍ରକଟ କରିବାର ଅର୍ଥ କ'ଣ ?''

–''ଅର୍ଥ ଅନର୍ଥର କାରଣ ଏବେ ଖୋଜି ଲାଭ ନାହିଁ, ଦତ୍ତାଦେବୀ । ଆପଣ ନିଶ୍ଚିନ୍ତ ରୁହନ୍ତୁ, ଆମ ପୁତ୍ର ରାମଗୁପ୍ତ ହିଁ ହେବ ମଗଧ ସାମ୍ରାଜ୍ୟର ଉତ୍ତରାଧିକାରୀ । ମୁଁ ମୋର ସକଳଶକ୍ତି ପ୍ରୟୋଗ କରି ସମୁଦ୍ରଗୁପ୍ତଙ୍କ ଯୋଜନାକୁ କିପରି ପଣ୍ଡ କରୁଛି, ତାହା ଦେଖିବାକୁ ଅପେକ୍ଷା କରନ୍ତୁ... ''

ଅତିଥି କକ୍ଷ ଆଡ଼କୁ କେହି ଜଣେ ଅଗ୍ରସର ହୋଇ ଆସୁଥିବା ପାଦ ଶବ୍ଦକୁ ଶୁଣି ଦୁହେଁ ସତର୍କ ହୋଇଉଠିଲେ । ମହାରାଣୀ ଦତ୍ତାଦେବୀ କକ୍ଷର ଅନ୍ୟ ଏକ ଦ୍ୱାର ଦେଇ ଚାଲିଗଲେ । ମହାଅମାତ୍ୟ ଶିଖରସେଣ ଆଗନ୍ତୁକଙ୍କ ପାଦ ଶବ୍ଦକୁ ଅନିଶା କରି ରହିଥିବା ବେଳେ ହଠାତ୍ ପର୍ଦା ଆଡ଼େଇ ଅତିଥି କକ୍ଷରେ ପ୍ରବେଶ କଲେ ସ୍ୱୟଂ ସମ୍ରାଟ ସମୁଦ୍ରଗୁପ୍ତ !

ସମ୍ରାଟ ସମୁଦ୍ରଗୁପ୍ତଙ୍କୁ ହଠାତ୍ ରାଜମହଲର ଅତିଥି କକ୍ଷମଧ୍ୟକୁ ପ୍ରବେଶ କରିବା ଦେଖି ଶିଖରସେଣ ଆସନ ତ୍ୟାଗ କରି ଠିଆହେଲେ ଏବଂ ଅଭିବାଦନ ଜଣାଇଲେ– ''ପରମ ଭଟ୍ଟାରକ ସମ୍ରାଟଙ୍କର ଜୟ ହେଉ ।''

ପାଦ ଟଳମଳ ଅବସ୍ଥାରେ ସମୁଦ୍ରଗୁପ୍ତ ଆସନ ଉପରେ ଲୋଟିପଡ଼ି, ଶୀର୍ଣ୍ଣ କଣ୍ଠରେ କହିଲେ –''ଅମାତ୍ୟ ।''

–''ଆଜ୍ଞା ଦେବ !''

–''ଯୁଦ୍ଧ ଭୂମିରୁ କିଛି ସମ୍ବାଦ ଆସି ପହଞ୍ଚିଛି ?''

–''ସମାଚାର ତ ଆସି ପହଞ୍ଚିଛି, ତେବେ ସେପରି କିଛି ଠୋସ୍ ସମ୍ବାଦ ନାହିଁ, ତେବେ ଏହି ଯୁଦ୍ଧଯାତ୍ରାରେ ମଗଧର ବିଜୟ ନିକଟତର ହୋଇ ଆସିଲାଣି ।''

–''ଏହି ବିଜୟର ଅନୁମାନ ଉଭୟପକ୍ଷ କରିବା ସ୍ୱାଭାବିକ...'' କହି ସମୁଦ୍ରଗୁପ୍ତ ନୀରବ ହୋଇଗଲେ ।

ଅତିଥି କକ୍ଷରେ ସମ୍ରାଟ ଓ ମହାଅମାତ୍ୟଙ୍କ ଆଳାପ ଚାଲିଥିବାବେଳେ କକ୍ଷଦ୍ୱାର ବାହାରୁ ଜୟଘୋଷ ଭାସି ଆସିଲା – ''ମହାରାଜାଧିରାଜଙ୍କ ଜୟ !''

ସମୁଦ୍ରଗୁପ୍ତ ପଚାରିଲେ,–''କିଏ ? ପ୍ରତିହାରୀ ? ଭିତରକୁ ଆସ, କ'ଣ ସମାଚାର ନେଇ ଆସିଛ ?''

ପ୍ରତିହାରୀ ପ୍ରସନ୍ନ ମୁଦ୍ରାରେ କହିଲା –''ମହାରାଜ ଗୁପ୍ତବଂଶର ଚନ୍ଦ୍ର ବିଦ୍ରୋହୀମାନଙ୍କ ଦ୍ୱାରା ଆଚ୍ଛାଦିତ ଘନକୃଷ୍ଣ ମେଘକୁ ଚିରି ଆକାଶ ବୁକୁରେ ଆଲୋକ ବିତରଣ କରିବା ଆରମ୍ଭ କରିଛି । ଯୁଦ୍ଧ ଭୂମିରେ ଆମ ମଗଧସେନାର ବିଜୟ ହୋଇଛି, ସମ୍ରାଟ !''

–''ଏହି ଶୁଭ ସମାଚାର କେତେବେଳେ ପ୍ରାପ୍ତ ହେଲା ପ୍ରତିହାରୀ ?'' ଦୁର୍ବଳ, ଅସହାୟ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଭିତରେ ପ୍ରବଳ ଉତ୍ସାହ ଓ ଶତସିଂହର ବଳ ଯେମିତି ସଂଚରି ଉଠୁଥିଲା ।

–''ମହାକାନ୍ତାରରୁ ଆସିଥିବା ଆମର ଜଣେ ଦୂତ ଏହି ସମାଚାର ଦେଇଚି, ମହାରାଜ ! ବିଦ୍ରୋହୀ ନାଗବଂଶୀ ରାଜାମାନେ ପରାସ୍ତ ହୋଇ ପୁଣି ମଗଧର ଅଧୀନତା ସ୍ୱୀକାର କରିଛନ୍ତି । ମଗଧ ସେନାବାହିନୀ ମଧ୍ୟ କୁମାର ଚନ୍ଦ୍ରଗୁପ୍ତଙ୍କ ନେତୃତ୍ୱରେ ଆସନ୍ତାକାଲି ପ୍ରତ୍ୟାବର୍ତ୍ତନ କରୁଛନ୍ତି ।''

ସମ୍ରାଟ ସମୁଦ୍ରଗୁପ୍ତଙ୍କ ନିସ୍ତେଜ ଦୁଇ ଆଖିପତା ପ୍ରବଳ ଉଲ୍ଲାସରେ ଯେମିତି ପୁଲକିତ ହୋଇଉଠୁଥିଲା । ସେ ଉତ୍କଣ୍ଠାର ସହିତ ପ୍ରଶ୍ନ କଲେ – ''ଆଉ ବିଶେଷ କିଛି ସମାଚାର ?''

ପ୍ରତିହାରୀ ମୁହଁ ତଳକୁ କରି ଶୋକାକୁଳ କଣ୍ଠରେ କହିଲା –''ମଗଧର ବିଜୟ ଘଟିଥିଲେ ସୁଦ୍ଧା କୁମାରାଦିତ୍ୟ ବିଷ୍ଣୁଦାସ ବୀରଗତି ପ୍ରାପ୍ତ ହୋଇଛନ୍ତି, ସମ୍ରାଟ !''

–''ଓଃ...'' ସମୁଦ୍ରଗୁପ୍ତଙ୍କ ମୁଖମଣ୍ଡଳ ଶୋକ ସନ୍ତପ୍ତ ହୋଇଉଠିଲା । ଦୁଇ ଆଖିରୁ ଦୁଇଧାର ଅଶ୍ରୁ ଝରିଆସିଲା ।

ଶିଖରସେଣ ପଚାରିଲେ –''ଯୁବରାଜ ରାମଗୁପ୍ତ କିପରି ଅଛନ୍ତି ?''

ପ୍ରତିହାରୀ ନୀରବ : ନିରୁତ୍ତର ।

ପ୍ରତିହାରୀର ଏପରି ନୀରବ ନିରୁତ୍ତରତା ଲକ୍ଷ୍ୟ କରି ସମ୍ରାଟ ସମୁଦ୍ରଗୁପ୍ତଙ୍କ ହୃଦୟ ଆଶଙ୍କାରେ ଭରିଉଠିଲା । କମ୍ପିତ ସ୍ୱରରେ ପଚାରିଲେ – ‘‘କ’ଣ ପ୍ରତିହାରୀ ! କୁମାର ରାମଗୁପ୍ତଙ୍କ ନାଁ ଶୁଣିଲାକ୍ଷଣି ତମେ ଏମିତି ଚୁପ୍ ରହିଲ ଯେ ।’’

ପ୍ରତିହାରୀ କମ୍ପିତ କଣ୍ଠରେ କହିଲା– ‘‘ହଁ, ମହାରାଜ ଯୁବରାଜ ରାମଗୁପ୍ତ କୁଶଳରେ ଅଛନ୍ତି, କିନ୍ତୁ...’’

ସମୁଦ୍ରଗୁପ୍ତ ବ୍ୟାକୁଳ ହୋଇଉଠିଲେ – ‘‘କିନ୍ତୁ ପୁଣି କ’ଣ ? କୁହ, କୁହ ! ଯୁଦ୍ଧ ଭୂମିରେ ସେ କ୍ଷତ ବିକ୍ଷତ ହୋଇ ନାହାନ୍ତି ତ ?’’

ପ୍ରତିହାରୀ ବିନମ୍ର କଣ୍ଠରେ କହିଲା –‘‘ପ୍ରଭୁ ! ମୋତେ କ୍ଷମା କରିବେ । ଅତି ଦୁଃଖର ସହିତ ସୂଚନା ଦେବାକୁ ପଡୁଛି, ବିଦ୍ରୋହୀ ନାଗବଂଶୀ ରାଜାମାନଙ୍କ ମିଳିତସେନା ସହିତ କୁମାର ଚନ୍ଦ୍ରଗୁପ୍ତଙ୍କ ନେତୃତ୍ୱରେ ମାଗଧୀ ସେନାବାହିନୀ ଭୟଙ୍କର ଯୁଦ୍ଧ ଚଳାଇଥିବାବେଳେ ଯୁଦ୍ଧର ଭୟାବହ ବିଭୀଷିକାପୂର୍ଣ୍ଣ ଦୃଶ୍ୟ ଦେଖି ମଗଧ ସେନାବାହିନୀର ମହାନାୟକ ଆମ ଯୁବରାଜ ରାମଗୁପ୍ତ ସେନାଶିବିର ଛାଡ଼ି ପାର୍ଶ୍ୱବର୍ତ୍ତୀ ଜଙ୍ଗଲରେ ଲୁଚି ଯାଇଥିଲେ ।’’

–‘‘କ’ଣ କହିଲ ପ୍ରତିହାରୀ ?’’ – ସମୁଦ୍ରଗୁପ୍ତ କ୍ରୋଧ ଓ ଆଶ୍ଚର୍ଯ୍ୟରେ ଚମକି ପଡ଼ିଲେ – ‘‘କ’ଣ କହୁଚ ତୁମେ ? ତୁମେ ସଠିକ୍ ସୂଚନା ପାଇଛ ତ ? ତୁମମାନଙ୍କର ପରମ ଭଟ୍ଟାରକ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଜ୍ୟେଷ୍ଠପୁତ୍ର ମଗଧ ସିଂହାସନର ଉତ୍ତରାଧିକାରୀ ରାମଗୁପ୍ତ ସାମାନ୍ୟ ନାଗବଂଶୀ ସେନାଙ୍କ ପ୍ରାଣମୂର୍ଚ୍ଛା ଯୁଦ୍ଧ ଓ ରକ୍ତପାତ ଦେଖି ପ୍ରାଣ ଭୟରେ ରଣକ୍ଷେତ୍ର ଛାଡ଼ି ଘଞ୍ଚ ଅରଣ୍ୟରେ ଲୁଚିଯାଇଥିଲେ ? ଯିଏ ମଗଧ ସମ୍ରାଟ ହେବା ପାଇଁ ସ୍ୱପ୍ନ ଦେଖୁଚି, ସେ ଗୋଟେ ଭୀରୁ କାପୁରୁଷ ପାଲଟିଯାଇଛି ?’’

ଗଭୀର ଦୁଃଖ ଓ ଲଜ୍ଜାରେ ସମୁଦ୍ରଗୁପ୍ତ ଝାଉଁଳି ପଡ଼ିଲେ । କପାଳରେ ହାତମାରି ଦୀର୍ଘଶ୍ୱାସ ଟାଣିଲେ ସମୁଦ୍ରଗୁପ୍ତ । କ୍ରୋଧ ଜର୍ଜରିତ କଣ୍ଠରେ କହିଲେ– ‘‘ମଗଧ ସାମ୍ରାଜ୍ୟର ଏକଛତ୍ରପତି ସମ୍ରାଟ ଭାବେ ସୁନାମ ଅର୍ଜନ କରିଥିବା ସମୁଦ୍ରଗୁପ୍ତ ଜୀବନର ଶେଷ ସଂଧ୍ୟାରେ ଏପରି ହୃଦୟ ବିଦାରକ ସମ୍ବାଦ ଶୁଣିବା ଅପେକ୍ଷା ମୃତ୍ୟୁ ବରଂ ସୁଖଦାୟକ । ଅପମାନରୁ ମୁକ୍ତି ।’’

ସମୁଦ୍ରଗୁପ୍ତଙ୍କ ତୀକ୍ଷ୍ଣ ଦୃଷ୍ଟି ପାଖରେ ବସିଥିବା ମହାଅମାତ୍ୟ ଶିଖରସେଣଙ୍କ ଆଡ଼କୁ ଲମ୍ବିଗଲା – ‘‘ଅମାତ୍ୟ ! ପ୍ରତିହାରୀ ତୁଣ୍ଡରୁ ଶୁଣୁଛ ତ ତୁମ ମହାନାୟକଙ୍କ ବୀରତ୍ୱଗାଥା ? ତୁମର ମହାନାୟକ ଗୁପ୍ତବଂଶର ଗୌରବ କିପରି ବୃଦ୍ଧି କଲେ, ଶୁଣିଲ

ତ ? ମାଗଧୀ ସେନାର ଯୁଦ୍ଧଯାତ୍ରାର ମହାନାୟକଙ୍କ ଏହି ବୀରତ୍ୱ ଗାଥା ଚିରକାଳ ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇରହିବ, ମହାଅମାତ୍ୟ ! ହାଃ ହାଃ !'' ଅଟ୍ଟହାସ କରି ଉଠିଲେ ସମୁଦ୍ରଗୁପ୍ତ ।

ମହାଅମାତ୍ୟ ଶିଖରସେଣ ସମୁଦ୍ରଗୁପ୍ତଙ୍କ ଏପରି ରୋଷଭରା ଅଟ୍ଟହାସ ଶୁଣି ସତେ ଯେମିତି ମାଟିରେ ମିଶିଗଲେ । ଧୀର କଣ୍ଠରେ ସମ୍ରାଟ କେବଳ କହିଲେ- ''ଏଥର ତୁମେ ଏଠାରୁ ଆସିପାର, ପ୍ରତିହାରୀ ।''

ପ୍ରତିହାରୀ କହିଲା -''କିନ୍ତୁ ମହାରାଜ୍, ଆହୁରି କିଛି ଗୁରୁତ୍ୱପୂର୍ଣ୍ଣ ସମାଚାର ଜଣାଇବାର ଅଛି ।''

-''ଯାହା କିଛି କହିବାକୁ ବାକି ରହିଯାଇଛି, ତାହା ଶୀଘ୍ର ବର୍ଣ୍ଣନା କରିଯାଅ...'' କ୍ରୋଧ ସମ୍ବରଣ କରି ମହାଅମାତ୍ୟ କହିଲେ ।

ଶିଖରସେଣଙ୍କ ମୁଖଭଙ୍ଗୀରେ କ୍ରୋଧ ଓ ଈର୍ଷାର ରଙ୍ଗ ବାରିପାରିଲା ପ୍ରତିହାରୀ । କିନ୍ତୁ ଗୁପ୍ତ ସାମ୍ରାଜ୍ୟର ମହାଅମାତ୍ୟଙ୍କ ପ୍ରତି ଏକ ସାଧାରଣ ପ୍ରତିହାରୀ ନିଜର ରୋଷ ବା କିପରି ପ୍ରକଟ କରିପାରିବ ? ତେଣୁ ସେ ମହାଅମାତ୍ୟଙ୍କୁ କେବଳ ଅବଜ୍ଞା କରି ସମ୍ରାଟ ସମୁଦ୍ରଗୁପ୍ତଙ୍କୁ ଉଦ୍ଦେଶ୍ୟ କରି କହିଲା -''ଛାମୁ, ରଣାଙ୍ଗନର ବିଜୟୀ ମାଗଧୀସେନାଙ୍କ ନେତୃତ୍ୱରେ କୁମାର ଚନ୍ଦ୍ରଗୁପ୍ତ ରାଜଧାନୀ ପ୍ରତ୍ୟାବର୍ତ୍ତନ ପାଇଁ ସମ୍ରାଟଙ୍କ ଆଦେଶ ଭୀକ୍ଷା କରିଛନ୍ତି ।''

ସମୁଦ୍ରଗୁପ୍ତ ଆନନ୍ଦ ଉଲ୍ଲାସରେ ଉଲ୍ଲସିତ ହେଲା ଭଳି ଜଣାପଡୁଥିଲେ । ସମ୍ରାଟ କହିଲେ -''ପ୍ରତିହାରୀ ! ମଗଧର ଏହି ଯେଉଁ ବିଜୟବାର୍ତ୍ତା ନେଇ ତୁମେ ଆସିଛ, ସେହି ବିଜୟର ଶ୍ରେୟ ପାଇଁ କୁମାର ଚନ୍ଦ୍ରଗୁପ୍ତ ହିଁ ହକ୍‌ଦାର ତ ?''

-''ହଁ, ସମ୍ରାଟ !''

-''ତେବେ ରାଜଧାନୀ ପାଟଳୀପୁତ୍ରରେ ବିଜୟୀ ମାଗଧୀସେନା ସହ ପ୍ରବେଶ ପାଇଁ ଅନୁମତି ବା କ'ଣ ଆବଶ୍ୟକ ?''

-''କୁମାର ଚନ୍ଦ୍ରଗୁପ୍ତଙ୍କ ସହିତ ଏକ ସର୍ବଗୁଣସଂପନ୍ନା ନାରୀ ରତ୍ନ ମଧ୍ୟ ରାଜଧାନୀକୁ ଆସୁଛନ୍ତି ।''

ସମ୍ରାଟ ସମୁଦ୍ରଗୁପ୍ତ ବିସ୍ମୟଭରା ନେତ୍ରରେ ଚାହିଁ ରହିଲେ ପ୍ରତିହାରୀକୁ ଆଉ ପ୍ରଶ୍ନ କଲେ -''ସେହି ନାରୀରତ୍ନଟି କିଏ ?''

-''ନାଗସେନଙ୍କ କନ୍ୟା । ନାଗସେନ ମାଗଧୀ ସେନାବାହିନୀର ପରାକ୍ରମ ଆଗରେ ଆତଙ୍କିତ ହୋଇ ଯୁଦ୍ଧପୂର୍ବରୁ ସନ୍ଧି କଲେ ଏବଂ ମଗଧର ପୁନଶ୍ଚ ବଶ୍ୟତା ସ୍ୱୀକାର କରିଛନ୍ତି । ଚନ୍ଦ୍ରଗୁପ୍ତଙ୍କ ଯୁଦ୍ଧ ଅଭିଯାନରେ ଅଭିଭୂତ ହୋଇପଡ଼ି ନାଗସେନ ନିଜ ରାଜ୍ୟର ଦଣ୍ଡକାରଣ୍ୟ ଅଞ୍ଚଳ ସମେତ କନ୍ୟା ଧ୍ରୁବଦେବୀଙ୍କୁ ଉପହାର ସ୍ୱରୂପ ଅର୍ପଣ କରିଛନ୍ତି ।''

ପ୍ରାତଃ ସୂର୍ଯ୍ୟରଶ୍ମୀରେ ଜାଜ୍ଜ୍ୱଲ୍ୟମାନ ଶିଶିରସିକ୍ତ ସତେଜ ଫୁଲର ପାଖୁଡ଼ା ପରି ସମ୍ରାଟ ସମୁଦ୍ରଗୁପ୍ତଙ୍କ ମ୍ଳାନ ମୁଖମଣ୍ଡଳ ଆନନ୍ଦର ଆଲୋକରେ ଯେମିତି ଝଲସି ଉଠିଲା । କନିଷ୍ଠ କୁମାର ଚନ୍ଦ୍ରଗୁପ୍ତଙ୍କ ଶୌର୍ଯ୍ୟଗାଥା ଶୁଣି ଜ୍ୟେଷ୍ଠପୁତ୍ର ରାମଗୁପ୍ତଙ୍କ ପ୍ରତି ଜାତ ହୋଇଥିବା କ୍ଷୋଭ କ୍ଷୀଣ ହୋଇଗଲା । ହସହସ ମୁଖରେ ସମୁଦ୍ରଗୁପ୍ତ କହିଲେ-''ଗୁପ୍ତ ବଂଶର ଯୋଗ୍ୟତମ ଉତ୍ତରାଧିକକାରୀ ଚନ୍ଦ୍ରଗୁପ୍ତଙ୍କୁ ନିଜ ରାଜଧାନୀରେ ପ୍ରବେଶ ପାଇଁ କାହାରି ଅନୁମତିର ଆବଶ୍ୟକତା ନାହିଁ, ପ୍ରତିହାରୀ ! ନା କ'ଣ କହୁଛ ମହାଅମାତ୍ୟ ?''

ମହାଅମାତ୍ୟ ଶିଖରସେଣ ସତେ ଯେମିତି ଚମକି ଉଠିଲେ । ଶତସହସ୍ର ବୃଶ୍ଚିକ ଯେମିତି ଏକତ୍ରିତ ହୋଇ ତାଙ୍କୁ ଦଂଶନ କରୁଥିଲେ । ତଥାପି ସେ ନିଜକୁ ସଂଯତ କରି କହିଲେ -'' ସମ୍ରାଟ ଠିକ୍ କହିଛନ୍ତି ।''

ଦୀର୍ଘ କେତେ ଦିନ ଧରି କ୍ରମାଗତ ରୋଗ ଭୋଗି ଭୋଗି ସମ୍ରାଟ ସମୁଦ୍ରଗୁପ୍ତ କ୍ଲାନ୍ତ ହୋଇପଡ଼ିଥିଲେ ହେଁ କନିଷ୍ଠ କୁମାର ଚନ୍ଦ୍ରଗୁପ୍ତଙ୍କ ବିଜୟଗାଥା ଶୁଣି ତାଙ୍କର ମୁଖମଣ୍ଡଳର ଔଜ୍ଜଲ୍ୟ ବାରି ହୋଇପଡୁଥିଲା । ପୁଣି ଏହି ପ୍ରସନ୍ନତାର କାରଣ ଥିଲା କୁମାର ଚନ୍ଦ୍ରଗୁପ୍ତ ସମ୍ରାଟ ସମୁଦ୍ରଗୁପ୍ତଙ୍କର ଦର୍ଶନ ନିମନ୍ତେ ରାଜପ୍ରାସାଦରେ ପ୍ରବେଶ କରିଛନ୍ତି । ଅବଶ୍ୟ ଚନ୍ଦ୍ରଗୁପ୍ତଙ୍କର ଆଗମନ ସୂଚନାର ଆନନ୍ଦ ସମ୍ରାଟ ସମୁଦ୍ରଗୁପ୍ତଙ୍କର ଅତୀତର ଦିଗ୍‌ବିଜୟକାଳୀନ ସଫଳତା ଜନିତ ଉଦ୍‌ଘୋଷଣାକୁ ମ୍ଳାନ କରିଦେଇଥିଲା । ସମ୍ରାଟଙ୍କର କ୍ଲାନ୍ତ ଆଖି ଦୁଇଟି ଯେମିତି ବାରମ୍ୱାର କକ୍ଷର ଦ୍ୱାରଆଡ଼କୁ ପହଁରି ଯାଉଥାଏ । ଚନ୍ଦ୍ରଗୁପ୍ତଙ୍କ ପଦଚାପ ଶୁଣିବା ପାଇଁ ତାଙ୍କର କର୍ଣ୍ଣଯୁଗଳ ବ୍ୟାକୁଳ ହୋଇଉଠୁଥାଏ ।

ସତରେ ପ୍ରତୀକ୍ଷାର ଅନ୍ତ ଘଟିଲା ! ସହାସ୍ୟ ବଦନରେ କୁମାର ଚନ୍ଦ୍ରଗୁପ୍ତ ସମ୍ରାଟଙ୍କର କକ୍ଷ ମଧ୍ୟକୁ ପ୍ରବେଶ କଲେ ଓ ଅଭିବାଦନ କଲେ ।

-''ମଗଧ ସମ୍ରାଟ ସମୁଦ୍ରଗୁପ୍ତଙ୍କର ଜୟ ହେଉ ।''

ସମ୍ରାଟ ସମୁଦ୍ରଗୁପ୍ତଙ୍କର ପିତୃ ହୃଦୟ ବିଜୟୀ ବୀରପୁତ୍ରର ଦର୍ଶନ ମାତ୍ରେ

ଆବେଗରେ ଉଚ୍ଛୁଳି ପଡ଼ିଲା । ସେ ନିଜର ସମସ୍ତ ରୋଗ ଯନ୍ତ୍ରଣାର କଷ୍ଟକୁ ଭୁଲିଯାଇ ପଲଙ୍କ ଉପରୁ ଓହ୍ଲାଇ ପଡ଼ି ପରମ ଆନନ୍ଦରେ ବିଭୋର ହୋଇ ଯୋଗ୍ୟତମ ପୁତ୍ର ଚନ୍ଦ୍ରଗୁପ୍ତଙ୍କୁ ନିଜ ଦୁଇ ବାହୁରେ କୋଳେଇ ନେଲେ ଏବଂ କହିଲେ, ''ଏବେ ମୁଁ ସମ୍ରାଟ ନୁହେଁ, ପିତା ! କୁହ ପୁତ୍ର । ରାଜସିଂହାସନରେ ସମ୍ରାଟ ଶୋଭାପାଏ କୁମାର ! କିନ୍ତୁ ଏଇ ରୁଗ୍ଣ ଶରୀର ଧରି ଏ ଶେଯରେ ତୁମର ବୃଦ୍ଧ ପିତା ଶୋଇଛି, ସମ୍ରାଟ ନୁହେଁ ।''

ଚନ୍ଦ୍ରଗୁପ୍ତରୁ ରୁଆଁସି କଣ୍ଠରେ କହିଲେ, ''ପିତାଶ୍ରୀ''... ଓ ବକ୍ଷରେ ଲୋଟି ପଡ଼ିଲେ ।

ପିତାପୁତ୍ରଙ୍କର ସ୍ନେହର ସଜଳ ମୁହୂର୍ତ୍ତକୁ ହୁଏତ ଧରି ରଖିବାକୁ ବିଶାଳ ରାଜପ୍ରାସାଦର ହର୍ମ୍ୟ, ଅଳିନ୍ଦ, ଦର୍ପଣ, ଖିଲାଣ ସବୁ ଅସମର୍ଥ ହୋଇ ପଡ଼ିଥିଲେ । କେମିତି ଏକ ଭାବବିଗଳନର ଉନ୍ମାଦନାରେ ରାଜମହଲ ଛମ୍ ଛମ୍ କରୁଥିଲା ।

ରୁଗ୍ଣ କ୍ଳାନ୍ତ ସମ୍ରାଟ ସମୁଦ୍ରଗୁପ୍ତଙ୍କର କପାଳରେ ବିନ୍ଦୁ ବିନ୍ଦୁ ସ୍ୱେଦ ଝରି ଆସୁଥିଲା । ଅତ୍ୟନ୍ତ ସ୍ନେହରେ ନିଜ ଉତ୍ତରୀୟରେ ଚନ୍ଦ୍ରଗୁପ୍ତ ପିତାଙ୍କର କପାଳର ସ୍ୱେଦକୁ ପୋଛିଦେଲେ । ଗଭୀର ଭାବରେ ସେ ପିତାଙ୍କର ଆଖିକୁ ଦୃଷ୍ଟି ନିବଦ୍ଧ କଲେ ।

ପୁତ୍ର ସ୍ନେହର ପରିତୃପ୍ତିରେ ଝଲଝଲ ହେଉଥିବା ସମୁଦ୍ରଗୁପ୍ତଙ୍କ କଣ୍ଠରୁ ଉଚ୍ଚାରିତ ହେଲା- ''କୁମାର, ମୋର ପ୍ରାଣର ଚନ୍ଦ୍ରଗୁପ୍ତ ।''

ଚନ୍ଦ୍ରଗୁପ୍ତଙ୍କର ଯେମିତି ମନେହେଉଥିଲା ପିଲାଦିନେ ରାଜମହଲରେ ସଖା ସହଚରମାନଙ୍କ ସହିତ ଖେଳି ଖେଳି ଆସି ହାଲିଆ ହୋଇପଡ଼ିଥିଲେ, ପିତା ସମ୍ରାଟ ସମୁଦ୍ରଗୁପ୍ତଙ୍କର ଆଖିରେ ପଡ଼ିଗଲେ ସେ କୋଳକୁ ଉଠାଇନେଇ ଆଦର କରିପକାନ୍ତି । ତାଙ୍କର ସ୍ନେହର ସେହି ଉଷ୍ମତାକୁ ଚନ୍ଦ୍ରଗୁପ୍ତ ତାଙ୍କର ଆଜାନୁଲମ୍ବିତ ହସ୍ତ ଓ ପ୍ରଶସ୍ତ ଲୋମଶ ଛାତିର ବିଶାଳତା ଭିତରେ ଅନୁଭବ କରନ୍ତି । ସେ ସବୁ ଆଜି କାହିଁକି ବେଶି ମନେପଡୁଛି... । ଆଃ ! ମୋର ଦିଗ୍‌ବିଜୟୀ ମହାନ୍ ପିତା ସମ୍ରାଟ ସମୁଦ୍ରଗୁପ୍ତ ! ଗୁପ୍ତ ସାମ୍ରାଜ୍ୟର ମହାଯୋଦ୍ଧା, ମହା ଶକ୍ତିଶାଳୀ ବୀରତ୍ୱର ଐଶ୍ୱର୍ଯ୍ୟମୟ ଅଧୀଶ୍ୱର ।

ସମ୍ରାଟ ସମୁଦ୍ରଗୁପ୍ତ ଚନ୍ଦ୍ରଗୁପ୍ତଙ୍କର ହାତକୁ ଆବେଗରେ ଆଉଁଷି ଆଉଁଷି କହିଲେ- ''କୁମାର ଚନ୍ଦ୍ରଗୁପ୍ତ ! ତୁମେ ମତେ ଗୋଟେ କଥା ଏ ପର୍ଯ୍ୟନ୍ତ ଲୁଚାଇଛ ବୋଧହୁଏ । ମୁଁ ଶୁଣୁଥିଲି, ତୁମେ କୁଆଡ଼େ ମଗଧ ରାଜମହଲ ପାଇଁ ଏକ ବହୁମୂଲ୍ୟ ଉପହାର ଆଣିଛ ? ତା'ହେଲେ କାହିଁ କୁଆଡ଼େ ଗଲା, ସେଇ ରତ୍ନମଣି !''

ଚନ୍ଦ୍ରଗୁପ୍ତ ଈଷତ୍ ହସି ଦୁଇ ହାତରେ ତାଳି ବଜାଇଲେ । ନୂପୁରର ମନ୍ଦ୍ର ମଧୁର ନିକ୍ୱଣ ତୋଳି ଦାସୀ ପରିବେଷ୍ଟିତା ଅଧୋମୁଖି ଏକ ଅନିନ୍ଦ୍ୟ ସୌନ୍ଦର୍ଯ୍ୟମୟୀ ଯୁବତୀ କକ୍ଷ ମଧ୍ୟର ପ୍ରବେଶ କଲେ ।

ସମ୍ରାଟ ସମୁଦ୍ରଗୁପ୍ତଙ୍କର ଚକ୍ଷୁର ଚମକ ଦ୍ୱିଗୁଣିତ ହୋଇଗଲା । ହସିହସି ସେ କହିଲେ–"ହେ କନ୍ୟା ! କୁହ ତୁମର ପରିଚୟ ?"

ସେହିଭଳି ନତମୁଖ ହୋଇ ସୁନ୍ଦରୀ ସମ୍ରାଟଙ୍କୁ ପ୍ରଣାମ କରି କହିଲେ–"ମୁଁ ଆପଣଙ୍କର ଅଭିନ୍ନ ମିତ୍ର ନାଗବଂଶୀ ମହାରାଜା ନାଗସେଣଙ୍କର କନ୍ୟା ... ।"

ଚନ୍ଦ୍ରଗୁପ୍ତ କହିଲେ–"ପିତା ଏ ହେଉଛନ୍ତି ଆପଣଙ୍କର ସେହି ରତ୍ନମଣି ଧ୍ରୁବଦେବୀ ।"

ସଲ୍ଲଜତାର ସହିତ ଧ୍ରୁବଦେବୀ ନିଜକୁ ଆହୁରି ସଜାଡ଼ିନେଲେ ।

ସମୁଦ୍ରଗୁପ୍ତଙ୍କୁ ନାଗବଂଶୀ କନ୍ୟା ଧ୍ରୁବଦେବୀଙ୍କର ଉତ୍ତର ଯେପରି ଅତ୍ୟନ୍ତ ଆମୋଦିତ କଲା । ସେ ପରିସ୍ଥିତିକୁ ଆଉ ଟିକିଏ ହାଲ୍‌କା କରିବା ପାଇଁ କହିଲେ,–"ହେ ରତ୍ନମଣି କନ୍ୟା ! ତୁମକୁ ମୋର ପ୍ରିୟ ଚନ୍ଦ୍ରଗୁପ୍ତ ଯୋଗ୍ୟ ମନେହେଉଛି ତ ?"

ଧ୍ରୁବଦେବୀ ସମ୍ରାଟଙ୍କ କଥାରେ ଆହୁରି ଆହୁରି ଲାଜରେ ସଙ୍କୁଚିତ ହୋଇଗଲେ । ତାଙ୍କ ମୁଖରେ ସଂଭ୍ରମତାର ତ୍ୱକ୍ ଉଚ୍ଛ୍ୱସିତ ହୋଇଉଠିଲା ।

...ଆରେ, ଏ କ'ଣ କୁମାର ଚନ୍ଦ୍ରଗୁପ୍ତ ଯେ ଏକଲୟରେ, ଏକ ଧ୍ୟାନରେ ଧ୍ରୁବଦେବୀଙ୍କୁ ହିଁ ଅନେଇ ରହିଛନ୍ତି । ସମ୍ରାଟ ସମୁଦ୍ରଗୁପ୍ତ ଆନନ୍ଦରେ ଗଦ୍‌ଗଦ୍ ହୋଇଉଠିଲେ । ପାଖରେ ଛିଡ଼ା ହୋଇଥିବା ଅମାତ୍ୟଙ୍କୁ କହିଲେ, "ଅମାତ୍ୟ ଦେଖୁଚ ତ ! ନାଗସେଣ ଗୁପ୍ତବଂଶ ପାଇଁ କିପରି ମହା ଅମୂଲ୍ୟ ଉପହାର ପଠେଇଛନ୍ତି ? ଯେମିତି ନଭ ମଣ୍ଡଳରେ ଚମକୁଥିବା ଇଏ ଧ୍ରୁବତାରାଟିଏ ନୁହେଁ କି ?

ମହାଅମାତ୍ୟ ଶିଖରସେଣଙ୍କର ମୁହଁ ହଠାତ୍ ଯେପରି ରକ୍ତହୀନ ହୋଇଗଲା । ଓଠରୁ କଥା ସ୍ଫୁରିଲା ନାହିଁ । ସମ୍ରାଟ ଶିଖରସେଣଙ୍କ ଆଡ଼କୁ ତୀର୍ଯ୍ୟକ ଦୃଷ୍ଟିପାତ କରି ବ୍ୟଙ୍ଗଭରା କଣ୍ଠରେ କହିଲେ–"ମୁଁ ଜାଣେ ମହାମାତ୍ୟ ! ମୋର କଥା ତୁମକୁ କଦାପି ପ୍ରସନ୍ନ କରିବନାହିଁ ।"

ମହାମାତ୍ୟ ଶିଖରସେଣଙ୍କର ଅପ୍ରସ୍ତୁତ ଭାବଭଙ୍ଗିମା ଯେମିତି ନଗ୍ନ ହୋଇଯାଇଥିଲା, ସେ ସତେ କି ଚୋରି କରୁ କରୁ ଧରାପଡ଼ି ଯାଇଥିଲେ । ତେଣୁ ଅପ୍ରସ୍ତୁତ ହୋଇ ସେ କହିଲେ–"ଏମିତି କିଛି କଥା ନାହିଁ ସମ୍ରାଟ ! ବାସ୍ତବରେ ମୁଁ ଶାରୀରିକ ଅସୁସ୍ଥତା ଅନୁଭବ କରୁଥିଲି ତ .... ।"

ସମ୍ରାଟ ସମୁଦ୍ରଗୁପ୍ତ ଅମାତ୍ୟଙ୍କର କଥାକାଟ କହି ଉଠିଲେ– "ବଡ଼ ଆଶ୍ଚର୍ଯ୍ୟ

କଥା ତ ! ଏଭଳି ଉଲ୍ଲସିତ ସମ୍ବାଦ ଶୁଣି ମୋ ଭଳି ରୁଗ୍‌ଣ ବୃଦ୍ଧ ଦେହରେ ଜୀବନୀ ଶକ୍ତି ପ୍ରବାହିତ ହେଉଛି ଅଥଚ ତମେ ଏ କ'ଣ କହୁଛ ?''

ମହାଅମାତ୍ୟ ଶିଖରସେଣ ସମ୍ରାଟଙ୍କଠାରୁ ଆଖି ଚୋରାଇ କହି ଉଠିଲେ –'' ସମ୍ରାଟ ! ମୋର କେତେକ ଆବଶ୍ୟକ କାର୍ଯ୍ୟ ଅଛି ! ଅନୁମତି ଦେଲେ ମୁଁ ଆସନ୍ତି ।''

–''ନା, ମହାମାତ୍ୟ ! ତୁମେ ବର୍ତ୍ତମାନ ଯାଇପାରିବନାହିଁ । ଏବେ ଏକ ଆବଶ୍ୟକ କାର୍ଯ୍ୟ ସଂପାଦନା କରିବାର ଅଛି । ତୁରନ୍ତ ମହାଦଣ୍ଡନାୟକଙ୍କୁ ଏଠାରେ ଉପସ୍ଥିତ ହେବାକୁ ସୂଚନା ଦିଅନ୍ତୁ ।'' ସମ୍ରାଟ ସମୁଦ୍ରଗୁପ୍ତ ନିର୍ଣ୍ଣାୟକ ସ୍ୱରରେ ଆଦେଶ ଦେଲେ ।

ମହାମାତ୍ୟ ଶିଖରସେଣ କେଉଁ ଏକ ଆସନ୍ନ ଆତଙ୍କରେ ଯେମିତି ଆଶଙ୍କିତ ହୋଇପଡ଼ିଲେ ।

ସମ୍ରାଟଙ୍କ ନିର୍ଦ୍ଦେଶକ୍ରମେ ପ୍ରତିହାରୀ ମହାଦଣ୍ଡନାୟକ ହରିସେଣଙ୍କୁ ରାଜପ୍ରସାଦକୁ ପାଛୋଟି ଆଣିବା ପାଇଁ ଚାଲିଗଲା ।

ସମୁଦ୍ରଗୁପ୍ତ କୁମାର ଚନ୍ଦ୍ରଗୁପ୍ତ ଓ ଧ୍ରୁବଦେବୀଙ୍କ ଉପରେ ଦୃଷ୍ଟି ପହଁରାଇ କକ୍ଷଛାଡ଼ି ଚାଲିଯିବାକୁ ଆଖିରେ ହିଁ ଇଙ୍ଗିତ କଲେ ।

ଦୁହେଁ କକ୍ଷ ତ୍ୟାଗକରି ବାହାରକୁ ଚାଲିଗଲା ପରେ ସମ୍ରାଟ ସମୁଦ୍ରଗୁପ୍ତ ମହାମାତ୍ୟଙ୍କୁ ପାଖକୁ ଡାକି ଧୀର କଣ୍ଠରେ କହିଲେ – ''ଅମାତ୍ୟ ! ଆଜି ମୁଁ ବେଶ୍ ପ୍ରସନ୍ନ । ମୋର ମନ ଓ ଶରୀରରେ ଥିବା କ୍ଳାନ୍ତିର ଯଦିଓ ଅବସାନ ଘଟିଛି ତଥାପି ମୁଁ ତ ଗୋଟେ ରୁଗ୍‌ଣ ଶରୀର ଧରି ବଞ୍ଚିରହିଛି । ଏହି ରୁଗ୍‌ଣ ଶରୀରର କାନ୍ଧ ଏଇ ସାମ୍ରାଜ୍ୟର ଭାର ଆଉ ଅଧିକ କାଳ ସହ୍ୟ କରିବା ଅବସ୍ଥାରେ ନାହିଁ । ଭାବୁଛି, ରାଜକାର୍ଯ୍ୟର ଭାର କୁମାରଙ୍କୁ ଅର୍ପଣ କରିବି । ମୋ ପରେ ବିଶାଳ ମଗଧ ସାମ୍ରାଜ୍ୟର ଶାସନ ଭାର ଗ୍ରହଣ କରିବା ପାଇଁ ଯେଉଁ ଯୋଗ୍ୟ ଉତ୍ତରାଧିକାରୀ ଆଜି ପର୍ଯ୍ୟନ୍ତ ଖୋଜି ଆସିଥିଲି, ଏବେ ତାହା ମିଳିସାରିଚି ।''

ମହାମାତ୍ୟ ଶିଖରସେଣ ସନ୍ଦିଗ୍ଧ ଦୃଷ୍ଟିରେ ସମ୍ରାଟ ସମୁଦ୍ରଗୁପ୍ତଙ୍କ ମୁହଁକୁ କିଛି କ୍ଷଣ ଚାହିଁ ରହିଲାପରେ ପଚାରିଲେ –'' ରାଜାଧିରାଜ ! ଆପଣ କେଉଁ କୁମାରଙ୍କ କଥା କହୁଛନ୍ତି ? ରାମଗୁପ୍ତ ?''

ମହାଅମାତ୍ୟଙ୍କ ମୁହଁରୁ ଜ୍ୟେଷ୍ଠପୁତ୍ର ରାମଗୁପ୍ତଙ୍କ ନାମ ଶୁଣିଲା କ୍ଷଣି ସମୁଦ୍ରଗୁପ୍ତ ବିରକ୍ତଭରା କଣ୍ଠରେ କହିଲେ –''ଅମାତ୍ୟ ! ଏପରି କ'ଣ କହୁଛନ୍ତି ? ରାମଗୁପ୍ତ ପାଇଁ ଆପଣଙ୍କର ଏତେ ଦୁର୍ବଳତା କାହିଁକି ? ଆପଣ କ'ଣ ଚାହୁଁଛନ୍ତି ମୁଁ ନିଜ ହାତରେ ନିଜେ

ଗୁପ୍ତବଂଶର ବିଶାଳ ବୃକ୍ଷକୁ କାଟି ନିର୍ମୂଳ କରିଦେବାକୁ ଚାହୁଁଛି ? ଗୋଟେ କ୍ଲୀବ, ଭୀରୁ, କାପୁରୁଷ ରାମଗୁପ୍ତ ହାତରେ ମଗଧ ସାମ୍ରାଜ୍ୟର ଶାସନଭାର ହସ୍ତାନ୍ତର କରି ଗୁପ୍ତସାମ୍ରାଜ୍ୟର ବିନାଶର ପଥ ପ୍ରଶସ୍ତ କରିଦେବି ? ନା, ଏହା କଦାପି ସମ୍ଭବ ନୁହେଁ । ଏହି ଶାସନ ଭାର କୁମାର ଚନ୍ଦ୍ରଗୁପ୍ତ ହାତରେ ସମର୍ପଣ କରିଦେବା ହେଉଚି ମୋର ଅନ୍ତିମ ଅଭିଳାଷ । ଏଥିରେ କାହାରି କିଛି ଆପତ୍ତି ଅଛି କି ?''

ଅସହାୟ କଣ୍ଠରେ ମହାମାତ୍ୟ ଶିଖରସେଣ କହିଲେ– ''ସମ୍ରାଟଙ୍କ ଅଭିଳାଷ ଉପରେ ଆପତ୍ତି କରିବାର ସାଧ କାହାର ଅଛି ରାଜାଧିରାଜ ! କିନ୍ତୁ ଏହି କାର୍ଯ୍ୟ ଅନୁଚିତ ଭଳି ମନେହେଉଛି । ଯୁବରାଜ ରାମଗୁପ୍ତ ଆପଣଙ୍କ ଜ୍ୟେଷ୍ଠପୁତ୍ର । ଜ୍ୟେଷ୍ଠପୁତ୍ର ଥାଉ ଥାଉ କନିଷ୍ଠ ପୁତ୍ର ମଗଧ ସିଂହାସନ ଆରୋହଣ କରିବା...''

ସମୁଦ୍ରଗୁପ୍ତ ବିରକ୍ତ ଭରା କଣ୍ଠରେ କହିଲେ– ''ରାଜନୀତି ଆଉ ଶାସନତନ୍ତ୍ରରେ ସାନବଡ଼ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଅମାତ୍ୟ ! କନିଷ୍ଠ କୁମାର ଚନ୍ଦ୍ରଗୁପ୍ତ ଜଣେ ଯୋଗ୍ୟ, ଅନୁଭବୀ ଓ ଯୋଦ୍ଧା । ଆଉ ରାମଗୁପ୍ତ ବିଳାସୀ, ଭୀରୁ ଓ ତାମସୀ । ବିଶାଳ ମଗଧ ସାମ୍ରାଜ୍ୟର ସୁରକ୍ଷା ଓ ତାହାର ଉତ୍‌ଥାନ ପାଇଁ ସତ୍ତ୍ୱଗୁଣ ଓ ରଜୋଗୁଣ ସଂପନ୍ନ ବ୍ୟକ୍ତିର ଆବଶ୍ୟକତା ରହିଛି । ଏହି ଗୁଣ କୁମାର ଚନ୍ଦ୍ରଗୁପ୍ତଙ୍କର ପାଖରେ ପୂର୍ଣ୍ଣ ମାତ୍ରାରେ ରହିଥିବା ବେଳେ ରାମଗୁପ୍ତ ପରି ଏକ ତମୋଗୁଣୀ ବ୍ୟକ୍ତି ଦ୍ୱାରା ସାମ୍ରାଜ୍ୟ ସୁରକ୍ଷା ସମ୍ଭବ ନୁହେଁ ।''

ମହାମାତ୍ୟ ଶିଖରସେଣ ଗୋଟେ ପ୍ରାଣହୀନ ପଥରମୂର୍ତ୍ତି ଭଳି ନୀରବ – ନିରୁତ୍ତର ଭାବେ ଯୋଡ଼ହସ୍ତରେ ଠିଆ ହୋଇଥିଲେ ।

ପ୍ରତିହାରୀ ମହାଦଣ୍ଡନାୟକ ହରିସେଣଙ୍କ ଆଗମନର ସୂଚନା ଦେଲା ।

ସାଧାରଣ ବେଶଭୂଷାରେ ମହାଦଣ୍ଡନାୟକ କକ୍ଷ ମଧ୍ୟରେ ପ୍ରବେଶ କରି ସମ୍ରାଟଙ୍କୁ ପ୍ରଣାମ କଲେ ।

ସମୁଦ୍ରଗୁପ୍ତ ଚିନ୍ତାଗ୍ରସ୍ତ ଭାବରେ ପଚାରିଲେ – ''କୁହନ୍ତୁ, ମହାଦଣ୍ଡନାୟକ । ଦଣ୍ଡବିଧାନ ଗୃହର ସମାଚାର କ'ଣ ?''

–''ସବୁ କୁଶଳ ଛାମୁ ! ଆସନ୍ତାକାଲି ନାରୀ ଧର୍ଷଣ ଓ ହତ୍ୟା ଅଭିଯୋଗରେ ଜଡ଼ିତ ଜ୍ୟେଷ୍ଠ କୁମାର ରାମଗୁପ୍ତଙ୍କ ସମସ୍ୟା ଉପରେ ବିଚାର ହେବ ।''

ହରିସେଣଙ୍କ ମୁଖରୁ ଏପରି ମନ୍ତବ୍ୟ ଶୁଣି ମହାମାତ୍ୟ ଶିଖରସେଣ ଚମକି ପଡ଼ିଲେ । ତଥାପି ସେ ତାଙ୍କର ଉଦ୍‌ବିଗ୍ନତାକୁ ଗୋପନ ରଖି କହିଲେ– ''ମଗଧର

ବିଜୟରେ ରାଜଧାନୀ ପାଟଳୀପୁତ୍ର ଉତ୍ସବମୁଖର ହୋଇପଡ଼ିଥିବା ବେଳେ ଜ୍ୟେଷ୍ଠ କୁମାର ରାମଗୁପ୍ତଙ୍କ ବିଚାରପାଇଁ ଏତେ ଶୀଘ୍ର ପଦକ୍ଷେପ ନେବା ଉଚିତ ହେବନାହିଁ । ଏହି କାର୍ଯ୍ୟ ଭାବିଚିନ୍ତି କରିବାକୁ ପଡ଼ିବ ମହାଦଣ୍ଡନାୟକ ।''

ମହାଦଣ୍ଡନାୟକ ହରିସେଣ ମହାମାତ୍ୟ ଶିଖରସେଣଙ୍କ ଏପରି କାକୁସ୍ଥପଣକୁ ଲକ୍ଷ୍ୟକରି ସ୍ମିତହାସ୍ୟ ତୋଳି କହିଲେ –''ମଗଧ ସାମ୍ରାଜ୍ୟର ମହାମାନ୍ୟ ମହାଅମାତ୍ୟ ମହୋଦୟ ! ମୁଁ ମୋର ଦାୟିତ୍ୱ ଓ କର୍ତ୍ତବ୍ୟ ପ୍ରତି ଅଧିକ ସଚେତନ । ଯଥା ସମୟରେ ଯଥାକାର୍ଯ୍ୟ ସଂପାଦନ ସାରିଦେଇ ଦାୟିତ୍ୱର ବୋଝରୁ ମନକୁ ମୁକ୍ତ କରିବା ତ ମୋର ସ୍ୱଭାବ । ଏହାଛଡ଼ା ସମ୍ରାଟଙ୍କ ଆଦେଶକୁ ଉଲ୍ଲଂଘନ କରିବା ମୋ ପକ୍ଷରେ କଦାପି ସମ୍ଭବ ନୁହେଁ ।''

ମହାଅମାତ୍ୟଙ୍କ ମୁଖମଣ୍ଡଳ ନିମ୍ନମୁଖୀ ହୋଇଗଲା ।

ଅସ୍ଥିର କଣ୍ଠସ୍ୱର ତୋଳି ସମୁଦ୍ରଗୁପ୍ତ କହିଲେ –''ମହାଦଣ୍ଡନାୟକ !''

ହରିସେଣ ସମ୍ରାଟଙ୍କ ପରବର୍ତ୍ତୀ ଆଦେଶକୁ ଅପେକ୍ଷା କରିଥିଲେ ।

ସମୁଦ୍ରଗୁପ୍ତ କହିଲେ –''ଯାହା ମୋର ମନେହେଉଚି, ମୁଁ ଆଉ ଜୀବନର ଅବିଶିଷ୍ଟ ସକାଳର ସୂର୍ଯ୍ୟୋଦୟ ଦେଖିବାର ସୌଭାଗ୍ୟ ପାଇବି ନାହିଁ । ତେଣୁ ମୁଁ ଜୀବନ ସଂଧ୍ୟାର ଅବସାନ ପୂର୍ବରୁ ସ୍ପଷ୍ଟ ଦିବାଲୋକରେ କୁମାର ଚନ୍ଦ୍ରଗୁପ୍ତଙ୍କୁ ନିଜର ଉତ୍ତରାଧିକାରୀ ଘୋଷଣା କରିଦେବା ଉଚିତ ହେବ । ମୋ ପରେ ଉତ୍ତରାଧିକାରୀଙ୍କୁ କେନ୍ଦ୍ରକରି କୌଣସି ବିବାଦ ବା ବିଦ୍ରୋହର ଆଶଙ୍କା ରହିବ ନାହିଁ । ଇଚ୍ଛାପତ୍ର ପ୍ରସ୍ତୁତ କର ମହାଦଣ୍ଡନାୟକ ।''

କିଛି କ୍ଷଣ ମଧ୍ୟରେ ମହାଦଣ୍ଡନାୟକ ହରିସେଣ ରାଜମୁଦ୍ରିତ ଇଚ୍ଛାପତ୍ର ସମ୍ରାଟ ସମୁଦ୍ରଗୁପ୍ତଙ୍କ ସମ୍ମୁଖରେ ଉପସ୍ଥାପନ କଲେ । ସମୁଦ୍ରଗୁପ୍ତ ସେହି ଇଚ୍ଛାପତ୍ର ଉପରେ କୁମାର ଚନ୍ଦ୍ରଗୁପ୍ତଙ୍କୁ ମଗଧ ସାମ୍ରାଜ୍ୟ ସିଂହାସନର ଉତ୍ତରାଧିକାରୀ ବୋଲି ଉଲ୍ଲେଖକରି ତାଙ୍କ ମଧ୍ୟଅଙ୍ଗୁଳି ମଧ୍ୟରେ ଥିବା ରାଜମୁଦ୍ରିକାର ମୋହର ଲଗାଇଦେଲେ ଏବଂ କହିଲେ – ''ଓଃ, ମୋର ମନ ଓ ପ୍ରାଣ କେତେ ଉଶ୍ୱାସ ଲାଗୁଚି ମହାମାତ୍ୟ ! ହଁ ଏହି ଇଚ୍ଛାପତ୍ର ମହାଦଣ୍ଡନାୟକ ହରିସେଣଙ୍କ ପାଖରେ ରହିବ....''

ସମ୍ରାଟ ସମୁଦ୍ରଗୁପ୍ତ ଦୀର୍ଘଶ୍ୱାସ ଟାଣିଲେ ।

''–ଆରେ ଏ କ'ଣ ! ଏ କ'ଣ ହେଲା ? ସମ୍ରାଟ ସମୁଦ୍ରଗୁପ୍ତଙ୍କ କ୍ଳାନ୍ତ ଶରୀର ଆସନର ଗୋଟିଏ କୋଣକୁ ଢ଼ଳିଗଲା । ତାଙ୍କର ଦୁଇ ଅପଲକ ନେତ୍ରର ଦୃଷ୍ଟି ଶୂନ୍ୟରେ ଅଟକିଗଲା । ସମୁଦ୍ରଗୁପ୍ତଙ୍କ ଜୀବନ ଶିଖା ଯେମିତି ହଠାତ୍ ନିର୍ବାପିତ ହୋଇଗଲା ।

ମହାଦଣ୍ଡନାୟକ ହରିସେଣ ବ୍ୟସ୍ତ ବିବ୍ରତ ହୋଇପଡ଼ିଲେ । ସେ ଚିତ୍କାର କଲେ– "ପ୍ରତିହାରୀ କିଏ ଅଛ, ଆସ ! ରାଜବୈଦ୍ୟଙ୍କୁ ଖବର ଦିଅ ।"

ମହାମାତ୍ୟ ଶିଖରସେଣ ଆଶ୍ୱସ୍ତ ହେଲେ ଆଉ କହିଲେ –"ସମ୍ରାଟ ସମୁଦ୍ରଗୁପ୍ତ ତାଙ୍କ ଶେଷ ଇଚ୍ଛା ପ୍ରକଟ କରି ଶେଷନିଃଶ୍ୱାସ ନେଇ ସାରିଛନ୍ତି ମହାଦଣ୍ଡନାୟକ ! ଯୁବରାଜ ଚନ୍ଦ୍ରଗୁପ୍ତଙ୍କ ରାଜ୍ୟାଭିଷେକ ପାଇଁ ପ୍ରସ୍ତୁତ ହୁଅ ।"

ସମ୍ରାଟ ସମୁଦ୍ରଗୁପ୍ତଙ୍କ ମୃତ୍ୟୁ ସମାଚାର ଅଗ୍ନିଭଳି ରାଜଭବନ ପରିସର ଓ ରାଜଧାନୀ ପାଟିଳୀପୁତ୍ରରେ ବ୍ୟାପୀଗଲା ।

ଚାରିଆଡ଼େ ଶୋକାକୁଳ ପରିବେଶ ।

ଆଉ ମହାଅମାତ୍ୟ ଶିଖରସେଣ ?

ସେ କରତାଳି ମାରିଲା କ୍ଷଣି ରାଜମହଲର ଗୋଟିଏ କକ୍ଷରୁ ଝଡ଼ବେଗରେ ଦୌଡ଼ି ଆସିଲେ ଦୁଇ ଜଣ । ଜ୍ୟେଷ୍ଠ କୁମାର ରାମଗୁପ୍ତ ଓ ସାମନ୍ତ ଚକ୍ରସେଣ ।

ମହାମାତ୍ୟଙ୍କ ଇସାରାକ୍ରମେ ସାମନ୍ତ ଚକ୍ରସେଣ ବୃଦ୍ଧ ମହାଦଣ୍ଡନାୟକଙ୍କୁ ପାର୍ଶ୍ୱବର୍ତ୍ତୀ କକ୍ଷକୁ ଘୋଷାଡ଼ିନେଲେ ଓ କିଛିକ୍ଷଣ ମଧ୍ୟରେ ରୁଦ୍ଧ କକ୍ଷରୁ ଭାସି ଆସିଲା ହରିସେଣଙ୍କ ଆର୍ତ୍ତଚିତ୍କାର ।

ଶେଷ । ସବୁ ଶେଷ ।

ମୃତ ହରିସେଣଙ୍କ ନିସ୍ତେଜ ହାତମୁଠାରୁ ମହାମାତ୍ୟ ଶିଖରସେଣ ରାଜମୁଦ୍ରିକା ଚିହ୍ନିତ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଇଚ୍ଛାପତ୍ରକୁ ଟାଣିନେଲେ ଆଉ କହିଲେ–"ମଗଧର ଭାବି ସମ୍ରାଟ ରାମଗୁପ୍ତ ! ଚାଲନ୍ତୁ ମୋର ନିବାସକୁ । ତୁରନ୍ତ, ଏହି ମୁହୂର୍ତ୍ତରେ । ଆସ ଚକ୍ରସେଣ । ଯଥାଶୀଘ୍ର ଆମ୍ଭମାନଙ୍କୁ ଏହି ସ୍ଥାନ ତ୍ୟାଗ କରିବାକୁ ପଡ଼ିବ ।"

ସାମନ୍ତ ଚକ୍ରସେଣ ପଚାରିଲେ – "ଏଠାରେ ପଡ଼ି ରହିଥିବା ମହାଦଣ୍ଡ ନାୟକ ହରିସେଣଙ୍କ ମୃତଦେହ ?"

ସେଇ ମୃତଦେହର ସଂସ୍କାର ଦାୟିତ୍ୱ କଥା ବୁଝିବେ କୁମାର ଚନ୍ଦ୍ରଗୁପ୍ତ ! ନା କ'ଣ କହୁଛନ୍ତି ଜ୍ୟେଷ୍ଠ କୁମାର ? ହାଃ ହାଃ ....."

ମଗଧର ରାଜ ଉପବନ...

ଜାଇଯୁଇ, ହେନା, ଅଶୋକ, ଚମ୍ପା, ମଲ୍ଲି,କନିଅର, ଟଗର, ନାନାରଙ୍ଗି ଫୁଲର ରୋଷଣିରେ ଉପବନର କୋଣ ଅନୁକୋଣରେ ଫୁଆରା ସୃଷ୍ଟି ହେଉଥିଲା । ଉପବନ ମଧ୍ୟସ୍ଥ ତଡାଗରେ କଇଁଫୁଲ ଆବେଗରେ ତା'ର ପ୍ରେମିକ ଚନ୍ଦ୍ରକୁ ଯେମିତି ଅପେକ୍ଷା କରି ମୁରୁକି ମୁରୁକି ହସୁଥିଲା, ଧଳା ଫରଫର କଇଁର ପାଖୁଡ଼ାରେ ମିଳନର ଗୁମାନ ଯେମିତି ଲାଖି ରହିଥିଲା । ଧୋବ ଫରଫର ତନୁପାତଳି ବଗମାନେ, ହଂସମାନେ ଜଳାଶୟର ମଝିରେ ମଝିରେ ପହଁରି ଯାଉଥିଲେ । ଏମିତି ଏକ ଆବେଗ ଉଚ୍ଛ୍ୱସିତ ପରିବେଶ ମଧ୍ୟରେ ଅନିନ୍ଦ୍ୟ ସୁନ୍ଦରୀ ନାଗବଂଶୀ ରାଜକୁମାରୀ ଧ୍ରୁବଦେବୀ ଗୋଟିଏ ସୁସଜ୍ଜିତ ଚଉତରା ଉପରେ ନିଜର ଯୌବନଦୀପ୍ତ ଶରୀରକୁ ଢ଼ାଳି ଦେଇଥା'ନ୍ତି । ଉପବନର ଶୋଭାକୁ ଅପଲକ ନୟନରେ ନିହାରୁଥା'ନ୍ତି । ପାଖରେ ପ୍ରିୟସଖୀ ତପସ୍ୟା ମଲ୍ଲିଫୁଲର ମାଳା ଗୁନ୍ଥୁଥାଏ । ମଝିରେ ରାଜକୁମାରୀଙ୍କ ଆଡ଼କୁ ଅନାଇ ତପସ୍ୟା ପଚାରିଲା– ''ମହାଦେବୀ ! କ'ଣ ଏତେ ନିରେଖି ଦେଖୁଛନ୍ତି ଯେ ।''

ଧ୍ରୁବଦେବୀ ନିବିଷ୍ଟ ଚିତ୍ତରେ ଅନେକବେଳୁ ସେହି ଲତାକୁ ଦେଖୁଥିଲେ । ତପସ୍ୟାର କଥାରେ ମୁହଁ ଉଠାଇ କହିଲେ – ''ଏହି ଲତାକୁ ଦେଖିଲୁ ତପସ୍ୟା ! କେଡ଼େ ହତଭାଗିନୀଟିଏ । ତା' ପାଖରେ ମଧ୍ୟ କେତେ ଗୁଡ଼ିଏ ଲତା ମାଳିଛନ୍ତି ଓ ସେମାନେ ନିଜର ଭାର ନିଜେ ବହନ କରିବାକୁ ଅସମର୍ଥ । ଆଉ ଏଇ ପାଗଳି ଲତାଟି ସେହି ସବୁ ଅଶକ୍ତ ଲତାମାନଙ୍କ ଉପରେ ଲଟେଇ ଯିବାକୁ ଚାହେଁ ।''

ତପସ୍ୟା ଧ୍ରୁବଦେବୀଙ୍କ ଦୃଷ୍ଟିର ଦୂରରେ ଥିବା ଏକ ବୃକ୍ଷ ଆଡ଼କୁ ଆକୃଷ୍ଟ କରିବାପୂର୍ବକ କହିଲା– ''ରାଜକୁମାରୀ ! ସେହି ବୃକ୍ଷକୁ ଦେଖନ୍ତୁ ! ଏକ ସମର୍ଥ ବଳିଷ୍ଠ ବପୁଧାରୀ ପୁରୁଷ ଭଳି କେମିତି ଗାମ୍ଭୀର୍ଯ୍ୟତାର ସହିତ ଛିଡ଼ା ହୋଇଛି । ଅଥଚ ଆପଣଙ୍କର ଏହି ଲତା ସେହି ବୃକ୍ଷର ଆଶ୍ରୟ ନେବାକୁ ଚାହୁଁନି କାହିଁକି ?''

ଧ୍ରୁବଦେବୀ ତପସ୍ୟାର ଏଭଳି ଶିଶୁ ସୁଲଭ ନିରୀହତାରେ ଆମୋଦିତ ହେଲେ ଓ କହିଲେ–''ତପସ୍ୟା ! ତୁ କ'ଣ ବୃକ୍ଷର ଆଖ ପାଖରେ ଥିବା କଣ୍ଟା ଝଣ୍ଟାର ବୁଦାକୁ ଲକ୍ଷ୍ୟ କରିନୁ କି ? ସେଥିପାଇଁ ଏମିତି କହୁଛୁ । ମୁଁ ପରା ନିଜେ ଦେଖି ଆସିଛି । ବିଚାରି ଲତାଟି ତା'ର ଡାଳକୁ ବୃକ୍ଷ ଦେହରେ ଲଟେଇ ଦେବାକୁ ଅନେକ ପ୍ରୟାସ କରିଥିଲା, ହେଲେ କ'ଣ ହେବ, ଗଛମୂଳର କଣ୍ଟାବୁଦାର ଗହଳିରେ ତା'ର କଅଁଳ ଡେମ୍ଫଗୁଡ଼ାକ ଛିଣ୍ଡି ରକ୍ତାକ୍ତ ହୋଇଗଲେ ଯେ, ଚାଲୁନ୍ତୁ, ତତେ ଦେଖେଇବି ।''

ଦୁଇଜଣ ଉଠି ଲତା ଆଡ଼କୁ ଅଗ୍ରସର ହେଲେ । ଲତା ନିକଟରେ ପହଞ୍ଚି

ଧ୍ରୁବଦେବୀ ଖିଲ୍ ଖିଲ୍ ହୋଇ ଖୁବ୍ ଜୋର୍‌ରେ ହସିଉଠିଲେ । ତପସ୍ୟା ଆଶ୍ଚର୍ଯ୍ୟ ହୋଇ ପଚାରିଲା– ‘‘ହସିବାର କାରଣ କ’ଣ ମହାଦେବୀ !’’

ରାଜକୁମାରୀ ଧ୍ରୁବଦେବୀ ସେମିତି ହସୁହସୁ କହିଲେ– ‘‘ଆରେ ନା ତପସ୍ୟା ! ମୁଁ ଏହି ଶକ୍ତିହୀନ କ୍ଷୀଣାଙ୍ଗୀ ଲତାର ବୁଦ୍ଧିରେ ହସୁଛି । ଏହି କୋମଳ ମେରୁଦଣ୍ଡହୀନ ଲତାଗୁଡ଼ିକ ବାସ୍ତବରେ ସେହିସବୁ କାପୁରୁଷ ବ୍ୟକ୍ତିମାନଙ୍କ ଭଳି ତପସ୍ୟା ! ଯେଉଁ ମାନଙ୍କର ନଥାଏ ସ୍ୱାଭିମାନ, ନଥାଏ ଶକ୍ତି, ଅଥଚ ସମସ୍ତଙ୍କୁ ଉପରକୁ ଉଠାଇବାର ବୃଥା ଆସ୍ଫାଳନ ପ୍ରଦର୍ଶନ କରନ୍ତି ।’’

ରାଜକୁମାରୀ ଧ୍ରୁବଦେବୀଙ୍କର ତୀକ୍ଷ୍ଣ ବ୍ୟଙ୍ଗ ବାଣରେ ତପସ୍ୟା ଏହାର ଗୂଢ଼ ରହସ୍ୟକୁ ବୁଝିବାକୁ ଚେଷ୍ଟାକଲା । ଧ୍ରୁବଦେବୀ ହଠାତ୍ ତପସ୍ୟାକୁ ପଚାରିବସିଲେ – ‘‘ରାଜକୁମାର ଚନ୍ଦ୍ରଗୁପ୍ତଙ୍କର ରାଜଅଭିଷେକ କାଲି ହେବନା ତପସ୍ୟା ?’’

ତପସ୍ୟା କହିଲା– ‘‘ହଁ ସେମିତି ମୁଁ ଶୁଣିଛି, ଦେବୀ, ହେଲେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କିଛି କହିହେବନି ।’’

ଧ୍ରୁବଦେବୀ ଚିନ୍ତାପ୍ରକଟ କରି କହିଲେ– ‘‘କ’ଣ ଏଥିରେ ମଧ୍ୟ ସନ୍ଦେହ ଅଛି ନା କ’ଣ ? ତପସ୍ୟା କହିଲା– ‘‘ମହାଦେବୀ ! ସମ୍ରାଟଙ୍କର ମୃତ୍ୟୁ ଯେଭଳି ପରିସ୍ଥିତିରେ ହେଲା, ସେହିଦିନଠାରୁ ମୋର ସମସ୍ତ ବସ୍ତୁ ପ୍ରତି ସନ୍ଦେହ ଜାତ ହେଉଛି ।’’

ଧ୍ରୁବଦେବୀ ପଚାରିଲେ– ‘‘କାହିଁକି, ତପସ୍ୟା ?’’

ତପସ୍ୟା କୁଣ୍ଠାର ସହିତ କହିଲା– ‘‘ମହାଦଣ୍ଡନାୟକଙ୍କ ହତ୍ୟା କଥା ତ ଆପଣଙ୍କର ସ୍ମରଣ ଥିବ ନିଶ୍ଚୟ । ପ୍ରକୃତରେ ତାଙ୍କ ଭଳି ନ୍ୟାୟବାନ୍ ବ୍ୟକ୍ତିର ହତ୍ୟାକରି କାହାର ବା କି ପ୍ରକାର ଲାଭ ହେଲା ଯେ....।’’

ଧ୍ରୁବଦେବୀ ଅତ୍ୟନ୍ତ ଉତ୍ସୁକତାର ସହିତ ଖୋଳି ଖୋଳି ତପସ୍ୟାକୁ ପଚାରିଲେ, ‘‘–ହଁ....ହଁ... କହ...କହ, କ’ଣ କହୁଥିଲୁ... ରହିଗଲୁ ଯେ ।’’

–‘‘ମହାଦଣ୍ଡନାୟକଙ୍କର ହତ୍ୟା କୌଣସି ଏକ ଭୟଙ୍କର ଷଡ଼ଯନ୍ତ୍ରର ଆଭାସର ସୂଚନା ଭଳି ପ୍ରତୀୟମାନ ହେଉଛି ମହାଦେବୀ ।’’

ଧ୍ରୁବଦେବୀ କହିଲେ– ‘‘ତାହା କେଉଁପରି କହ ତ !

ତପସ୍ୟା ଗମ୍ଭୀର ହୋଇ କହିଲା– ‘‘ବାସ୍ତବରେ ମହାଅମାତ୍ୟ ଚାହାନ୍ତି ରାମଗୁପ୍ତଙ୍କୁ ଯୁବରାଜ ଘୋଷିତ କରାଯାଉ । କିନ୍ତୁ ସମ୍ରାଟ ନିଜର ଉତ୍ତରାଧିକାର କୁମାର ଚନ୍ଦ୍ରଗୁପ୍ତଙ୍କର ନାମରେ ଲେଖି ସନନ୍ଦ ତିଆରି କରି ଛାଡ଼ି ଯାଇଛନ୍ତି ।’’

ଧ୍ରୁବଦେବୀ ବିସ୍ମୟ ପ୍ରକଟ ପୂର୍ବକ କହିଲେ– ''ତୁ ଅମାତ୍ୟଙ୍କର ଏଭଳି ମନୋଭାବ ସମ୍ପର୍କରେ କେମିତି ସୂଚନା ପାଇଲୁ ?''

ତପସ୍ୟା କହିଲା– ''ସେହି ଦିନ ମହାରାଜାଧିରାଜ ଆପଣଙ୍କୁ ଗୁପ୍ତକୁଳର ବଧୂ ବୋଲି କହିବା ପରେ ଏବଂ କୁମାରଙ୍କ ସମ୍ପର୍କରେ ଯେତେବେଳେ ପଚାରୁଥିଲେ ସେତେବେଳେ ମୁଁ ଲକ୍ଷ୍ୟ କରିଛି, ମହାଅମାତ୍ୟଙ୍କର ମୁହଁ ଏକଦମ୍ ଶେଥା ପଡ଼ିଯାଇଥିଲା । ଯଦିଓ ସେହି ସୁଅବସରରେ ସେ ଆନନ୍ଦିତ ହେବା କଥା ଥିଲା ।''

ଧ୍ରୁବଦେବୀ ଆଶଙ୍କା ପ୍ରକାଶକରି କହିଲେ– ''ଅହୋ ! ତା' ହେଲେ ତ ଏହି ଷଡ଼ଯନ୍ତ୍ରରେ ରାଜକୁମାରଚନ୍ଦ୍ରଗୁପ୍ତଙ୍କର ମଧ ଜୀବନ ପ୍ରତି ବିପଦ ସୃଷ୍ଟି ହୋଇପାରେ ?''

ଉପବନର ଜଳାଶୟ କୂଳରେ ଗୋଟିଏ ବଗ ଏକ୍‌ଲାରେ ପାଣି ଭିତରର ମାଛ ମାନଙ୍କର ଗତିବିଧିକୁ ଅନେଇ ବସିଥାଏ । କେତେବେଳେ ମାଛଟି ପାଣି ଉପରକୁ ମୁଣ୍ଡଟି କାଢ଼ିବ ଆଉ ବଗଟି ଝପ୍‌କିନା ତା'କୁ ଥଣ୍ଟରେ ଧରି ପକାଇବ । ତପସ୍ୟା ବଗକୁ ଦେଖି ଦେଖାଇ ଧ୍ରୁବଦେବୀଙ୍କୁ କହିଲା– ''ମହାଦେବୀ ! ଏଠାରେ କିଛି ବି ଅକସ୍ମାତ୍ ଘଟିପାରେ, କୌଣସି କଥା ଅସମ୍ଭବ ନୁହେଁ । ଏମିତି ବି ହୋଇପାରେ ଆପଣଙ୍କୁ ରାମଗୁପ୍ତଙ୍କର ପନ୍ନୀ ହେବାକୁ ପଡ଼ିପାରେ । ଅବଶ୍ୟ ଯଦି ରାମଗୁପ୍ତ ରାଜା ହୁଅନ୍ତି ତେବେ ନିଶ୍ଚିତ ଭାବରେ ଏହା ହିଁ ଘଟିବ ଦେବୀ ।''

ରାମଗୁପ୍ତଙ୍କର ନାମ ଶୁଣୁ ଶୁଣୁ ଧ୍ରୁବଦେବୀଙ୍କ ନାସିକା ଘୃଣାରେ କୁଞ୍ଚିତ ହୋଇଉଠିଲା । ଯେମିତି ସେ କେଉଁ ଏକ କଷାୟ ତିକ୍ତ ଫଳଟିଏ ପାଟିରେ ପକାଇଦେଲେ । ସାଙ୍ଗେ ସାଙ୍ଗେ ଛି.... ଥୁ କହି ଛେପ ତଳେ ପକାଇଦେଇ କହିଲେ– ''ଛି ! କି କଥା ତୁ କହୁଛୁ ତପସ୍ୟା, ମୁଁ ପୁଣି ହେବି ସେହି କ୍ଳୀବ କାପୁରୁଷର ପନ୍ନୀ ? ସେହି ନପୁଂସକ, ଯିଏ ଯୁଦ୍ଧଭୂମିରେ ପଳାତକ ଭଳି ଶତ୍ରୁପକ୍ଷକୁ ସାମ୍ନା ନ କରିପାରି ଦୌଡ଼ି ପଳାଇଆସିଲା, ତାକୁ ଯଦି ମତେ ବିବାହ କରିବାକୁ ପଡ଼େ ତେବେ ମୁଁ ଆତ୍ମହତ୍ୟା ଶ୍ରେୟସ୍କର ବୋଲି ବାଛିନେବି ।''

ଧ୍ରୁବଦେବୀ କ'ଣ କହିବାକୁ ଯାଉଥିଲେ, ଏହି ସମୟରେ ଦୂର କଣ୍ଟାବୁଦା ମୂଳରେ କ'ଣ ଗୋଟାଏ ସର୍‌ସର୍ ହୋଇ ଚାଲିଗଲା । ବୁଦା ମୂଳରୁ ଗୋଟିଏ ମୁଣ୍ଡ ଉଠିଲା ଆଉ ସେ ଖୁବ୍ ଜୋର୍‌ରେ ହସିଉଠିଲା । ତପସ୍ୟା ଓ ଧ୍ରୁବଦେବୀ ଚମକି ପଡ଼ିଲେ ।

ତପସ୍ୟା ସାହସ ପ୍ରଦର୍ଶନପୂର୍ବକ କହିଲା, ''ଜ୍ୟେଷ୍ଠ କୁମାର ! ଆପଣ ଏଠି ଅଚାନକ ?''

ରାମଗୁପ୍ତ ହାତ ହଲାଇ ହଲାଇ କହିଲେ– ''ହଁ, ତପସ୍ୟା ! ମୁଁ ହିଁ ଏଠାରେ

ଥିଲି । ତୁମର ଦେବୀଙ୍କର ଭାବି ସ୍ୱାମୀ... ଯାହାର ନାମ ଉଚ୍ଚାରଣ କଲାକ୍ଷଣି ତୁମର ମହାଦେବୀ ମେଞ୍ଚାଏ ଛେପ ପକାଇଦେଲେ ।''

ପ୍ରକୃତରେ ତପସ୍ୟା ରାମଗୁପ୍ତଙ୍କର କଟୂକ୍ତିରେ ଡ଼ରିଯାଇଥିଲା ହେଲେ ନିଜକୁ ସମ୍ଭାଳି ନେଇ କହିଲା– ''ନା ନା କୁମାର । ଆପଣ ଭୁଲ୍ ବୁଝିଛନ୍ତି । ବାସ୍ତବରେ ମହାଦେବୀଙ୍କର ତଣ୍ଟିରେ କିଛି ଅଟକି ଯାଇଥିଲା, ସେଥିପାଇଁ ସେ ସେଇଟାକୁ ବାହାର କରିବା ପାଇଁ ବାରମ୍ବାର ଛେପ ପକାଉଥିଲେ ।''

ରାମଗୁପ୍ତ କୁଟିଳ ହସହସି କହିଲେ– ''ତପସ୍ୟା ! ତୁ ହୁଏତ ଜାଣିନୁ ତୋ'ର ସ୍ୱାମିନୀ ରାଜକୁମାରୀ ଧ୍ରୁବଦେବୀ ମଧ ଜାଣି ନାହାନ୍ତି ମୁଁ ଏହା ଭିତରେ କେଉଁ ପ୍ରକାର ବିଦ୍ୟାରେ ପାରଦର୍ଶିତା ଲାଭକରିଛି । ତେଣୁ ମୋ ନିକଟରେ ଛଳନା ଦେଖାଇବାକୁ ଚେଷ୍ଟା କରନାହିଁ । ତନ୍ତ୍ର, ମନ୍ତ୍ର, ସମ୍ମୋହନ ବିଦ୍ୟାକୁ ଆୟତ୍ତ କରିବା ପାଇଁ ମୁଁ କୃଚ୍ଛ ସାଧନା କରିଛି । ବର୍ତ୍ତମାନ ଯେଉଁ ଗୁପ୍ତବିଦ୍ୟାରେ ସିଦ୍ଧି ଅର୍ଜନ କରିବାକୁ ଯାଉଛି, ତା'ରି ବଳରେ ମୁଁ ଅସାଧ୍ୟ ସାଧନ କରିପାରେ । କାଲି ଅମାବାସ୍ୟା ଚାଲିଯାଉ, ଦେଖିବୁ ମୋର ସାଂଘାତିକ ପ୍ରୟାସ । ତୋ'ର ମହାଦେବୀଙ୍କୁ କହିଦେ ସେ ଚନ୍ଦ୍ରଗୁପ୍ତଙ୍କୁ ପାଇବାର ସୁନେଲି ସ୍ୱପ୍ନ ଦେଖିବେ ନାହିଁ । ସେ ସବୁ ଦିବାସ୍ୱପ୍ନରେ, ପରିଣତି ହୋଇଯିବ ।''

ରାଜକୁମାରୀ ଧ୍ରୁବଦେବୀ ରାମଗୁପ୍ତଙ୍କ ବ୍ୟବହାରରେ ଅତ୍ୟନ୍ତ କ୍ଷୁବ୍ଧହୋଇ ବିରକ୍ତିଭରା ସ୍ୱରରେ ପଚାରିଲେ– ''କ'ଣ କରିପକାଇବେ ?''

ରାମଗୁପ୍ତ ରାଜକୁମାରୀଙ୍କ ପ୍ରଶ୍ନରେ ଆହୁରି ଉତ୍ତ୍ୟକ୍ତ ହୋଇଉଠିଲେ ଓ ଆଖିତରାଟି ତାଙ୍କ ନିକଟକୁ ଆସି କହିଲେ– ''କୁମାର ଚନ୍ଦ୍ରଗୁପ୍ତଙ୍କୁ ମୁଁ ବନ୍ଦୀ କରିବି । କାଲି ସୂର୍ଯ୍ୟୋଦୟ ପରେ ମୁଁ ମଗଧର ସିଂହାସନରେ ଅଭିଷିକ୍ତ ହେବାକୁ ଯାଉଛି । ହୁଏତ ରାଜକୁମାରୀ ତୁମେ ଏକଥା ବୋଧହୁଏ ଜାଣିନାହିଁ ଯେ ବନ୍ଦୀଶାଳାରେ ଯେକୌଣସି ଅଘଟଣ ଘଟିଯାଇପାରେ । ଆଉ ତୁମେ ହେବ ମୋର ମହାରାଣୀ । ହାଃ... ହା...ହା...'' କହି ରାମଗୁପ୍ତ ଅଟ୍ଟହାସ୍ୟ କରିଉଠିଲେ ।

ସେହି ଅଟ୍ଟହାସ୍ୟର ତୀକ୍ଷ୍ଣତାରେ ତପସ୍ୟା ଓ ରାଜକୁମାରୀ ଧ୍ରୁବଦେବୀଙ୍କର ହୃଦୟତନ୍ତ୍ରୀ ଥରିଉଠିଲା । ଧ୍ରୁବଦେବୀଙ୍କର ମନେହେଲା ଯେପରି ତାଙ୍କ ସମ୍ମୁଖରେ ଗୋଟାଏ କଦାକାର ଦାନବ ଛିଡ଼ାହୋଇଛି । ତପସ୍ୟାର ହାତକୁ ଜୋର୍‌ରେ ଭିଡ଼ିଧରି ରାମଗୁପ୍ତଙ୍କୁ ଲକ୍ଷ୍ୟ କରି କହିଲେ– ''ଆପଣଙ୍କର ଏହି କୁତ୍ସିତ କାମନାକୁ କେବେହେଲେ ପୂର୍ଣ୍ଣ ହେବାକୁ ମୁଁ ଦେବିନାହିଁ ।''

ରାମଗୁପ୍ତ ଆହୁରି ବ୍ୟଙ୍ଗ କଲାଭଳି ଚିତ୍କାର କରିଉଠିଲେ– ‘‘ସୌନ୍ଦର୍ଯ୍ୟର ଦେବୀଙ୍କଠାରୁ ଏହାର କାରଣ ଜାଣିପାରେ କି ?’’

ଧ୍ରୁବ ସେମିତି ନିଜକୁ ଦୃଢ଼ କରି କହିଲେ– ‘‘ଯୁଦ୍ଧଭୂମିରେ ଯୁଦ୍ଧ ଚାଲୁଥିଲା ବେଳେ ଯେଉଁ ଯୋଦ୍ଧା କାପୁରୁଷ ଭଳି ନିଜର ସାମାନ୍ୟ ପ୍ରାଣ ରକ୍ଷା ପାଇଁ ନିଜ ପକ୍ଷର ସୈନ୍ୟସାମନ୍ତଙ୍କୁ ଏକାକୀ ମୃତ୍ୟୁ ମୁଖକୁ ଠେଲିଦେଇ ଲୁଚି ପଳାଇ ଆସେ, ସେହିପରି ବ୍ୟକ୍ତିକୁ ମୁଁ କାରଣ ବୁଝାଇବାକୁ ହିଁ ଚାହେଁ ନାହିଁ । ଆବଶ୍ୟକ ବୋଲି ମଧ ଭାବେ ନାହିଁ ।’’

ରାମଗୁପ୍ତ ଧ୍ରୁବଦେବୀଙ୍କର ଘୃଣାଭରା ବକ୍ତବ୍ୟରେ ଜୋର୍‌ରେ ଅଟ୍ଟହାସ୍ୟ କରିବାକୁ ଲାଗିଲେ– ‘‘ହାଃ..ହାଃ...ହାଃ.. ହେ ସୁନ୍ଦରୀ । ଯେଉଁ ଦିନଠାରୁ ତମକୁ ମୁଁ ଦେଖିଲି, ସେହିଦିନଠାରୁ ମୋ ଆଖିରୁ ନିଦ କୁଆଡ଼େ ଉଭାନ୍ ହୋଇଗଲା । ନା ଦିନରେ ମୁଁ ସ୍ଥିର ରହିପାରିଲି ନା ରାତିରେ ମୁଁ ନିଦରେ ଶୋଇପାରିଲି । ମୁଁ ତୁମ ପ୍ରେମରେ ଏପରି ପାଗଳ ହୋଇଯାଇଛି ଯେ ତୁମକୁ ଟିକେ ଦର୍ଶନ କରିବାପାଇଁ ଲୁଚି ଲୁଚି ତୁମ ପଛରେ ଘୂରିବୁଲୁଛି । ମୁଁ ଜଣେ ଏପରି ଗୁଣମୁଗ୍ଧ ସୌନ୍ଦର୍ଯ୍ୟ ପିପାସୁ ତୁମ ଯୌବନର, ଅଥଚ ତୁମେ ମତେ କାପୁରୁଷ କହି ଘୃଣା କରୁଛ ? ତୁମେ ମତେ ଯେତେ ଧିକ୍‌କାର କଲେ ମଧ ମୁଁ ଖରାପ ଭାବୁନାହିଁ । କାରଣ ମୁଁ ସୁନ୍ଦରୀମାନଙ୍କର କୌଣସି କଥାକୁ ରାଗେନାହିଁ, ତେଣୁ ତୁମର ଏତେ ସବୁ କଟୂକ୍ତିକୁ କ୍ଷମା କରିଦେଉଛି । ହଉ, ଛାଡ଼ ସେସବୁ ! ବର୍ତ୍ତମାନ ଏହାର ପ୍ରତିଦାନରେ ନିଜର ଭାବି ମହାରାଜଙ୍କର ଅଙ୍କଶାୟିନୀ ହେବାପାଇଁ ଆଗକୁ ଆସ, ମୋର ବାହୁରେ ନିଜକୁ ଟୋଳିଦିଅ ।’’

ଅତ୍ୟନ୍ତ ଆକ୍ରୋଶ, ଦୁଃଖ ଅପମାନର ଧାସରେ ଯେମିତି ଧ୍ରୁବଦେବୀ ସିଝିଗଲେ ଏବଂ ଉତ୍ୟକ୍ତଭରା କଣ୍ଠରେ କହିଲେ– ‘‘ମୁଁ ଏଭଳି ଆଶାଳୀନ ଅଭଦ୍ର ଆଚରଣ ପ୍ରଦର୍ଶନ କରୁଥିବା ବ୍ୟକ୍ତିକୁ ଗୋଇଠା ମାରେ । ଚାଲ, ତପସ୍ୟା ! ଏଠୁ ଶୀଘ୍ର ପଳାଇଯିବା ।’’

ରାମଗୁପ୍ତ ରାଜକୁମାରୀ ଧ୍ରୁବଦେବୀଙ୍କର ସମ୍ମୁଖରେ ଦୁଇହାତ ପ୍ରସାରିତ କରି ଛିଡ଼ା ହୋଇଗଲେ– ‘‘କୁଆଡ଼େ ଯିବ ?’’

ସଙ୍କେତ ପୂର୍ବକ ତାଳି ବଜାଇବାରୁ ଆଖପାଖରୁ କେତେ ଜଣ ସୈନିକ ଦୌଡ଼ି ଆସିଲେ । ରାମଗୁପ୍ତ ଅଟ୍ଟହାସ ପୂର୍ବକ କହିଲେ– ‘‘ହେ ମୋର ବୀର ସୈନିକ ଗଣ ! ଏହି ରୂପବତୀ ସୁନ୍ଦରୀଙ୍କୁ ବନ୍ଦୀ କରି ଦିଅ । କୁଆଡ଼େ ଛାଡ଼ନାହିଁ ।’’

ଧ୍ରୁବଦେବୀ ଚିତ୍କାର କରି କହିଲେ– ‘‘କ୍ଲୀବ, ଅପାରଗ । ଜଣେ ନିଃସହାୟ

ନାରୀକୁ ସୈନ୍ୟବଳ ଦେଖାଇ ବନ୍ଦୀ କରିବାକୁ ଚେଷ୍ଟା କରୁଛ ? ଛିଃ...ଛିଃ.. ଟିକିଏ ହେଲେ ଲାଜ ଲାଗୁନି ? ନିଜକୁ ବନ୍ଦୀ କରାଇଲେ ସିନା ଜାଣନ୍ତ ଦୁଃଖ କେଉଁଠି ଅଛି । ଠିକ୍ ଅଛି, ମତେ ଏକୁଟିଆ ବନ୍ଦୀକର ତ ଦେଖିବା ଯଦି ତମର ପ୍ରକୃତରେ ଦମ୍ଭ ଅଛି ।''

ରାମଗୁପ୍ତ ହସି ହସି କହିଲେ- ''ମହାଦେବୀ ! ତୁମେ ମତେ ଯେତେ ଉସୁକେଇଲେ ମଧ ମୁଁ ସେଥିରେ ପଡ଼ିବି ନାହିଁ । ମୁଁ କୌଣସି ପ୍ରକାର ବିପଦ ଏଥିପାଇଁ ଉଠାଇବାକୁ ଚାହେଁ ନାହିଁ । ତୁମେ ହାତ ଛଡ଼େଇ ଦୌଡ଼ି ପଳାଇବାପାଇଁ ଚେଷ୍ଟାକଲ ଦେଖିବା । ଆରେ ସୈନିକମାନେ ! ଦେଖୁଚ କ'ଣ ? ୟା'ଙ୍କୁ ବନ୍ଦୀ କର ।''

ରାମଗୁପ୍ତଙ୍କର ଆଦେଶରେ ସୈନିକମାନେ ଧ୍ରୁବଦେବୀଙ୍କୁ ଚତୁର୍ଦ୍ଦିଗରୁ ଘେରିଗଲେ । ନିଜକୁ ଏଭଳି ଏକ ଅଭାବନୀୟ ପରିସ୍ଥିତିରେ ଦେଖି ରାଜକୁମାରୀ ଧ୍ରୁବଦେବୀ ଅଧିକ ପାଟିତୁଣ୍ଡ କରିବା ଏଠାରେ ଉଚିତ ନୁହେଁ ବୋଲି ଭାବିଲେ ଓ ନୀରବ ରହିଲେ । ମନେ ମନେ କିନ୍ତୁ ଅତ୍ୟଧିକ ଘୃଣା କରିବାକୁ ଲାଗିଲେ ।

ଧ୍ରୁବଦେବୀ ନୀରବ ରହିବା ଦେଖି ରାମଗୁପ୍ତ ଭାବିଲେ ଯେ ବୋଧହୁଏ ସେ ଭୟଭୀତ ହୋଇଯାଇଛନ୍ତି । ତେଣୁ ଧ୍ରୁବଦେବୀଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଲେ- ''ଦେବୀ ! ଆଦୌ ଡରନ୍ତୁ ନାହିଁ । କେବଳ ଆଜି ରାତିକ ପାଇଁ ତମକୁ ବନ୍ଦୀଶାଳାରେ କଟାଇବାକୁ ପଡ଼ିବ । ଆସନ୍ତାକାଲି ପ୍ରାତଃ କାଳରେ ମୋର ରାଜାଭିଷେକ ହେବ । ତମେ ତ ମୋ ହୃଦୟରେ ଏମିତି ବନ୍ଦିନୀ ହୋଇ ରହିଛ । ମୁଁ ଆଶା କରୁଛି ଯେ ବନ୍ଦୀଶାଳାରେ ତମକୁ କିଛି କଷ୍ଟ ଉଠାଇବାକୁ ପଡ଼ିବନାହିଁ ।''

ମହାସମାରୋହରେ, ମହାଆଡ଼ମ୍ବରରେ ମହାନ୍ ଦିଗ୍‌ବିଜୟୀ ସମ୍ରାଟ ସମୁଦ୍ରଗୁପ୍ତଙ୍କର ଜ୍ୟେଷ୍ଠପୁତ୍ର ରାମଗୁପ୍ତଙ୍କର ରାଜ୍ୟ ଅଭିଷେକ ପର୍ବ ସମାହିତ ହେଲା । ରାଜ୍ୟ ଅଭିଷେକ ଉପଲକ୍ଷେ ଉପସ୍ଥିତ ସମସ୍ତ ଅମାତ୍ୟ, ପାରିଷଦବର୍ଗ, ଶ୍ରେଷ୍ଠୀ ବଣିକମାନଙ୍କ ସମ୍ମୁଖରେ ମହାଅମାତ୍ୟ ଶିଖରସେଣ ସମ୍ରାଟ ସମୁଦ୍ରଗୁପ୍ତଙ୍କର ମୃତ୍ୟୁକାଳୀନ ଇଚ୍ଛାପତ୍ର ସନନ୍ଦ ପଢ଼ି ଶୁଣାଇଲେ । ଇଚ୍ଛାପତ୍ରର ସମସ୍ତ ବିଷୟ ଅବିକଳ ଥିଲା, କିନ୍ତୁ ତଫାତ୍ ଏତିକି ଜାଣିଶୁଣି ମହାମନ୍ତ୍ରୀ ଶିଖରସେଣ କରିଦେଇଥିଲେ, ଯାହାକି ରାଜ୍ୟର ଉତ୍ତରାଧିକାରୀ କୁମାର ଚନ୍ଦ୍ରଗୁପ୍ତଙ୍କୁ ପ୍ରଦାନ କରାଗଲା ସ୍ଥାନରେ ରାମଗୁପ୍ତଙ୍କ ନାମ ଲେଖି ଦିଆଯାଇଥିଲା ।

ଏହି ଇଚ୍ଛାପତ୍ର ପାଠ କଲାବେଳେ କୁମାର ଚନ୍ଦ୍ରଗୁପ୍ତଙ୍କୁ ଲୌହଶୃଙ୍ଖଳରେ ଆବଦ୍ଧ କରାଯାଇ ରାଜସଭାରେ ଉପସ୍ଥିତ କରାଯାଇଥିଲା । କୁମାର ଚନ୍ଦ୍ରଗୁପ୍ତଙ୍କ ଆଖିଆଗରେ ମହାମାତ୍ୟ ଶିଖରସେଣଙ୍କର ଷଡ଼ଯନ୍ତ୍ରର ଭୟାବହତା ସ୍ପଷ୍ଟ ହୋଇଉଠୁଥିଲା । ସେ ରୁଗ୍ଣ

ପିତା ସମୁଦ୍ରଗୁପ୍ତଙ୍କର ଅସହାୟତାକୁ ଗଭୀରଭାବରେ ବୁଝିପାରୁଥିଲେ । ପ୍ରଚଣ୍ଡ କ୍ରୋଧ ଓ କ୍ଷୋଭରେ ଚନ୍ଦ୍ରଗୁପ୍ତଙ୍କ ମୁଖ ବିବର୍ଣ୍ଣ ହୋଇଗଲା ଓ ହାତ ମୁଠା ମୁଠା ହୋଇଗଲା । ତେବେ କ'ଣ କରାଯିବ ? ସେ ଯେ ନିରୂପାୟ । ଏହି ଲୌହ ଶୃଙ୍ଖଳକୁ ଖଣ୍ଡ ଖଣ୍ଡ କରି ଛିଣ୍ଡାଇବାକୁ ସେ ବ୍ୟାକୁଳ ହୋଇଉଠୁଥିଲେ । ଶିଖରସେଣଙ୍କ କୂଟଚକ୍ରାନ୍ତ, ଦୁଃସାହସକୁ ସଭାସଦଙ୍କ ସମ୍ମୁଖରେ ନଗ୍ନ କରିଦେବାକୁ ଉଦ୍‌ଗ୍ରୀବ ହୋଇଉଠୁଥିଲେ । କୁମାର ଚନ୍ଦ୍ରଗୁପ୍ତଙ୍କର ଆଖିଆଗରେ ନାଚିଯାଉଥିଲା ସମୁଦ୍ରଗୁପ୍ତଙ୍କର ଧ୍ରୁବଦେବୀଙ୍କୁ ଦେଖିବାପରେ ତାଙ୍କୁ ରାଜବଧୂ ଭାବରେ ସ୍ୱୀକାର କରିବାର ନିରୀହ ଆହ୍ଲାଦପଣ । ତାଙ୍କର ନିସ୍ତେଜ ଶରୀରରେ ଯେମିତି ଶତ ସିଂହର ବଳ ଭରିଉଠିଥିଲା । ସେ ପରମ ସନ୍ତୋଷରେ କୁମାର ଚନ୍ଦ୍ରଗୁପ୍ତଙ୍କ ଉପରେ ବିଶାଳ ଗୁପ୍ତସାମ୍ରାଜ୍ୟର ଉତ୍ତରାଧିକାର ଦାୟିତ୍ୱ ଅର୍ପଣ କରିବା ପାଇଁ ତତ୍ପର ହୋଇଉଠୁଥିଲେ ।

ସେ ସବୁ ଆଜି ବେଶି ମନେ ପଡୁଥିଲା.... "ଆଃ ! ମୋର ପ୍ରାଣାଧିକ ପ୍ରିୟ ପିତାଶ୍ରୀ । ମୁଁ ବଡ଼ ହତଭାଗା । ଆପଣଙ୍କର ଅସୀମ ସ୍ୱପ୍ନକୁ ସାକାର କରିପାରିଲିନି । ମତେ କ୍ଷମା କରନ୍ତୁ ପିତାଶ୍ରୀ । ମତେ ଆହୁରି ଆହୁରି ଶକ୍ତିଶାଳୀ କରିବାର ଆଶୀର୍ବାଦ ଦିଅନ୍ତୁ । ଯେମିତି ମୁଁ ମହାମାତ୍ୟ ଶିଖରସେଣର ଚତୁରତାର ସମସ୍ତ ଚକ୍ରାନ୍ତକୁ ଧ୍ୱଂସ କରିଦିଏ ।"

ମହାମାତ୍ୟ ଶିଖରସେଣଙ୍କୁ ତୀର୍ଯ୍ୟକ ଦୃଷ୍ଟିରେ ବନ୍ଦୀ ଚନ୍ଦ୍ରଗୁପ୍ତ ଚାହିଁ ରହିଥିଲେ । ଶିଖରସେଣଙ୍କ ଉଦ୍ଦେଶ୍ୟରେ ଚନ୍ଦ୍ରଗୁପ୍ତଙ୍କ ଅପଲକ ନେତ୍ରର ତୀକ୍ଷଣ ଚାହାଣୀକୁ ଲକ୍ଷ୍ୟ କରି ସିଂହାସନ ଉପରେ ବସିଥିବା ରାମଗୁପ୍ତ ଭୟରେ ଥରିଉଠୁଥିଲେ । ଚନ୍ଦ୍ରଗୁପ୍ତଙ୍କ ଦୃଷ୍ଟି ରାମଗୁପ୍ତ ଉପରେ ପହଁଚି ଆସିଲାବେଳେ ରାଜ୍ୟାଭିଷେକ ଉତ୍ସବରେ ଉପସ୍ଥିତ ଅମାତ୍ୟ...ପାରିଷଦବର୍ଗ ମନେ ମନେ ଭାବୁଥିଲେ ହାୟ ସିଂହକୁ ବନ୍ଦୀ କରି ଶୃଗାଳ ଏବେ ସିଂହାସନରେ ବସିଛି । ହାୟ, ମଗଧ ସାମ୍ରାଜ୍ୟର ଭାଗ୍ୟ ! କିଏ ବା ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ବିଦ୍ରୋହ କରିପାରିବ ? ସମସ୍ତ ରାଜସଭାସଦମାନଙ୍କୁ ନୂତନ ସମ୍ରାଟ ରାମଗୁପ୍ତଙ୍କର ରାଜାଜ୍ଞା ପାଳନ କରିବା ଏବଂ ସିଂହାସନପ୍ରତି ଅନୁଗତ ରହିବା ପାଇଁ ମହାମାତ୍ୟ ଶିଖରସେଣ ଶପଥପାଠ କରାଇଲେ । ଏହାପରେ ବନ୍ଦୀ କୁମାର ଚନ୍ଦ୍ରଗୁପ୍ତଙ୍କ ଆଡ଼କୁ ଅନାଇ କହିଲେ– "କୁମାର ! ଆପଣଙ୍କର ଅଗ୍ରଜ ଶ୍ରୀମାନ ମହାରାଜାଧିରାଜ ରାମଗୁପ୍ତ ଗୁପ୍ତ ସାମ୍ରାଜ୍ୟର ମହାନ୍ ସମ୍ରାଟ ଦିବଂଗତ ଶ୍ରୀ ସମୁଦ୍ରଗୁପ୍ତଙ୍କର ଉତ୍ତରାଧିକାରୀ ରୂପରେ ମଗଧର ରାଜସିଂହାସନ ଆରୋହଣ କରିଛନ୍ତି । ଆପଣଙ୍କୁ ରାଜନିୟମ ଅନୁସାରେ ନୂତନ ରାଜାଙ୍କର ରାଜାଜ୍ଞା ପାଳନ କରିବାକୁ ହେବ ।"

ମହାମାତ୍ୟ ଶିଖରସେଣଙ୍କର ଏପରି ବକ୍ତବ୍ୟରେ କୁମାର ଚନ୍ଦ୍ରଗୁପ୍ତଙ୍କ ଓଠରେ ଏକ ବ୍ୟଙ୍ଗଭରା ହସ ଫୁଟି ଉଠିଲା । ସେ କହିଲେ- "ଅମାତ୍ୟ ଶିଖରସେଣ ! ଯାହାର ପ୍ରତିଟି ନିଃଶ୍ୱାସ ରାଜାଜ୍ଞା ଉପରେ ହିଁ ନିର୍ଭରଶୀଳ, ସେହି ବନ୍ଦୀକୁ ମଧ୍ୟ ଶପଥ ଗ୍ରହଣ କରାଇବାର ଆବଶ୍ୟକତା ଅଛି କି ?"

ରାମଗୁପ୍ତ କୁମାର ଚନ୍ଦ୍ରଗୁପ୍ତଙ୍କର କଥା ଶୁଣି ଯଥାସମ୍ଭବ ନମ୍ରତାପୂର୍ବକ କହିଲେ- "କୁମାର ! ତୁମେ ଏଭଳି ଅଯଥା କଥାଗୁଡ଼ିକ କାହିଁକି ଭାବୁଛ ? ମୁଁ ତୁମର ବଡ଼ଭାଇ । ମୁଁ ଯାହା କିଛି ବି କରୁଛି ତୁମର ମଙ୍ଗଳ ମଧ୍ୟ ସେଥିରେ ନିହିତ ଅଛି ।"

କୁମାର ଚନ୍ଦ୍ରଗୁପ୍ତ ଏକଥା ଶୁଣି ଖୁବ୍ ଯୋର୍‌ରେ ହସି ଉଠିଲେ- "ହାଃ.... ହାଃ... ହାଃ.... । ବାଃ .... କି କଥା ନ କହିଲେ ମୋର ପ୍ରିୟ ଅଗ୍ରଜ ! ମତେ ବନ୍ଦୀ କରିବାଠାରୁ ଅଧିକ ହିତକର, ମଙ୍ଗଳକର ଘଟଣା ମୋ ପାଇଁ ଆଉ କ'ଣ ହୋଇପାରିବ ଯେ ? ମୁଁ ଆପଣଙ୍କର ଏହି ଉପକାର କେବେ ହେଲେ ଭୁଲିପାରିବି ନାହିଁ, ଭ୍ରାତା ।"

ଅମାତ୍ୟ ଶିଖରସେଣ ତୋଷାମଦକାରୀ ଭଳି ଅନୁନୟ ପ୍ରକାଶ କରି କୁମାର ଚନ୍ଦ୍ରଗୁପ୍ତଙ୍କୁ କହିଲେ- "କୁମାର ! ଭଟ୍ଟାରକ ଠିକ୍ କହୁଛନ୍ତି । ପ୍ରକୃତରେ ସେ ଆପଣଙ୍କର ଉପକାର ହିଁ କରିଛନ୍ତି । ଆପଣଙ୍କର ଅଳ୍ପବୟସ ଓ ସୁକୋମଳ କାନ୍ଧକୁ କଷ୍ଟ ନଦେବା ପାଇଁ ଭଟ୍ଟାରକ ସ୍ୱୟଂ ଶାସନର ସମସ୍ତ ଭାର ଗ୍ରହଣ କରିଛନ୍ତି । ଏହାକୁ କ'ଣ ଆପଣ ଉପକାର ବୋଲି ଭାବୁନାହାନ୍ତି ? ହିନ୍ଦୁଧର୍ମରେ ସେଥିପାଇଁ କୁହାଯାଏ ଅପରର ଦାୟିତ୍ୱ ନିଜେ ବହନ କରିବା ଏକ ସର୍ବଶ୍ରେଷ୍ଠ ଉପକାର ।"

କୁମାର ଚନ୍ଦ୍ରଗୁପ୍ତ ମୁଖ ବିକୃତି ପୂର୍ବକ କହିଲେ- "ଅମାତ୍ୟ ! ଆପଣଙ୍କ ଭଳି ହିନ୍ଦୁଧର୍ମ ସଂସ୍କୃତି ବିଷୟରେ ମୋର ଏତେ ଜ୍ଞାନ ନାହିଁ କିମ୍ବା ଆପଣଙ୍କ ଭଳି ଏହିସବୁ ବିଷୟ ଉପରେ ମୋର ଗଭୀର ଅଧ୍ୟୟନ ମଧ ନାହିଁ । ବାସ୍ତବରେ ରାଜ୍ୟ ଶାସନ ଅଥବା ରାଜସୁଖର ମୋହ ମୋର କେବେ ହେଲେ ନଥିଲା । ମୁଁ ଖାଲି ଏତିକି ଜାଣିବାକୁ ଚାହେଁ ବିନା ଅପରାଧରେ ମତେ ଏଭଳି ଶୃଙ୍ଖଳବଦ୍ଧ କାହିଁକି କରାଯାଇଛି ? ମୋର ଅପରାଧ କ'ଣ ?"

ମହାମାତ୍ୟ ଶିଖରସେଣ ହିତାକାଂକ୍ଷୀ ଭଳି ଅଭିନୟ କରି କହିଲେ-"କୁମାର ! ତୁମର ସେଭଳି କିଛି ଅପରାଧ ନାହିଁ । ମଗଧ ସାମ୍ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ତୁମର ଜୀବନର ଆବଶ୍ୟକତା କିନ୍ତୁ ରହିଛି । ତୁମ ବ୍ୟତିରେକ ପାଟଳୀପୁତ୍ର ରାଜଧାନୀର ଅଭାବ ରହିଯିବ ।"

-"ଆପଣଙ୍କ ଏପରି ବାଚାଳତାର ଅର୍ଥ ମୁଁ କିଛି ବୁଝିପାରୁନାହିଁ ମହାମାତ୍ୟ ।"

ମହାମାତ୍ୟ ବ୍ୟଙ୍ଗୋକ୍ତିଭରା ହସ ତୋଳି କହିଲେ–"ବୁଝିପାରୁନାହଁ କୁମାର ? ମହାଦଣ୍ଡନାୟକ ହରିସେଣଙ୍କର ଯେପରି ରହସ୍ୟଜନକ ଭାବେ ମୃତ୍ୟୁ ଘଟିଗଲା, ତୁମର ମଧ ..."

ଚନ୍ଦ୍ରଗୁପ୍ତ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । ପ୍ରଶ୍ନ କଲେ–"ମୋର ବଧ ? ମୁଁ ତ କାହାରି ପ୍ରତି କୌଣସି ଅନାଚାର କିମ୍ବା ଅନ୍ୟାୟ କରିନାହିଁ ।"

ଶିଖରସେଣ ଅଟ୍ଟହାସ କରି କହିଲେ–"ମହାଦଣ୍ଡନାୟକ କାହାରି ପ୍ରତି କୌଣସି ଅନାଚାର ବା ଅବିଚାର କରିନଥିଲେ । ତଥାପି ତାଙ୍କର ରହସ୍ୟଜନକ ଭାବେ ମୃତ୍ୟୁ କାହିଁକି ଘଟିଲା ?"

ଚନ୍ଦ୍ରଗୁପ୍ତ ରୋଷଭରା ଦୃଷ୍ଟିରେ ମହାମାତ୍ୟ ଶିଖରସେଣଙ୍କୁ ଚାହିଁ କହିଲେ–"ଏହି ହତ୍ୟାକାଣ୍ଡର ଯିଏ ରହସ୍ୟଜନକ ହତ୍ୟାକାରୀ, ତାହାର ଛଳକପଟ କେମିତି ବା ଜାଣିହେବ, ମହାମାତ୍ୟ ?"

ମହାମାତ୍ୟ ପାରିଷଦବର୍ଗଙ୍କ ଆଡ଼କୁ ଦୃଷ୍ଟି ପହଁରାଇ, କିଛି କ୍ଷଣ ନୀରବ ରହି କହିଲେ–"କୁମାର ଚନ୍ଦ୍ରଗୁପ୍ତଙ୍କୁ ବର୍ତ୍ତମାନ ଶୃଙ୍ଖଳମୁକ୍ତ କରାଯାଉ ।"

ସିଂହାସନ ଉପରେ ବସି ଏକ ଅଜ୍ଞାତଭୟରେ ଥରୁଥିବା ରାମଗୁପ୍ତ ଧୀରସ୍ୱରରେ କହିଲେ–"ମହାମାତ୍ୟ ! ଏ କ'ଣ ? ଚନ୍ଦ୍ରଗୁପ୍ତ ଯଦି ଶୃଙ୍ଖଳମୁକ୍ତ ହୋଇ ମୋତେ ଆକ୍ରମଣ କରିବସେ ?"

ମହାମାତ୍ୟ ମଧ ଧୀରକଣ୍ଠରେ କହିଲେ–"ଆପଣ ନିଶ୍ଚିନ୍ତ ରୁହନ୍ତୁ ଭଟ୍ଟାରକ ! କୁମାର ଚନ୍ଦ୍ରଗୁପ୍ତ ଆମ୍ଭମାନଙ୍କ ପରି ହୀନମଣ୍ୟ ବ୍ୟକ୍ତି ନୁହଁନ୍ତି । ପଶୁରାଜ ସିଂହ ସବୁବେଳେ ତାର ଶତ୍ରୁପକ୍ଷକୁ ହୁଂକାର ଛାଡ଼ି ହିଁ ଆକ୍ରମଣ କରିଥାଏ ।"

ରାମଗୁପ୍ତ ଜିଜ୍ଞାସାଭରା କଣ୍ଠରେ ପଚାରିଲେ–"ହଁ, ସିଂହ ଯଦି ଆକ୍ରମଣ ପୂର୍ବରୁ ହୁଂକାର ଛାଡ଼ିବ ତେବେ କଣ ତୁରନ୍ତ ସିଂହକୁ ବନ୍ଦୀ କରାଯିବ ନା ମହାମାତ୍ୟ ?"

ମହାମାତ୍ୟ କହିଲେ–"ହଁ, ଭଟ୍ଟାରକ ।"

ରାମଗୁପ୍ତ ଓ ମହାମାତ୍ୟ ଯେମିତି ଇସାରାପୂର୍ଣ୍ଣ ଭାବେ ଧୀରକଣ୍ଠରେ କଥାବାର୍ତ୍ତା ହେଉଥିଲେ, ରାଜସଭାରେ ଉପସ୍ଥିତ ଥିବା ଅମାତ୍ୟ, ଶ୍ରେଷ୍ଠୀ, ସାମନ୍ତ ଓ ବଣିକ ଆଦି ସଭାସଦ୍‌ବର୍ଗ କିଛି ଶୁଣିପାରୁନଥିଲେ କିମ୍ବା ବୁଝିପାରୁନଥିଲେ ।

ଏହି ରାଜ୍ୟାଭିଷେକ ଉତ୍ସବରେ ପ୍ରଭୁତ୍ୱ ଜାହିର କରିଥିବା ମହାମାତ୍ୟ ଶିଖରସେଣ ଚନ୍ଦ୍ରଗୁପ୍ତଙ୍କୁ ଉଦ୍ଦେଶ୍ୟ କରି କହିଲେ–"କୁମାର ! ଏବେ ମୋ ସହିତ ଆଲୋଚନା କଲାବେଳେ

ଭଟ୍ଟାରକ୍ ରାମଗୁପ୍ତ କହୁଛନ୍ତି ତୁମେ ଯଦି ମଗଧ ସିଂହାସନ ଓ ଭଟ୍ଟାରକ ରାମଗୁପ୍ତଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିବ, ତେବେ ତୁମକୁ ତୁମର ଅଧିକାର ଓ କ୍ଷମତା ସେ ଫେରାଇ ଦେବାକୁ ପ୍ରସ୍ତୁତ ଅଛନ୍ତି ।''

କୁମାର ଚନ୍ଦ୍ରଗୁପ୍ତଙ୍କ ମୁଖମଣ୍ଡଳରେ ତୀବ୍ର ଘୃଣାର ରେଖାମାନ ଫୁଟିଉଠିଲା ଓ ସେ ଦୃଢ଼ ସ୍ୱରରେ କହିଲେ–''ମହାମାତ୍ୟ ! ମୁଁ ପ୍ରଥମରୁ ସ୍ପଷ୍ଟ କରିଦେଇଛି–ମୋର ଶାସନ କ୍ଷମତା ବା ରାଜସୁଖ ପାଇଁ କୌଣସି ଲାଳସା କିମ୍ବା କାମନା ନାହିଁ । ରାଜଦଣ୍ଡ ଯାହାର ହାତରେ ରହୁନା କାହିଁକି ତାକୁ ନ୍ୟାୟଦଣ୍ଡର ସୀମାରେଖା ମଧ୍ୟରେ ଚାଲିବାକୁ ହେବ । ପ୍ରଜାଙ୍କ ସୁଖସମୃଦ୍ଧି ହିଁ ମୋର ଏକମାତ୍ର କାମ୍ୟ । ମୁଁ ମଧ ଶପଥ କରି ଏଠାରେ କହୁଛି, ରାଜାଜ୍ଞା ଯଦି ପ୍ରଜାହିତ ପାଇଁ ଅନୁକୂଳ ଓ ସ୍ୱର୍ଗତ ସମ୍ରାଟ ସମୁଦ୍ରଗୁପ୍ତଙ୍କ ମର୍ଯ୍ୟାଦାନୁକୂଳ ହେବ, ତେବେ ମୁଁ ସକଳ ତ୍ୟାଗ କରିବା ସହିତ ସହର୍ଷ ପାଳନ କରିବି, ଅନ୍ୟଥା....''

–''ହଁ, ହଁ, କୁହ କୁମାର ଚନ୍ଦ୍ରଗୁପ୍ତ ! ଅନ୍ୟଥା ପୁଣି କ'ଣ ?'' ରାମଗୁପ୍ତ ବ୍ୟଙ୍ଗ କରି ପଚାରିଲେ ।

ଚନ୍ଦ୍ରଗୁପ୍ତ ଦୃଢ଼ତାର ସହିତ କହିଲେ–''ଅନ୍ୟଥା, ମୋ ଦ୍ୱାରା ଯାହା ସମ୍ଭବ ହେବ ତାହା କରିବି । ଆବଶ୍ୟକ ପଡ଼ିଲେ ବ୍ୟଭିଚାରୀ, ଭ୍ରଷ୍ଟାଚାରୀ ରାଜସତ୍ତା ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାକୁ ବାଧ ହେବି ।''

–''ଏହାର କୌଣସି ଆବଶ୍ୟକତା ନାହିଁ, କୁମାର । ନିଜ ଅଗ୍ରଜ ରାମଗୁପ୍ତଙ୍କ ଉପରେ ବିଶ୍ୱାସ ଓ ଭରସା ରଖିବା ଉଚିତ ।''

କୁମାର ଚନ୍ଦ୍ରଗୁପ୍ତ ଏକ ଦୀର୍ଘଶ୍ୱାସ ଟାଣି କହିଲେ–''ବିଶ୍ୱାସ ? ଆଜି, ଏଇଠି ମୋର ନିଜ ଉପରେ ସୁଦ୍ଧା ବିଶ୍ୱାସ ଆସୁନାହିଁ । ମଗଧ ସାମ୍ରାଜ୍ୟର ମହାବିକ୍ରମଶାଳୀ ମହାମାତ୍ୟ ଶିଖରସେଣ ! ମୁଁ ଅନ୍ୟକୁ ଅବିଶ୍ୱାସ କରିବାକୁ ଚାହୁଁନାହିଁ । ମୋ ମଗଧ ସାମ୍ରାଜ୍ୟର ପ୍ରଜାକୁଳ ଓ ସମ୍ରାଟଙ୍କ ପାଖରେ ଗୋଟିଏ ଯାଚନା ରହିଛି । ଯଦି ତାହା ପୂରଣ ହୋଇଯିବ, ତେବେ ମୋ ପ୍ରତି ମହାମାତ୍ୟ ଓ ଭଟ୍ଟାରକଙ୍କର ଉପକାର ହେଲା ବୋଲି ଜାଣିବି ।''

ମହାମାତ୍ୟ ଶିଖରସେଣ ଓ ରାମଗୁପ୍ତ ଦୁହେଁ ଏକ ସଂଗେ ଚମକି ପଡ଼ିଲେ । ମହାମାତ୍ୟ ଭାବିଲେ–କିଏ ଜାଣେ ଚନ୍ଦ୍ରଗୁପ୍ତ କ'ଣ ଚାହୁଁଛନ୍ତି । ରାଜ୍ୟଶାସନ ସୁଖ ତ କାମନା କରୁନାହାନ୍ତି ବୋଲି ଆଗରୁ ସ୍ପଷ୍ଟ କରିସାରିଛନ୍ତି । ତେବେ ସେ ମାଗିବେ କ'ଣ ? ସଂଶୟ ନିବାରଣ କରିବା ପାଇଁ ଶିଖରସେଣ ହିଁ ପାଟି ଖୋଲିଲେ–''କୁହ କୁମାର, ତୁମେ କଣ ଚାହୁଁଛ ?''

ଚନ୍ଦ୍ରଗୁପ୍ତ ବ୍ୟଙ୍ଗ ହସ ଚୋଳ ପଚାରିଲେ-'ମିଳିବ ତ ?''

କୁମାର ଚନ୍ଦ୍ରଗୁପ୍ତଙ୍କ ତେଜୋଦୀପ୍ତ ଦୃଷ୍ଟି ସହିତ ଦୃଷ୍ଟି ମିଳାଇ ମହାମାତ୍ୟ ଧୀର ସ୍ୱରରେ କହିଲେ-''ଚେଷ୍ଟା କରାଯିବ ।''

-''ମୋତେ, ମୋର ଧ୍ରୁବଦେବୀ ଆବଶ୍ୟକ ।''

-''ଧ୍ରୁବଦେବୀ ? କିନ୍ତୁ ଧ୍ରୁବଦେବୀତ ଗୁପ୍ତକୁଳର ବଧୂ ଭାବରେ...''

-''ମୁଁ ମଧ୍ୟ ଗୁପ୍ତକୁଳର ସଦସ୍ୟ ପୁଣି ସମ୍ରାଟ ସମୁଦ୍ରଗୁପ୍ତଙ୍କ ପୁତ୍ର । ରାଜ୍ୟଶାସନରୁ ମୁଁ ବଂଚିତ ହେଲେ ସୁଦ୍ଧା ଗୁପ୍ତବଂଶର ଅଧିକାରରୁ ବଂଚିତ ହୋଇପାରିବି ନାହିଁ ।''

ମହାମାତ୍ୟ ଶିଖରସେଣ ରାଜଦରବାର ଉପରେ ନିସ୍ତେଜ ଦୃଷ୍ଟି ପହଁରାଇ ଆଣିଲେ । ଚତୁର୍ଦ୍ଦିଗ ତାଙ୍କୁ ଯେମିତି ଅନ୍ଧକାରମୟ ଦେଖାଗଲା । ହତାଶାଭରା କଣ୍ଠରେ କହିଲେ-''ନାଁ, କୁମାର ! କଥା ସେୟା ନୁହେଁ । ହଁ, ଯଦି ତୁମେ ଦିବଂଗତ ମହାଭଟ୍ଟାରକ ସମୁଦ୍ରଗୁପ୍ତଙ୍କ ଶେଷଇଚ୍ଛାକୁ ଅନାଦର କରିବାକୁ ଚାହୁଁଥାଅ, ତେବେ ତୁମକୁ ଧ୍ରୁବଦେବୀଙ୍କୁ ସମର୍ପିତ କରାଯାଇପାରିବ ।''

ଚନ୍ଦ୍ରଗୁପ୍ତ ଆଶ୍ଚର୍ଯ୍ୟ ଭାବରେ ପ୍ରଶ୍ନ କଲେ-''ପରମଭଟ୍ଟାରକଙ୍କ ଅନ୍ତିମ ଇଚ୍ଛା କ'ଣ ଥିଲା ?''

ରାଜଦରବାରରେ ଉପସ୍ଥିତ ସକଳ ସଭାସଦ୍‌ଙ୍କ ଉପରେ ଦୃଷ୍ଟି ନିକ୍ଷେପ କଲାପରେ ଚନ୍ଦ୍ରଗୁପ୍ତଙ୍କ ଆଖି ସହିତ ଆଖି ମିଳାଇ ମହାମାତ୍ୟ କହିଲେ-''ମହାମହିମ ମଗଧ ସମ୍ରାଟ, ପରମଭଟ୍ଟାରକ ସମୁଦ୍ରଗୁପ୍ତ ତାଙ୍କ ଶେଷ ସମୟ ବେଳାରେ ମୋତେ ନିଜେ କହିଥିଲେ ମୋ ପରେ ରାମଗୁପ୍ତ ମଗଧର ପରବର୍ତ୍ତୀ ସମ୍ରାଟ ହେବାକୁ ଯାଉଥିବାରୁ କୁଳାଚାର ଦୃଷ୍ଟିରୁ ଜ୍ୟେଷ୍ଠକୁମାରଙ୍କୁ ଧ୍ରୁବଦେବୀଙ୍କୁ ଅର୍ପଣ କରାଯିବା ଉଚିତ ।''

ଚନ୍ଦ୍ରଗୁପ୍ତ କ୍ରୋଧ ଜର୍ଜରିତ କଣ୍ଠରେ କହିଲେ-''ଏହା କଣ ମୋର ପିତାଙ୍କର ଶେଷ ଇଚ୍ଛା ଥିଲା ନା ଆଉ କିଛି ? ଯୁଦ୍ଧଭୂମିରେ ଯେଉଁ ସନ୍ଧି ହୋଇଥିଲା, ସେହି ସନ୍ଧି ଅନୁସାରେ ଧ୍ରୁବଦେବୀଙ୍କୁ ମୋତେ ରାଜା ନାଗସେଣ ସମର୍ପଣ କରିଛନ୍ତି ।''

ମହାମାତ୍ୟ ଶକୁନିର ହସ ଚୋଳି କହିଲେ-''କୁମାର ! ମଗଧ ସାମ୍ରାଜ୍ୟର ଚାଷୀକୁଳ ଯେଉଁ ଫସଲ ଉତ୍ପାଦନ କରିଥାନ୍ତି, ସେମାନେ କଣ ସବୁ ଖାଇଥାନ୍ତି ?''

ଚନ୍ଦ୍ରଗୁପ୍ତ ଅଟ୍ଟହାସ୍ୟ କରି କହିଲେ-''ମହାମାତ୍ୟ ଆପଣ ଅନ୍ୟାୟ କରୁଛନ୍ତି । ଅନୀତି କଥା କହୁଛନ୍ତି ।''

ମହାମାତ୍ୟ କହିଲେ–''ସମ୍ରାଟଙ୍କର ଅନ୍ତିମଇଚ୍ଛା ଥିଲା, ରାମଗୁପ୍ତ ମଗଧ ସିଂହାସନର ଅଧିକାରୀ ହେବା ସହିତ ଧ୍ରୁବଦେବୀଙ୍କ ଉପରେ ମଧ୍ୟ ତାଙ୍କର ଅଧିକାର ରହିବ ।''

ଚନ୍ଦ୍ରଗୁପ୍ତ ପ୍ରଶ୍ନ କଲେ–''ଏହାର ପ୍ରମାଣ କ'ଣ ?''

ଶିଖରସେଣ କହିଲେ–''ଏହି ପ୍ରମାଣର ମୂକସାକ୍ଷୀ ତ ମୁଁ ନିଜେ । ଅଧିକ ପ୍ରମାଣ ଯଦି ଚାହୁଁଥାଅ, ତେବେ ସମ୍ରାଟ ସମୁଦ୍ରଗୁପ୍ତ ଏଠାରେ ଆଜି ଉପସ୍ଥିତ ଥିଲେ ସ୍ପଷ୍ଟ କରିଦିଅନ୍ତେ, କିନ୍ତୁ ସେ ତ ଏବେ ମହାକାଳର କରାଳ ଗ୍ରାସରେ ବିଲୀନ ।''

ମହାଅମାତ୍ୟ ଶିଖରସେଣଙ୍କ ଛଦ୍ମରୂପ କୁମାର ଚନ୍ଦ୍ରଗୁପ୍ତଙ୍କ ଆଖି ଆଗରେ ଉନ୍ମୁକ୍ତ ହୋଇସାରିଥିଲା । କିନ୍ତୁ ପରିସ୍ଥିତି ପ୍ରତିକୂଳ ଅବସ୍ଥାରେ ଥିଲା । ବିରୋଧ ବା ଅଧିକ ବିଦ୍ରୋହ କରିବାର ପରିଣତି ହେବ ପୁନଶ୍ଚ ବନ୍ଦୀ ଜୀବନ । କୁମାର ଚନ୍ଦ୍ରଗୁପ୍ତ ସେହି ବିପଦକୁ ବରଣ କରିବା ଅବସ୍ଥାରେ ନଥିଲେ । ବରଂ ସକଳ ଘାତ–ପ୍ରତିଘାତ, ଦୁଃଖ ଯନ୍ତ୍ରଣା ମଧ୍ୟରେ ପ୍ରାଣରକ୍ଷା କରିବା ତାଙ୍କ ଉଦ୍ଦେଶ୍ୟ ଥିଲା । କଞ୍ଚାମାଟିର ହାଣ୍ଡି ଯେତେ ସୁନ୍ଦର–ସୁଦୃଢ଼ ଦେଖାଯାଉଥିଲେ ସୁଦ୍ଧା ତାହା ପୁଣି ମାଟିରେ ମିଶିବା ସୁନିଶ୍ଚିତ ।

ରାଜ୍ୟ ବ୍ୟକ୍ତି ପାଇଁ ନୁହେଁ ବରଂ ବ୍ୟକ୍ତି ହିଁ ରାଜ୍ୟ ପାଇଁ ଉଦ୍ଦିଷ୍ଟ ।

ଶିଖରସେଣ ରାମଗୁପ୍ତଙ୍କୁ ଚାହିଁ କୁଟିଳ ହସ ହସୁଥିବାବେଳେ କୁମାର ଚନ୍ଦ୍ରଗୁପ୍ତ ଦୀର୍ଘଶ୍ୱାସ ଟାଣି ଝଡ଼ବେଗରେ ରାଜଦରବାରରୁ ଅପସାରିତ ହୋଇଗଲେ ।

ରାଜଭବନର ଅନ୍ତଃପୁରରେ ବିବାହ ମଣ୍ଡପ ।

ବିବାହବେଦୀ ଉପରେ ମୁଖ ଅବନତ କରି ବସିଥିଲେ ଧ୍ରୁବଦେବୀ । ଆଖିର ଅଶ୍ରୁଧାର ଚିବୁକ ଉପରେ ବୋହି ଯାଉଥାଏ । ନିଜର ଏହି ଅସହାୟ ଅବସ୍ଥାରେ ମନଖୋଲି କାନ୍ଦିବା ପାଇଁ ମଧ୍ୟ ତାଙ୍କର ଉପାୟ ନଥିଲା । ପାଖରେ ବସିଥିଲା ଅତିପ୍ରିୟ ସହଚରୀ ତପସ୍ୟା । ତପସ୍ୟାର ଆଖିକୁ ଅନାଇଲେ ଧ୍ରୁବଦେବୀ । ତପସ୍ୟା ଆଖିର ଇଙ୍ଗିତରେ ଜଣାଇ ଦେଉଥିଲା ତାଙ୍କୁ–'ଧୈର୍ଯ୍ୟ ଧରନ୍ତୁ । ସବୁ ଠିକ୍ ହୋଇଯିବ ।' ପୁରୋହିତ ବେଦମନ୍ତ୍ର ଉଚ୍ଚାରଣ ପୂର୍ବକ ହୋମରେ ଆହୁତି ଦେଉଥିଲେ । ପାଖରେ ଅମାତ୍ୟ ବସିଥିଲେ । ତାଙ୍କ ପଛକୁ ରାଜ୍ୟର ନିମନ୍ତ୍ରିତ ସଭାସଦମାନେ ଉପସ୍ଥିତ ଥିଲେ । କେବଳ ଦୁଇଜଣ ଅନୁପସ୍ଥିତ ଥିଲେ ।

ସେମାନଙ୍କ ମଧ୍ୟରୁ ପ୍ରଥମ ବ୍ୟକ୍ତି ହେଲେ କୁମାର ଚନ୍ଦ୍ରଗୁପ୍ତ । ହେଲେ ସେ କେମିତି ବା ଉପସ୍ଥିତ ରହିଥାନ୍ତେ ଯେ । ଭାଗ୍ୟ ତାଙ୍କ ସହିତ ଯେଉଁ କ୍ରୁର ଅଟ୍ଟହାସ୍ୟ କରିଛି, ସେଥିରେ ସେ କେମିତି ବା ବିବାହ ଉତ୍ସବ ନିଜ ଦୃଷ୍ଟି ସମ୍ମୁଖରେ ଦେଖିପାରିଥାନ୍ତେ ? କୁମାର ଚନ୍ଦ୍ରଗୁପ୍ତ ନିଜ ମହଲର କକ୍ଷ ମଧ୍ୟରେ ବିଛଣାରେ ଅତ୍ୟନ୍ତ ଅଶ୍ୱସ୍ତି ଭାବରେ ଆଖିବନ୍ଦ କରି ଶୋଇଥାନ୍ତି, ତାଙ୍କୁ ମନେ ହେଉଥାଏ ଯେମିତି ସେ ଜୀବନର ସବୁ ସଂଗ୍ରାମରେ ସବୁଦିନ ପାଇଁ ହାରିଯାଇଛନ୍ତି ।

ସତକୁ ସତ କୁମାର ଚନ୍ଦ୍ରଗୁପ୍ତ ହାରିଗଲେ ଯେ । ମହାକାନ୍ତାରରୁ ବିଜୟପରେ ନିଜର ପ୍ରିୟ ନୀଳଘୋଡ଼ା ଶୈବାଳକ ଉପରେ ଆରୋହଣ କରି ଫେରୁଥିବା ବେଳେ ସେହି ସମୟର ସେ ଅପୂର୍ବ ଦୃଶ୍ୟକୁ କ'ଣ କେବେହେଲେ ପାଶୋରି ପାରିବେ ? ଢ଼ଳ ଢ଼ଳ କଥାକୁହା ଆଖିର ମୌନ ଆବେଦନ ଯାହା ପାଲିଙ୍କିର ସୂକ୍ଷ୍ମ ନରମ ପର୍ଦ୍ଦା ଭେଦ କରି ସିଧାସଳଖ କୁମାର ଚନ୍ଦ୍ରଗୁପ୍ତଙ୍କର ଆଖିରେ ମିଶିଯାଉଥିଲା । ତାହାର ପ୍ରତିକ୍ରିୟାରୁ କୁମାରଙ୍କର ଯେଉଁ ଅନୁଭୂତ ପ୍ରେମାନୁଭୂତି ଜାତ ହେଉଥିଲା ସେହି ଅବର୍ଣ୍ଣନୀୟ ଉଷ୍ମତାକୁ ସେ କ'ଣ ନିଜଠାରୁ ଅଲଗା କରିପାରିଛନ୍ତି ? ଅଥଚ ସେହି ସୁନ୍ଦରୀ ପ୍ରେମମୟୀ ରାଜକୁମାରୀ ଧ୍ରୁବଦେବୀଙ୍କର ସାହଚର୍ଯ୍ୟ ଲାଭ କରିବା ଆଜି ତାଙ୍କ ପାଇଁ ଆକାଶକୁସୁମ ଭଳି ହୋଇଯାଇଛି । ଧ୍ରୁବଦେବୀଙ୍କୁ ନିଜ ହୃଦୟର ହୃଦୟେଶ୍ୱରୀ କରିବା ପାଇଁ କି ଯେ କୃଚ୍ଛ୍ର ସାଧନା କୁମାର ଚନ୍ଦ୍ରଗୁପ୍ତ କରିଥିଲେ ତାଙ୍କ ହାତ ଧରି ଜୀବନର ଚଲାପଥକୁ କୁସୁମିତ କରିବାର ଅସୁମାରି ସ୍ୱପ୍ନ ଦେଖିଥିଲେ, ସେସବୁ ଚୁରମାର ହୋଇଗଲା । "ଆହା... ମୋର ପ୍ରାଣପ୍ରିୟା ଧ୍ରୁବ ! ମୁଁ ତୁମପାଇଁ କିଛି କରିପାରୁନି । ମୋର ଅସହାୟତା ପାଇଁ ମତେ ଭାରି ଦୁଃଖ ଲାଗୁଛି ।"

ଦ୍ୱିତୀୟ ଅନୁପସ୍ଥିତ ବ୍ୟକ୍ତିଟି ଥିଲେ ରାମଗୁପ୍ତ । ଯାହାଙ୍କ ହାତରେ ଦୁର୍ଲ୍ଲଭ ହୀରାମଣି ପଡ଼ିଯାଇଛି । ସେହି ଦୁର୍ଲ୍ଲଭତାର ପରଖ କରିବାର ମାନସିକତା ରାମଗୁପ୍ତଙ୍କର ନାହିଁ କି, ନଥିଲା । ଯିଏ କ୍ଲୀବ, ଅସମର୍ଥ ସେ କ'ଣ ନାରୀତ୍ୱର ଆତ୍ମସମ୍ମାନକୁ ବୁଝିପାରିବ ? ଏପଟେ ବିବାହର ଆୟୋଜନ ଚାଲିଛି, ଅଥଚ ମହାରାଜ ରାମଗୁପ୍ତ ନିଜର ରଙ୍ଗଶାଳାରେ ହିଞ୍ଜଡ଼ା ଓ ସୁନ୍ଦରୀ ଯୁବତୀମାନଙ୍କ ସହିତ ଯୌନଲୀଳାରେ ବ୍ୟସ୍ତ ଥାନ୍ତି । ନିଜର ରାଜ୍ୟାଭିଷେକ ଏବଂ ଧ୍ରୁବଦେବୀଙ୍କ ଭଳି ନାରୀକୁ ନିଜର ପତ୍ନୀ ଭାବରେ ପାଇବାର ବିଜୟ ଉଲ୍ଲାସ ପାଳନ ପାଇଁ ହିଞ୍ଜଡ଼ା ଗୋଷ୍ଠୀର ପ୍ରମୁଖ ନେତ୍ରୀ କାମାଙ୍ଗିନୀ ଓ ତା'ର ଦଳ ସହିତ ମତ୍ତ ଥାନ୍ତି । ରଙ୍ଗଶାଳାକୁ ଅତ୍ୟନ୍ତ ଲୋଭନୀୟ ଭାବରେ ସଜ୍ଜିତ କରିଦିଆଯାଇଥାଏ । ଯେମିତି ଷୋଡ଼ଶୀ ରୂପସୀଟିଏ ତା'ର ଅନିନ୍ଦ୍ୟ ସୌନ୍ଦର୍ଯ୍ୟମୟ ଯୌବନର ପସରା ଧରି ରଙ୍ଗଶାଳାକୁ ଆମନ୍ତ୍ରଣ କରୁଛି ।

ହିଞ୍ଜଡ଼ା କାମାଙ୍ଗିନୀ ନିଜକୁ ଅତ୍ୟନ୍ତ ରାଜକୀୟ ଢ଼ଙ୍ଗରେ ସଜାଇଥାଏ । ଜଣେ ମହାରାଣୀ ଭଳି ବହୁମୂଲ୍ୟ ପୋଷାକ ପରିଧାନ କରିଥାଏ । ମୁଣ୍ଡରେ ନକଲି ବାଳ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥାଏ । କପାଳରେ ବଡ଼ ଗୋଟିଏ ସିନ୍ଦୂରଟୋପା, ଦୁଇ ଆଖିରେ ମୋଟା କଜ୍ଜଳ ଗାର, ହାତରେ ଶଙ୍ଖା ଓ ବେକରେ ଅଳଙ୍କାର ପରିଧାନ କରିଥାଏ । ରଙ୍ଗଶାଳାକୁ ସ୍ୱଚ୍ଛ ଆଲୋକରେ ସଜାଯାଇଥାଏ । ମର୍ଦ୍ଦଳ, ଝାଂଜ, କରତାଳିର ଉଗ୍ର ବାଦନ ପରିବେଶକୁ ଉତ୍ତେଜନାମୟ କରିଦେଇଥାଏ । ମହରାଜ ରାମଗୁପ୍ତ ରଙ୍ଗଶାଳାର ମଝିରେ ଏକ ବିଶାଳ ଶିଶୁକାଠର ପଲଙ୍କ ଉପରେ ଅର୍ଦ୍ଧନଗ୍ନ, ଅର୍ଦ୍ଧଶାୟିତ ଅବସ୍ଥାରେ ଉପବେଶନ କରିଥାନ୍ତି । ହିଞ୍ଜଡ଼ାମାନେ ନାରୀବେଶରେ ସଜ୍ଜିତ ହୋଇ ନୃତ୍ୟରେ ମାତିଥାନ୍ତି । ମଦିରା ଭାଣ୍ଡ ଖୋଲା ହୋଇଯାଇଥାଏ । ଢକଢ଼କ କରି ମଦିରା ପାତ୍ରରୁ ମଦିରା ପିଉଥାନ୍ତି ରାମଗୁପ୍ତ ଓ ହିଞ୍ଜିଡ଼ାମାନେ । କାମାଙ୍ଗିନୀର ମଦମତ୍ତ ନୃତ୍ୟ ରଙ୍ଗଶାଳାକୁ ଆହୁରି ମାଦକମୟ କରିଦେଉଥାଏ । କାମାଙ୍ଗିନୀ ମହାରାଜ ରାମଗୁପ୍ତଙ୍କର ପଲଙ୍କ ପାଖକୁ ଆସି କହୁଥାଏ– "ମହାରାଜ ଆପଣଙ୍କ ପାଦତଳେ ଏଥର ସବୁଦିନ ନିବେଦିତ ହେବେ ମଗଧ ସାମ୍ରାଜ୍ୟ ଅଧୀନ , ରାଜ୍ୟଗୁଡ଼ିକର ମହାସୁନ୍ଦରୀ, ରୂପସୀ, ସୁରଙ୍ଗିନୀ, ତରଙ୍ଗିଣୀଗଣ । କାମାଙ୍ଗିନୀର ସାଧ୍ୟ ଅନୁସାରେ ମଗଧର ଯେକୌଣସି କିଶୋରୀ ତା'ର ପ୍ରଥମ ଯୌବନ ପ୍ରାପ୍ତି ପୂର୍ବରୁ ଏଇଠି ଆପଣଙ୍କ ସମ୍ମୁଖରେ ତା'ର କୌମାର୍ଯ୍ୟ ଉତ୍ସର୍ଗ କରିବ । ଏଇ..... ସୁନ୍ଦରୀ... ହେଇ ମୂର୍ତ୍ତିଭଳିଆ ଠିଆ ହୋଇଛୁ କ'ଣ । ନାଚ....ନାଚ.... ଖୋଲ ତୋର ଓଢ଼ଣୀ.... । ଆରେ... ବଜାଅରେ ମର୍ଦ୍ଦଳ ଝାଞ୍ଜ.... ସବୁ ଏକାକାର କରିଦିଅରେ .... ମହାରାଜଧିରାଜ ମହାଶକ୍ତିଧର ମଗଧର ସମ୍ରାଟ ରାମଗୁପ୍ତଙ୍କର ଜୟ... ଜୟ....ଜୟ.... ।" ଜୟ ଜୟକାର ଧ୍ୱନିରେ ଗୁରୁଗମ୍ଭୀର ନାଦ ରଙ୍ଗଶାଳାକୁ ଝଲମଲ କରିଦେଉଥିଲା ।

ମହାରାଜ ରାମଗୁପ୍ତ ସେପରି ଅର୍ଦ୍ଧଚେତନ ଅବସ୍ଥାରେ ଥାଇ କାମାଙ୍ଗିନୀକୁ କହିଲେ– "କାମାଙ୍ଗିନୀ ! ମତେ ଆହୁରି ଆହୁରି ମଦିରା ପିଆଅ । ଆଜି ମୁଁ ସବୁ ଭୁଲିଯିବାକୁ ଚାହେଁ । ଆଉ କିଛି କ୍ଷଣ ମଧ୍ୟରେ ମହାସୁନ୍ଦରୀ ଧ୍ରୁବଦେବୀ ମୋର ହେବ ଅଙ୍ଗଶାୟିନୀ, କାମାଙ୍ଗିନୀ ! ମୁଁ ଏବେ ମଗଧର ସମ୍ରାଟ । ମଗଧର ପ୍ରଗତି ପାଇଁ ଖାଲି ଲୋଡ଼ା ଲାବଣ୍ୟମୟୀ ହେମାଙ୍ଗିନୀ ଆଉ ପ୍ରମତ୍ତ ରତି... ରତି...ରତି । ସାରା ରାତି ସୁରା... ବାଦ୍ୟ ସଙ୍ଗୀତର ତାଳେ ଛମ୍ ଛମ୍ ନାଚୁଥିବା ନର୍ତ୍ତକୀର ପୀନବକ୍ଷୋଜର ଉତ୍ତାଳ ନର୍ତ୍ତନ, କ୍ଷୀଣକଟିର ଅଦ୍ଭୁତ ମାଦକତା ଆଉ ନୀଳନୟନାର କଟାକ୍ଷ ଓ ଶୁଭ୍ର ଦେହର ମଖମଲ ମସୃଣତାରେ ମୁଁ ଖାଲି ହଜିଯିବାକୁ ଚାହେଁ କାମାଙ୍ଗିନୀ । ମୋ ଅସମର୍ଥ ପୁରୁଷତ୍ୱର ହାହାକାର ଚିରଦିନ ପାଇଁ ସେହି ସୌନ୍ଦର୍ଯ୍ୟବତୀମାନଙ୍କର ସ୍ପର୍ଶରେ ଅଧରରେ ମିଟେଇ

ଦେବାକୁ ଚାହେଁ... କାମାଙ୍ଗିନୀ ... ହାଃ... ହାଃ...ହାଃ... ମତେ ରତିନୃରାଗିଣୀଙ୍କର ରତି ଦିଅ କାମାଙ୍ଗିନୀ... ମତେ ମଦିରା ଭାଣ୍ଡରେ ବୁଡ଼ାଇ ଦିଅ... ମତେ ଦିଅ ଶକ୍ତି ମହାଶକ୍ତି... ହାଃ...ହାଃ...ହାଃ... ।''

ହଠାତ୍ ରଙ୍ଗଶାଳା ମଧ୍ୟରେ ପ୍ରବେଶ କଲେ ମହାଅମାତ୍ୟ ଶିଖରସେଣ । – ''ମହାରାଜ ! ଆପଣ ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇନାହାନ୍ତି ? ସେପଟେ ବିବାହର ମୁହୂର୍ତ୍ତ ଯେ ଅତିକ୍ରାନ୍ତ ପ୍ରାୟ ।''

ରାମଗୁପ୍ତ ନିଶାଗ୍ରସ୍ତ ସ୍ୱରରେ କହିଲେ– ''ବିବାହର ମୁହୂର୍ତ୍ତ ତ ବିତିବା କଥା ବିତିଯିବ । ହେଲେ ଆଜିର ଏଇ ପାନଶାଳର ରୋମାଞ୍ଚ କ'ଣ ଆଉ ଫେରିପାରିବ ମହାମାତ୍ୟ ।''

ମହାମାତ୍ୟ ଅର୍ଦ୍ଧଚେତନ ମହାରାଜ ରାମଗୁପ୍ତଙ୍କୁ ସାହାରା ଦେଇ ଟୋକି ନେଇ କହିଲେ-''ବର୍ତ୍ତମାନ ଚାଲନ୍ତୁ ବିବାହ ମଣ୍ଡପକୁ ଯିବା । ସମସ୍ତେ ସେଠାରେ ଆପଣଙ୍କର ପ୍ରତୀକ୍ଷା କରୁଛନ୍ତି ।''

ମଦିରା ନିଶାରେ ସମ୍ପୂର୍ଣ୍ଣ ନିଶାଗ୍ରସ୍ତ ହୋଇ ଲଡ଼ବଡ଼ ହୋଇ ମହାଅମାତ୍ୟ ଶିଖରସେଣଙ୍କ କାନ୍ଧରେ ଭାରାଦେଇ ଝୁମି ଝୁମି ମହାରାଜ ରାମଗୁପ୍ତ ବିବାହ ମଣ୍ଡପ ନିକଟରେ ପହଞ୍ଚିଲେ ଓ କହିଲେ– ''ହେଇ ଦେଖ ମୁଁ ପହଞ୍ଚିଗଲି । ବିବାହ ପର୍ବ ଆରମ୍ଭ କର ।''

ପୁରୋହିତ କହିଲେ– ''ଆସନ୍ତୁ ! ମହାରାଜ ! ଆସନ ଗ୍ରହଣ କରନ୍ତୁ ।''

ରାମଗୁପ୍ତ ଉତ୍ତର ଦେଲେ– ''କେଉଁଠି ? କ'ଣ ମହାରାଣୀ ଧ୍ରୁବଦେବୀଙ୍କର ହୃଦୟରେ ?''

ପୁରୋହିତ କିଛି କହିଲେ ନାହିଁ । ନୀରବରେ ମହାରାଜ ରାମଗୁପ୍ତଙ୍କର ହାତ ଧରି ଆଣି ଧ୍ରୁବଦେବୀଙ୍କ ଡାହାଣପଟରେ ଉଦ୍ଦିଷ୍ଟ ଆସନରେ ବସାଇଦେଲେ । ଏହାପରେ ପୁରୋହିତ ମନ୍ତ୍ର ଉଚ୍ଚାରଣ ଆରମ୍ଭ କରିଦେଲେ । କିନ୍ତୁ ରାମଗୁପ୍ତ ବସିବେ କ'ଣ ବାରମ୍ବାର ସେ ଭୂଇଁରେ ଶୋଇପଡୁଥାନ୍ତି । ଉପସ୍ଥିତ ସମସ୍ତ ରାଜସଭାସଦ, ପ୍ରଜାଗଣ ମଗଧର ମହାରାଜ ରାମଗୁପ୍ତଙ୍କର ଏଭଳି ଦୁର୍ଦ୍ଦଶା ଦେଖି ଅତ୍ୟନ୍ତ ଦୁଃଖିତ ହେଉଥାନ୍ତି ।

ଆବଶ୍ୟକୀୟ ମନ୍ତ୍ରୋଚାରଣ କରି ପୁରୋହିତ କହିଲେ–''କୁମାର ! ପ୍ରତିଜ୍ଞା କରନ୍ତୁ ସୁଖ–ଦୁଃଖ, ସୁସମୟ–କୁସମୟ ପ୍ରତିଟି ସମୟରେ ଆପଣ ଯେମିତି ମହାଦେବୀଙ୍କ ସାଙ୍ଗରେ କାୟା ସଙ୍ଗେ ଛାୟା ପରି ରହିବେ ।''

"....." ରାମଗୁପ୍ତ ନୀରବ : ନିରୁତ୍ତର ।

ମହାମାତ୍ୟ କହିଲେ-"ପ୍ରତିଜ୍ଞା କରିଦିଅ, କୁମାର ।"

ଆକଣ୍ଠ ନିଶାଗ୍ରସ୍ତ ରାମଗୁପ୍ତ ଆଖି ତରାଟି ଚାହିଁଲେ ଆଉ କହିଲେ--"ମହାମାତ୍ୟ ମହୋଦୟ ! ଏପରି ପ୍ରତିଜ୍ଞା କରିବା କଣ ନିହାତି ଆବଶ୍ୟକ ?"

-"ହଁ କୁମାର ! ପ୍ରତିଜ୍ଞା କରିବାକୁ ପଡ଼ିଥାଏ ।"

ରାମଗୁପ୍ତ କହିଲେ-"ଠିକ୍ ଅଛି । ପୁରୋହିତ ଯେଉଁ ଶ୍ଳୋକ ଉଚ୍ଚାରଣ କଲେ ମୁଁ ତାହା ସ୍ୱୀକାର କରୁଛି ।"

ପୁରୋହିତ କହିଲେ-"ଏପରି ନୁହେଁ ଭଟ୍ଟାରକ ! ପ୍ରତି ଶ୍ଳୋକ ଆଉ ଅର୍ଥକୁ ଆପଣ ଗୋଟି ଗୋଟି ଉଚ୍ଚାରଣ କରିବାକୁ ପଡ଼ିବ ।"

ରାମଗୁପ୍ତ କହିଲେ-"ଠିକ୍ ଅଛି ମୁଁ ପ୍ରତିଜ୍ଞା କରୁଛି ଯେ ମୁଁ ସୁଖଦୁଃଖ, ସମୟ ଅସମୟ, ପ୍ରତିଟି ମୁହୂର୍ତ୍ତରେ ମହାଦେବୀଙ୍କ ସାଥେ ସାଥେ ରହିବି ।"

ପୁରୋହିତ ସନ୍ତୋଷ ପ୍ରକଟ କରି କହିଲେ-"ଏଥର ମହାଦେବୀଙ୍କ ହାତ ସହିତ ନିଜର ହାତ ଛନ୍ଦି ପୂର୍ବପରି ପ୍ରତିଜ୍ଞା ବଚନକୁ ପୁନରାବୃତ୍ତି କରନ୍ତୁ ।"

ରାମଗୁପ୍ତ ଅମାତ୍ୟଙ୍କ ଆଡ଼କୁ ଚାହିଁ କହିଲେ-"କଣ ଅମାତ୍ୟ ?"

ମହାମାତ୍ୟ ଶିଖରସେଣ କହିଲେ-"ପୁରୋହିତ ଠିକ୍ କଥା କହିଛନ୍ତି ।"

ରାମଗୁପ୍ତ ଧ୍ରୁବଦେବୀଙ୍କ ହାତ ସହିତ ହାତ ଛନ୍ଦିବାକୁ ପ୍ରସ୍ତୁତ ହେଲାବେଳେ, ଚିତ୍କାର କରି ଉଠିଲେ-"ଆରେ, ବାପ୍‌ରେ ବାପ୍ ।"

-"କଣ ହେଲା ?" ଶିଖରସେଣ ପଚାରିଲେ ।

-"ଅମାତ୍ୟ ଏଇଟା ଗୋଟେ ହାତ ନା ଉତପ୍ତ ଶିଳାଖଣ୍ଡ ? ଆପଣ ଥରେ ଏହି ହାତକୁ ଛୁଇଁ ଦେଖନ୍ତୁ ।"

ରାମଗୁପ୍ତଙ୍କ ଏପରି ମନ୍ତବ୍ୟ ଶୁଣି ବିବାହ ମଣ୍ଡପରେ ଉପସ୍ଥିତ ଜଣେ ହସିଉଠିଲା ।

ରାମଗୁପ୍ତ ଚିତ୍କାର କଲେ-"ହସୁଚ କଣ ? ତମେ ନିଜେ ଆସି ଏହି ହାତ ସହିତ ହାତ ଛନ୍ଦି ଥରେ ପ୍ରତିଜ୍ଞା କର । ହାତ ସ୍ପର୍ଶ କଲାକ୍ଷଣି ଜାଣିପାରିବ ଏଇଟା କେମିତିକା ହାତ ।"

ମହାମାତ୍ୟ ତାଗିଦ୍ କଲେ- "ଏମିତି ଶବ୍ଦ ଉଚ୍ଚାରଣ କରାଯାଏ ନାହିଁ, ମହାରାଜ ।"

କୌଣସିମତେ ରାମଗୁପ୍ତଙ୍କ ସହିତ ଧ୍ରୁବଦେବୀଙ୍କ ପାଣିଗ୍ରହଣ ଉତ୍ସବ ନାଟକର ଅବସାନ ଘଟିଲା ।

ଧ୍ରୁବଦେବୀ ପାଟଳିପୁତ୍ର ରାଜପ୍ରାସାଦର ରାଣୀ ଅନ୍ତଃପୁରର ଗବାକ୍ଷ ନିକଟରେ ବସି ବାହାରର ଆକାଶକୁ ବଡ଼ ଅନ୍ୟମନସ୍କ ହୋଇ ଦେଖୁଥିଲେ । ଦୂର ଦିଗ୍‌ବଳୟରେ ସୂର୍ଯ୍ୟ ପଶ୍ଚିମ ଆକାଶରେ ଧୀରେ ଧୀରେ ଲୁଚିଯାଉଥିଲେ । ମଗଧର ସାମ୍ରାଜ୍ଞୀ ଧ୍ରୁବଦେବୀ ଅନ୍ତରରେ ଅହରହ ଅସୀମ ବିରହ ଜ୍ୱାଳାରେ ଯେମିତି ସୂର୍ଯ୍ୟ ଭଳି ଖାଲି ଜଳୁଥିଲେ । ସେହି ଉତ୍ତପ୍ତ ଅଶାନ୍ତିର ଦାବାନଳ ଯେମିତି ତାଙ୍କର ମନ, ଆତ୍ମା, ଅସ୍ତିତ୍ୱକୁ କଲବଲ କରିଦେଉଥିଲା । କୌଣସିଥିରେ ତାଙ୍କର ମନ ଲାଗୁନଥିଲା । ସେ ଗଭୀର ଦୁଃଖରେ, ଯନ୍ତ୍ରଣାରେ କେବଳ ଛଟପଟ ହେଉଥିଲେ । ହଠାତ୍ କାହାର ପଦଚାପ ଶୁଣି ତାଙ୍କର ଧ୍ୟାନ ଭଙ୍ଗ ହେଲା, କିନ୍ତୁ ସେ ଗବାକ୍ଷ ନିକଟରୁ ନିଜର ଦୃଷ୍ଟି ଉଠାଇ ପଛକୁ ଦେଖିବାର ପ୍ରୟାସ କଲେନାହିଁ । ସେମିତି ଅବସ୍ଥାରେ ଥାଇ ସେ ପଚାରିଲେ- "କିଏ ?"

.... କିନ୍ତୁ କୌଣସି ଉତ୍ତର ଆସିଲା ନାହିଁ, ଧ୍ରୁବଦେବୀ ବାଧ୍ୟ ହୋଇ ପଛକୁ ଚାହିଁ ଦେଖିଲେ ତପସ୍ୟା ଛିଡ଼ା ହୋଇଛି । -"ତପସ୍ୟା ! ତୁ ?" ହେଲେ ତପସ୍ୟା ପୁଣି କୌଣସି ଉତ୍ତର ଦେଲାନାହିଁ । ଧ୍ରୁବଦେବୀ ଉଦଗ୍ରୀବ ହୋଇଉଠିଲେ । -"ତପସ୍ୟା ! ତୁ ଉତ୍ତର କାହିଁକି ଦେଉନାହୁଁ । କଣ ତୋର ଜିଭକୁ ମଧ୍ୟ କାଟି ଦିଆଗଲା କି ? ମୁଁ କେଉଁ ଜନ୍ମରେ କି ପାପ କରିଥିଲି ଯେ ଏହି ଗୁପ୍ତକୁଳର ବଧୂ ହେବାର ଘୋର ଅପମାନରେ ପ୍ରତିଦିନ ମରୁଛି । କୁମାର ଚନ୍ଦ୍ରଗୁପ୍ତ ମୋ ପିତାଙ୍କୁ କଥା ଦେଇଥିଲେ ଯେ ମତେ ଖୁସିରେ ରଖିବେ, ମୁଁ ତାଙ୍କର ସେହି ବିଶାଳ ହୃଦୟର ପ୍ରେମାପ୍ଲୁତ ଅପାଙ୍ଗ ଦୃଷ୍ଟିବାଣରେ ଏପରି ଛଳଛଳେଇ ଗଲି ଯେ ମୋର ନିଜର ଚୈତନ୍ୟ, ଶୁଦ୍ଧି, ବୁଦ୍ଧି କିଛି ରହିଲା ନାହିଁ । ଚତୁର୍ଦ୍ଦିଗ କେବଳ ମତେ କୁମାରମୟ ଦିଶିଲା । ସେ ମତେ ଏଠି ଗୋଟେ କ୍ଲୀବ ମଦ୍ୟପ ହାତରେ ଛନ୍ଦି ଦେଇ କେଉଁଆଡ଼େ ଉଭାନ୍ ହୋଇଗଲେ ଯେ ତାଙ୍କର କୌଣସି ଠିକଣା ମଧ୍ୟ ମୋ ପାଖରେ ନାହିଁ । ମୁଁ ସିନା ନାମକୁ ମାତ୍ର ମଗଧର ମହାରାଣୀ ହୋଇଛି କିନ୍ତୁ ଏହି ରାଣୀଅନ୍ତଃପୁରର ଦାସଦାସୀମାନେ ସୁଦ୍ଧା ମତେ ଶଙ୍କିତ ଦୃଷ୍ଟିରେ ଦେଖୁଛନ୍ତି । ତୁ ଜାଣିଛୁ ତପସ୍ୟା ମୋର ପ୍ରାଣ ଖାଲି ଡ଼ହଳବିକଳ ହେଉଛି ଟିକିଏ ସାନ୍ତ୍ୱନା ପାଇଁ, ଟିକିଏ ଶୀତଳତା ପାଇଁ । ହେଲେ ମତେ ସମସ୍ତେ ଜଣା ପଡୁଛନ୍ତି ଯେମିତି ସେମାନେ ଛଦ୍ମମୁଖା ଗୋଟେ

ଗୋଟେ ପିନ୍ଧିଛନ୍ତି ଆଉ ସନ୍ଦିଗ୍ଧ ଦୃଷ୍ଟିର ଉତ୍ତପ୍ତ ଅଗ୍ନିବାଣରେ ମତେ ଦହନ କରୁଛନ୍ତି । ତୁ ଏକମାତ୍ର ମୋର ସହଚରୀ ଥିଲୁ ଯେ ତପସ୍ୟା ! କିନ୍ତୁ ତୁ କାହିଁକି ଯେ ଆଜି ଏମିତି ନୀରବ ହୋଇଯାଇଛୁ ମୁଁ ଜାଣିପାରୁନି । କେଜାଣି ତୁ ମଧ୍ୟ କ'ଣ ଏମାନଙ୍କ ଭଳି ମୋ ବିରୁଦ୍ଧରେ ବିରୋଧି ପାଲଟିଗଲୁ ।''

ପ୍ରତ୍ୟୁତ୍ତରରେ ତପସ୍ୟା ନୀରବ ରହିଥିଲା । ସେ ଥରେ ମହାଦେବୀଙ୍କ ମୁଖକୁ ଚାହିଁଲା ଓ ଓଠରେ ଆଙ୍ଗୁଳି ରଖି ତାଙ୍କୁ ଚୁପ୍ ହେବାକୁ କହିଲା । କିନ୍ତୁ ମହାରାଣୀ ଧ୍ରୁବଦେବୀ ତପସ୍ୟାର ଏହି ଇଙ୍ଗିତ ବୁଝିପାରିଲେ ନାହିଁ । ସେ ମନକୁ ମନ କହିବାକୁ ଲାଗିଲେ– ''ହେ ପ୍ରଭୁ । ଏହା କେଉଁ ପ୍ରକାର ମାୟାଜାଲ ସୃଷ୍ଟି ହୋଇଛି । ମୁଁ କ'ଣ ଆଉ ସତରେ ଏକ ମାୟାନଗରୀର ଗୋଲକଧନ୍ଦାରେ ଫସିଯାଇନାହିଁ ତ ? ମୁଁ ଏହି ମଗଧ ସାମ୍ରାଜ୍ୟର ମହାରାଣୀ ବୋଲାଉଛି । ଜଣେ ଅସମର୍ଥ ବ୍ୟକ୍ତିକୁ ପତି ରୂପରେ ମତେ ବାଧ୍ୟ ହୋଇ ଗ୍ରହଣ କରିବାକୁ ହୋଇଛି । ମୋ ଭାଗ୍ୟର କି ଯେ ବିଡ଼ମ୍ବନା ତପସ୍ୟା । ଏଠାକାର ପ୍ରତ୍ୟେକ ଲୋକ ମତେ ଅତ୍ୟନ୍ତ ସନ୍ଦେହୀ ଓ ରହସ୍ୟମୟ ମନେ ହେଉଛନ୍ତି । ମୁଁ କାହାରି ଉପରେ ଭରସା କରିପାରୁନାହିଁ । ଏସବୁ କଥା ଜାଣିବା ସତ୍ତ୍ୱେ ମୋର ପିଲାଦିନର ଅନ୍ତରଙ୍ଗ ସହଚରୀ ତପସ୍ୟା ତୁ ବି କାହିଁକି କେଜାଣି ତୁନି ହୋଇଯାଇଛୁ ଯେ ।''

ମହାରାଣୀ ଧ୍ରୁବଦେବୀ ଏହା କହୁ କହୁ ଅତ୍ୟନ୍ତ ବିଷର୍ଣ୍ଣ ହୋଇଗଲେ । ତପସ୍ୟା ମହାଦେବୀଙ୍କର ଏହି ବ୍ୟାକୁଳତାରେ ବିବ୍ରତ ହୋଇ କହିଲା, ''ମହାଦେବୀ ! ଆପଣ ଏମିତି କ'ଣ ହେଉଛନ୍ତି ଯେ ।''

ଧ୍ରୁବଦେବୀ ଚମକି ପଡ଼ିଲେ– ''ଆରେ ତପସ୍ୟା, ତୁ କ'ଣ କଥା କହିଲୁଣି । ମୁଁ ତ ଭାବିଥିଲି ତୁ ସବୁଦିନ ପାଇଁ ମୂକ ହୋଇଯାଇଛୁ । ଏତେ ସମୟ ହେଲା ଏପରି ଅଭିନୟ କାହିଁକି କରୁଥିଲୁ ?'' ଆଶଙ୍କିତ ଦୃଷ୍ଟିରେ ତପସ୍ୟା ଏପଟ ସେପଟ ଚାହିଁଲା । କକ୍ଷର ଦ୍ୱାର ନିକଟକୁ ଯାଇ ଭଲକରି ଚାରିଆଡ଼କୁ ନିରୀକ୍ଷଣ କଲା ଓ ପୁଣି ଫେରିଆସି କହିଲା– ''ମହାଦେବୀ ! ଏଠାରେ ସବୁ ସମୟରେ ଆପଣ ମୋ ପ୍ରତି ସ୍ନେହ ପ୍ରଦର୍ଶନ କରନ୍ତୁ ନାହିଁ । କାରଣ ଏ ରାଜମହଲ ଈର୍ଷା, କପଟତା, ଛଦ୍ମତାର ଏକ ଜତୁଗୃହ । ଆପଣଙ୍କର ସୁରକ୍ଷା ଦୃଷ୍ଟିରୁ ମୁଁ ଜାଣିଶୁଣି ମହାରାଜ ରାମଗୁପ୍ତଙ୍କର ବିଶ୍ୱାସଭାଜନ ହେବାକୁ ଉଦ୍ୟମ ଚଳାଇଛି । ସେଥିପାଇଁ ପ୍ରତିଦିନ ମତେ ଅସମ୍ଭବ ଛଳକପଟର ଆଶ୍ରୟ ନେବାକୁ ପଡୁଛି ।''

ମହାରାଣୀ ଧ୍ରୁବଦେବୀ ଏସବୁ ଶୁଣି ଆଶ୍ୱସ୍ତ ହୋଇ କହିଲେ– ''ହଁ ବହୁତ ବଡ଼

କାମ ତ ତୁ କରୁଛୁ ତପସ୍ୟା । ହେଲେ ଏବେ କାହିଁକି ମୋ ଆଗରେ ଏସବୁ କରୁଛୁ କହିଲୁ ।''

ତପସ୍ୟା କହିଲା- ''ମହାଦେବୀ ! ମହାରାଜ ରାମଗୁପ୍ତ ଏପଟେ ଆସୁଥିଲେ । ମୁଁ ଆପଣଙ୍କ ନିକଟକୁ ଆସୁଛି ବୋଲି ତାଙ୍କ ନିକଟରେ ସମ୍ବାଦ ପହଞ୍ଚି ଯିବା ପାଇଁ ଟିକିଏ ବି ବିଳମ୍ବ ହେବନାହିଁ । ତେଣୁ ଏହି ପରିସ୍ଥିତିରେ ମୁଁ ଏଠାକୁ ଯେଉଁ ଉଦ୍ଦେଶ୍ୟରେ ଆସୁଛି ତାହା ପୂର୍ଣ୍ଣ ହୋଇପାରନ୍ତା ନାହିଁ ।''

ଆନମନା ହୋଇ ମହାରାଣୀ ଉତ୍ତର ଦେଲେ- ''ତାହାହେଲେ କହ, କେଉଁ ଉଦ୍ଦେଶ୍ୟରେ ଆସିଥିଲୁ ?''

ତପସ୍ୟା ଅନୁନୟ ହୋଇ କହିଲା- ''ଜଣେ ଅତ୍ୟାଚାରିତା ଦୁଃଖୀ ମଣିଷର ପ୍ରାର୍ଥନା ନେଇ ଆପଣଙ୍କ ନିକଟକୁ ଆସିଛି, ମହାଦେବୀ ।''

ମହାରାଣୀ ପଚାରିଲେ- ''କିଏ ସେଇ ଦୁଃଖିନୀ ! କ'ଣ ପାଇଁ ଏମିତି ଦୁଃଖ ଯେ ସେ ମୋ ନିକଟକୁ ଆସିଛି ?''

ତପସ୍ୟା ଆଉ ଟିକିଏ ନମ୍ର ହୋଇ ଆଖି ଛଳ ଛଳ କରି କହିଲା- ''ସେହି ଦୁଃଖିବ୍ୟକ୍ତିଟି ନିଜ ଇଚ୍ଛାରେ ଗୋଟିଏ ଅସାଧାରଣ ଅନନ୍ୟ ଅମୂଲ୍ୟ ନିଧି ପ୍ରାପ୍ତି ଆଶାରେ ନିଜର ସମସ୍ତ ବୈଭବ, ଐଶ୍ୱର୍ଯ୍ୟ, ରାଜସୁଖ ତ୍ୟାଗ କରିଦେଇଛି ।''

ମହାରାଣୀ ଧ୍ରୁବଦେବୀ ଧଡ଼କିନା କହିପକାଇଲେ- ''କିଏ ? କ'ଣ କୁମାର ଚନ୍ଦ୍ରଗୁପ୍ତ ନା ତପସ୍ୟା !''

ତପସ୍ୟା ସେମିତି ମୁହଁ ତଳକୁ କହିଲା, ''ହଁ, ସେହିଁ ମହାରାଣୀ ।''

ମହାରାଣୀ ଅଭିମାନଭରା କଣ୍ଠରେ କହିଲେ-''ତାଙ୍କୁ ତ ତାଙ୍କର ବନ୍ଦୀ ଜୀବନରୁ ମୁକ୍ତି ମିଳିସାରିଛି, ତପସ୍ୟା । ବର୍ତ୍ତମାନ ମୁଁ ହିଁ ଏକାକୀ ବନ୍ଦନୀ ଜୀବନ ବିତାଉଛି । ମୁଁ କ'ଣ ତାଙ୍କର ପ୍ରାର୍ଥନା ଶୁଣିବି । ମୁଁ ନିଜେ ହିଁ ସେହି ପ୍ରାର୍ଥନାର ଯୋଗ୍ୟ ।''

ତପସ୍ୟା କହିଲା- ''ମହାଦେବୀ ! ଏ କ'ଣ ଆପଣ କହୁଛନ୍ତି । କୁମାର ଚନ୍ଦ୍ରଗୁପ୍ତ ନିଜେ ସମସ୍ତ ଷଡ଼ଯନ୍ତ୍ର ଓ କୁଟିଳତାର ଶିକାର ହୋଇ ଏତେବଡ଼ ଝଡ଼କୁ ସାମ୍ନା କରୁଛନ୍ତି । ତାଙ୍କ ନିକଟରେ ଉପାୟ ବି ନାହିଁ । ନିଜର ଜୀବନ ପ୍ରତି ମଧ୍ୟ ସଂଶୟ ସୃଷ୍ଟି ହୋଇଛି । କେତେବେଳେ କ'ଣ ଯେ ଘଟିବ ! ତାଙ୍କର ବର୍ତ୍ତମାନ ଅନ୍ଧକାରମୟ, ଭବିଷ୍ୟତରେ କ'ଣ ହେବ ସେ ଦିଗରେ ସେ ଅଜ୍ଞାନ । ଅତ୍ୟନ୍ତ ଭୀତତ୍ରସ୍ତ ସନ୍ଦେହର ବଳୟ ମଧ୍ୟରେ ବାସକରୁଛନ୍ତି କୁମାର ଚନ୍ଦ୍ରଗୁପ୍ତ, ମହାଦେବୀ ।''

ଧ୍ରୁବଦେବୀ କୁମାର ଚନ୍ଦ୍ରଗୁପ୍ତଙ୍କର ଦୁର୍ଦ୍ଦଶାର କାହାଣୀ ଶୁଣି ଅତ୍ୟନ୍ତ ବିଷଣ୍ଣ ହୋଇଗଲେ । ମନଟା ଭାରି ଉଦାସ ହୋଇଗଲା । ସେ କାନ୍ଦ କାନ୍ଦ ସ୍ୱରରେ କହିଲେ– "ତା'ହେଲେ କ'ଣ କୁମାରଙ୍କୁ ପୁନର୍ବାର ବନ୍ଦୀ କରିଦିଆଗଲା କି ?"

ତପସ୍ୟା କହିଲା– "ନାହିଁ, ମହାଦେବୀ ! କୁମାର ଚନ୍ଦ୍ରଗୁପ୍ତ ଅବଶ୍ୟ କାରାଗାରର ବାହାରେ ଅଛନ୍ତି, କିନ୍ତୁ ଏକ ପ୍ରକାର ନଜରବନ୍ଦୀ କହିଲେ ଚଳେ । କାରଣ ତାଙ୍କୁ ପ୍ରତ୍ୟେକ କାର୍ଯ୍ୟ ପାଇଁ ପ୍ରତିଥର ରାଜାଜ୍ଞା ନେବାକୁ ପଡୁଛି । ସେ ପଚାରିଛନ୍ତି ଯେ ଏଭଳି ପରିସ୍ଥିତିରେ ଆପଣ ତାଙ୍କୁ ସହଯୋଗ କରିବେ କି ?"

ଧ୍ରୁବଦେବୀ ଦୁଃଖରେ କହିଲେ– "ସହଯୋଗ ! ମୁଁ ତାଙ୍କୁ କେଉଁ ପ୍ରକାର ସହଯୋଗ କରିପାରିବି, ତପସ୍ୟା ! ମୁଁ ତ ନିଜେ ଏକ ପିଞ୍ଜରାରେ ବନ୍ଦୀ ହୋଇ କଲବଲ ହେଉଛି । ସେ ମୋ ଠାରୁ ତା'ହେଲେ କେଉଁ ପ୍ରକାର ସହଯୋଗ ଚାହୁଁଛନ୍ତି ।"

ତପସ୍ୟା ଆହୁରି ଦୁଷ୍ଟାମୀ ଭରା କଣ୍ଠରେ କହିଲା, –"କୁମାର ଚନ୍ଦ୍ରଗୁପ୍ତ କହିଛନ୍ତି ଯେ ମଗଧ ସାମ୍ରାଜ୍ୟର ସମସ୍ତ ଗୁରୁତ୍ୱପୂର୍ଣ୍ଣ ପଦବୀମାନଙ୍କରେ ତାଙ୍କର ବନ୍ଧୁମାନେ ଅବସ୍ଥାପିତ ହୋଇସାରିଛନ୍ତି । କେବଳ ଗୋଟିଏ ପଦ ଖାଲି ଅଛି ।"

ମହାରାଣୀ ଉତ୍ସୁକତାର ସହିତ ପଚାରିଲେ– "କେଉଁ ପଦଟା ?"

ତପସ୍ୟା କହିଲା–"କୁମାରଙ୍କର ହୃଦୟର ମହାରାଣୀ । ସେ କହିଛନ୍ତି ଯଦି ଆପଣ ସେହି ପଦ ଅଳଙ୍କୃତ କରିବାକୁ ସମ୍ମତି ପ୍ରଦାନ କରନ୍ତି, ତା'ହେଲେ ସମସ୍ତ ବିପଦକୁ ବରଣ କରି ସେ ମଗଧ ରାଜସିଂହାସନ ଦଖଲ କରିବାର ଉଦ୍ୟମ କରିବେ ।"

ଧ୍ରୁବଦେବୀ ଜିଭକୁ ଦାନ୍ତରେ କାମୁଡ଼ି କହିଲେ– "ଏ କି କଥା କହୁଛୁ ତପସ୍ୟା । ମୁଁ ଜଣେ ହିନ୍ଦୁ ପତିବ୍ରତା ନାରୀ । ଦୁର୍ଭାଗ୍ୟବଶତଃ ଯଦିଓ ମୋର ବିବାହ ଗୋଟିଏ ନଂପୁସକ କାପୁରୁଷ ସହିତ ହୋଇଯାଇଛି ହେଲେ ବର୍ତ୍ତମାନ ମତେ ତା'ବ୍ୟତୀତ ଅନ୍ୟ କୌଣସି ପରପୁରୁଷର କଳ୍ପନା କରିବା ମଧ୍ୟ ପାପ ହେବ, ତପସ୍ୟା । ତୁ ନିଜେ ଭାବୁନୁ, ଜଣେ ହିନ୍ଦୁ ନାରୀକୁ ସର୍ବଦା ଧର୍ମର ଭୟ ଦେଖାଇ ଯେଭଳି ଯାବତୀୟ ନୀତିନିୟମ ଦ୍ୱାରା ବାନ୍ଧି ଦିଆଯାଇଛି ସେଥିରୁ ସେ ମୁକୁଳିବ କିପରି ? ତା'ପାଇଁ ବାଟ କାଇଁ କହିଲୁ । ମୋ ଭଳି ଜଣେ ଅସହାୟ ନାରୀ କେମିତି କୁମାର ଚନ୍ଦ୍ରଗୁପ୍ତଙ୍କର ସହଯାତ୍ରିଣୀ ହେବ କହ ?"

ତପସ୍ୟା ମହାଦେବୀଙ୍କର କଥାରେ ନିରାଶ ହୋଇଗଲା– "ତା'ହେଲେ ଆପଣ କୁହନ୍ତୁ, କ'ଣ କହିବି କୁମାରଙ୍କୁ ? କହିଦେବି କି ଯେ ଆପଣ ତାଙ୍କୁ ସମ୍ପୂର୍ଣ୍ଣ ଭୁଲିଗଲେଣି ?"

ଧ୍ରୁବଦେବୀ ବ୍ୟାକୁଳ ହୋଇ କହିଲେ- "ନା...ନା... ସେମିତି କହନା, ତପସ୍ୟା । ଏତେ ବଡ଼ ବିପତ୍ତିର ସାମ୍ନା କରୁଛନ୍ତି କୁମାର ଚନ୍ଦ୍ରଗୁପ୍ତ । ମୋର ଏହି କଥା ଯଦି ତୁ କହିଦେବୁ ସେ ଆହୁରି ଭାଙ୍ଗିପଡ଼ିବେ । ସେ ଯଦି ଜାଣିବେ ମୁଁ ତାଙ୍କୁ ସତରେ ଭଲପାଉନି ତେବେ ସେ ଆତ୍ମହତ୍ୟା ମଧ୍ୟ କରିପାରନ୍ତି । ତେଣୁ ତୁ ଏସବୁ କିଛି କହନା । "

ତପସ୍ୟା ମହାଦେବୀଙ୍କର ଏହି ନିରୀହ କଥାରେ ଭାରି ଖୁସି ହୋଇଗଲା । ମୁରୁକି ହସି କହିଲା- "ତା'ହେଲେ ମୁଁ ଯାଇ କୁମାର ଚନ୍ଦ୍ରଗୁପ୍ତଙ୍କୁ ଜଣାଇଦେବି ଯେ ଯେଉଁ ମହନୀୟା ନାରୀର ପ୍ରେମ ପାଇଁ ପାଇଥିବା ରାଜସିଂହାସନକୁ ଯିଏ ବାଜି ଲଗେଇ ଦେଇଛନ୍ତି ତାଙ୍କୁ ଆଉ ସେହି ପ୍ରଣୟର ସାମାନ୍ୟ ଟୋପାଏ ସ୍ନେହ ମିଳିବ ନାହିଁ । ସେ ସୁନ୍ଦରୀ ବର୍ତ୍ତମାନ ଅନ୍ୟଜଣଙ୍କର ବିବାହିତା ପତ୍ନୀ, ତେଣୁ ଭୁଲିଯିବା ହିଁ ଶ୍ରେୟସ୍କର । ନା'କ'ଣ କହୁଛନ୍ତି ମହାରାଣୀ ।

ମହାରାଣୀ ତପସ୍ୟାର କଥାରେ ଆହୁରି ଉଦ୍‌ଗ୍ରୀବ ହୋଇ କକ୍ଷ ମଧ୍ୟରେ ଖାଲି ପଦଚାଳନା କଲେ । କ'ଣ କରିବେ, କ'ଣ କହିବେ କିଛି ହେଲେ ଭାବିପାରୁନଥାନ୍ତି । - ଓଃ ତପସ୍ୟା ! କହିଦେବୁ କୁମାରଙ୍କୁ । ମୁଁ କେବେହେଲେ ତାଙ୍କର ଅପ୍ରତିମ ସ୍ନେହପ୍ରେମ, ଆତ୍ମତ୍ୟାଗକୁ ଜୀବନରୁ ପୋଛିପାରିବି ନାହିଁ । ତାଙ୍କ ଭଳି ଜଣେ ସରଳ ସ୍ନିଗ୍ଧ ମଣିଷ ମୁଁ କେଉଁଠି ଦେଖିନାହିଁ । ତାଙ୍କ ଅନନ୍ୟ ଶ୍ରଦ୍ଧାର ତୁଳନା ହୋଇପାରିବ ନାହିଁ । ମୁଁ ତାଙ୍କୁ ମୋର ପ୍ରଣୟ ପ୍ରଦାନ କରିବା ପାଇଁ ବର୍ତ୍ତମାନ ସଂପୂର୍ଣ୍ଣ ଅସମର୍ଥ । ହିନ୍ଦୁ ବିବାହିତା ନାରୀର ଆଦର୍ଶ ଓ ଆତ୍ମସମ୍ମାନ ମୋର ଗୋଡ଼କୁ ବାନ୍ଧି ରଖିଛି । ମୁଁ ଚାହିଁଲେ ବି ତାଙ୍କୁ ପାଇପାରିବିନି, ତପସ୍ୟା ! ତାଙ୍କୁ ନିଶ୍ଚୟ ମୋର ଏହି ଅସହାୟତା ବିଷୟରେ ଭଲକରି ବୁଝାଇ ଦେବୁ ।"

ତପସ୍ୟା ଗେହ୍ଲେଇ ହୋଇ କହିଲା- "ହଉ, ହେଲା ହେଲା, ଆପଣଙ୍କର ପ୍ରଣୟ ନିବେଦନ ନ ହେଉ ପଛକେ, କୁମାରଙ୍କୁ ଅନ୍ତତଃ ସନ୍ତୋଷ ଟିକିଏ ମିଳିବ ଯେ କେହି ଜଣେ ହେଲେ ତାଙ୍କ ପାଇଁ ହୃଦୟରେ ଅନେକ ସ୍ୱପ୍ନ ନେଇ ସ୍ନେହର ଦୀପଟିଏ ଜଳାଇ ପ୍ରତୀକ୍ଷା କରିଛି । କୁମାରଙ୍କର ଉତ୍‌ଥାନ ମଧ୍ୟ ଅଚିରେ ହୋଇଯିବ କାରଣ ତାଙ୍କର ନିଜର ବାହୁବଳ, ଶକ୍ତି ଓ ବୁଦ୍ଧିରେ ଯଥେଷ୍ଟ ଭରସା ଅଛି ।"

ଧ୍ରୁବଦେବୀ ତପସ୍ୟାର କଥାରେ ବିଚଳିତ ହୋଇ ଉଠିଲେ ଓ କହିଲେ-"ତପସ୍ୟା ! ସେମିତି ଆଦୌ କହିବୁ ନାହିଁ । କାରଣ ବର୍ତ୍ତମାନର ବିଷମ ପରିସ୍ଥିତିରେ କି ପ୍ରକାର ଘଟଣା ସବୁ ଘଟିବ ଯାହାର ଫଳସ୍ୱରୂପ ଆହୁରି ସାଂଘାତିକ ପରିଣାମ କୁମାରଙ୍କୁ ହିଁ ଭୋଗିବାକୁ ପଡ଼ିବ । ତେଣୁ ତୁ ଏମିତି ଚଞ୍ଚଳ ହୁଅନା ।"

ତପସ୍ୟା ମୂର୍କି ହସିଲା । ମନରେ ଅପାର ସନ୍ତୋଷ ସୃଷ୍ଟି ହେଲା ଯେ ଯାହାହେଉ ମହାରାଣୀ ଧ୍ରୁବଦେବୀ ଏବେବି କୁମାର ଚନ୍ଦ୍ରଗୁପ୍ତଙ୍କୁ ହିଁ ଭଲପାଉଛନ୍ତି । ସେ ଯିବାକୁ ଉଦ୍ୟତ ହେଉଛି ହଠାତ୍ ଦ୍ୱାର ନିକଟରେ କାହାର ପଦଶବ୍ଦ ଶୁଭିଲା । ତପସ୍ୟା ଡ଼ରିଗଲା । ସେ ବୁଲିପଡ଼ି ଦ୍ୱାର ଆଡ଼କୁ ଚାହିଁ ଦେଖିଲା ମହାରାଜ ରାମଗୁପ୍ତ କକ୍ଷର ଦ୍ୱାର ସମ୍ମୁଖରେ ଛିଡ଼ା ହୋଇଛନ୍ତି । କିଛି କହିବା ପୂର୍ବରୁ ମହାରାଜ ରାମଗୁପ୍ତ ଖୁବ୍ ଜୋର୍‌ରେ ହସିଲେ । କହିଲେ– "ବାଃ... ବହୁତ ବଢ଼ିଆ ତ ତପସ୍ୟା । ସତରେ ତୁମର ଅଭିନୟ ବଡ଼ ପ୍ରଶଂସନୀୟ । ଦୁଇ ମୁହଁ ଥିବା ସାପ ବିଷୟରେ ମୁଁ ଆଗରୁ ବହୁତ ଶୁଣିଥିଲି କିନ୍ତୁ ସର୍ପିଣୀକୁ ଆଜି ଦେଖିଲି । ଯେଭଳି ପାରଦର୍ଶିତାର ସହିତ ତୁମେ ଦ୍ୱୈତ ଅଭିନୟ କରିଚାଲିଛ ସେସବୁକୁ ଦେଖିଲା ପରେ ମୁଁ ପ୍ରଶଂସା କରିବାକୁ ଚାହୁଁନଥିଲେ ମଧ୍ୟ କରିବାକୁ ବାଧ୍ୟ ହେଉଛି ।"

ପୁଣି ମହାରାଣୀ ଧ୍ରୁବଦେବୀଙ୍କ ଆଡ଼କୁ ଚାହିଁ କହିଲେ– "ମହାଦେବୀ ! ମୁଁ ବୁଝିପାରୁଛି ମୋ କଥା ଶୁଣି ତୁମକୁ ଅତ୍ୟନ୍ତ କଷ୍ଟ ହେଉଥିବ । କିନ୍ତୁ ମୁଁ କ'ଣ କରିବି କହ ? ମୁଁ ଯେ ତୁମର ଏ ଅନନ୍ତ ସୌନ୍ଦର୍ଯ୍ୟର ଉପାସକ । ମୁଁ କେମିତି ମୋର ଏହି ଉପାସନାର ମୂର୍ତ୍ତିକୁ କୁମାର ଚନ୍ଦ୍ରଗୁପ୍ତଙ୍କ ହାତରେ ଟେକିଦେବି, କହତ । ମତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ତୁମ ଭଳି ଜଣେ ବିବାହିତା ନାରୀ ସ୍ୱାମୀ ବ୍ୟତୀତ ଅନ୍ୟଜଣେ ପୁରୁଷକୁ କିପରି ପ୍ରେମ କରିବାର ସାହସ କରିପାରୁଛି ? ତୁମେ ତୁମ ପ୍ରେମରେ ଏଭଳି ନିମଗ୍ନ ହୋଇଯାଇଛ ଯେ ଆଖପାଖରେ କ'ଣ ଘଟୁଛି ତାହାର ହୋସ୍ ମଧ୍ୟ ରହୁନାହିଁ । ମୁଁ ଚେତାବନୀ ଦେଉଛି ମହାରାଣୀ ! ତୁମେ ମଗଧର ସାମ୍ରାଜ୍ଞୀ ହୋଇସାରିଛ । ତେଣୁ ସେହି ପଦର ମର୍ଯ୍ୟାଦା ତୁମକୁ ଯେକୌଣସି ପରିସ୍ଥିତିରେ ରକ୍ଷା କରିବାକୁ ହେବ । କୌଣସି ପରପୁରୁଷର କାମନା ମନରେ ନରଖି ମୋ ପ୍ରତି ବିଶ୍ୱସ୍ତତା ପ୍ରକାଶ କରିବା ତୁମର ପ୍ରଧାନ କର୍ତ୍ତବ୍ୟ । ଆଉ ତପସ୍ୟା ତୁମେ..."

ଅପରାଧିନୀ ଭଳି ତପସ୍ୟା ମୁଣ୍ଡ ଉଠାଇ ମହାରାଜଙ୍କୁ ଚାହିଁଲା– "ତୁମେ ଜାଣିଛ ମୁଁ ଜଣେ ଅତ୍ୟନ୍ତ ସିଧା ସଳଖ ବ୍ୟକ୍ତି । ଯାହା କହେ ତାହାହିଁ କରେ । ତୁମେ ବି ଭଲଭାବରେ ଶୁଣିରଖ ଏବଂ ନିଜର ପ୍ରିୟ ମହାରାଣୀଙ୍କୁ ବୁଝାଇ ଦିଅ ଯେ ଏମିତି କିଛି ପରିସ୍ଥିତି ସୃଷ୍ଟି କରନାହିଁ, ଯାହାଫଳରେ ମତେ ନିଜର ନିଷ୍ଠୁରତା ଓ ହୃଦୟହୀନତାର ପରିଚୟ ଦେବାକୁ ପଡ଼ିବ ।"

ମହାରାଜ ରାମଗୁପ୍ତଙ୍କର ରାଣ ଦେଖି ମହାରାଣୀ ଧ୍ରୁବଦେବୀ ମନେ ମନେ ରକ୍ତଚାଉଳ ଚୋବାଇବାରେ ଲାଗିଲେ । ତଥାପି ରାମଗୁପ୍ତ ନିର୍ଲ୍ଲଜତାର ପ୍ରଦର୍ଶନ କରି ସେତିକିରେ ସନ୍ତୁଷ୍ଟ ହୋଇନଥିଲେ । ଧ୍ରୁବଦେବୀଙ୍କର ମୁଖମଣ୍ଡଳକୁ ଚାହିଁ ବିଦ୍ରୂପଭରା

କଣ୍ଠରେ କହିଲେ- ''ମହାଦେବୀ ! ନିଜର ରକ୍ତାଭ ସୁକୋମଳ ନିରୀହ ଓଠକୁ କାହିଁକି ବୃଥାଟାରେ ଏତେ କଷ୍ଟ ଦେଉଛନ୍ତି ଯେ । ସେହି ଅତ୍ୟାଚାର ହେଲେ ମୋ ଓଠ ଉପରେ କରିଥାନ୍ତ ଅନ୍ତତଃ ତୁମ ମଧୁ ମଧୁ ଓଠର ମଧୁରସ ପାନକରି ମୁଁ ମହାତୃପ୍ତ ହୋଇଯାଇଥାନ୍ତି ।''

ମହାରାଣୀ ଧ୍ରୁବଦେବୀ ଆଉ ସହିପାରିଲେନି, ଅତ୍ୟନ୍ତ କ୍ରୋଧର ସହିତ ରାମଗୁପ୍ତଙ୍କୁ କହିଲେ- ''ମୋର କକ୍ଷରୁ ତୁରନ୍ତ ଚାଲିଯାଆନ୍ତୁ, ମହାରାଜ ।''

ମହାରାଜ ରାମଗୁପ୍ତ ଚମକି ପଡ଼ିଲେ । କହିଲେ-''କ'ଣ କହିଲ ? ତୁମ କକ୍ଷରୁ ବାହାରିଯିବି ? ଦେଖୁଛୁ ତପସ୍ୟା । ତୁମର ପ୍ରିୟ ମହାରାଣୀ କ'ଣ କହୁଛନ୍ତି । ଆଜି ପ୍ରଥମ ଥର ପାଇଁ ମୁଁ ମୋର ମହାରାଣୀଙ୍କର କକ୍ଷକୁ ଆସିଛି, ଅଥଚ ସେ ମୋ ସହିତ କି ପ୍ରକାର କ୍ରୁର ବ୍ୟବହାର କରୁଛନ୍ତି । ଅହୋ ! କି ଅଦ୍ଭୁତ କଥା । ମୋର ପ୍ରଜାମାନେ ମତେ ପରମ ଭଟ୍ଟାରକ ବୋଲି କହୁଛନ୍ତି, ଅଥଚ ମୋର ପତ୍ନୀ ମତେ ତାଙ୍କ କକ୍ଷରୁ ବାହାରିଯିବା ପାଇଁ ଆଦେଶ ଦେଉଛନ୍ତି । ଏହାକୁ ମୁଁ କଣ ବୋଲି ବୁଝିବି ମହାଦେବୀ । ଏହା ତୁମର ପ୍ରାର୍ଥନା ନା ଆଦେଶ ?''

ମହାରାଣୀ ଧ୍ରୁବଦେବୀ କିଛି କଥା ଶୁଣିବା ଅବସ୍ଥାରେ ନଥିଲେ । କ୍ରୋଧରେ ତାଙ୍କର ହାତ ମୁଠା ମୁଠା ହୋଇଗଲା । ଚିତ୍କାର ପୂର୍ବକ କହିଲେ- ''ଯାହା ଭାବୁଛନ୍ତି, ଭାବନ୍ତୁ । ଏଇ ମୁହୂର୍ତ୍ତରେ ଆପଣ ଏଠାରୁ ଚାଲିଯାଆନ୍ତୁ ।''

ମହାରାଣୀଙ୍କର ଏଭଳି ଉଗ୍ରମୂର୍ତ୍ତି ଧାରଣ ଦେଖି ଡ଼ରିଯାଇ ରାମଗୁପ୍ତ କହିଲେ- ''ଠିକ୍ ଅଛି । ମୋର ସହୃଦୟତାର ଯେତେପାରୁଛ ସେତେ ଅନୁଚିତ ଲାଭ ଉଠାଅ । ଯାଉଛି ।''

ଝଡ଼ବେଗରେ ରାମଗୁପ୍ତ ସେଠାରୁ ଚାଲିଗଲେ । ତପସ୍ୟା ନିଜକୁ ଟିକେ ଆଶ୍ୱସ୍ତ ଅନୁଭବ କଲା । ମହାରାଣୀ ଧ୍ରୁବଦେବୀ ନିଜର କ୍ରୋଧକୁ ସଂଯତ କରିବାକୁ ଚେଷ୍ଟା କଲେ । ଏହି ସମୟରେ ଜଣେ ଦାସୀ କକ୍ଷ ଭିତରକୁ ପ୍ରବେଶ କଲା ଓ କହିଲା- ''ମହାଦେବୀଙ୍କର ଜୟ ହେଉ ।''

ଧ୍ରୁବଦେବୀ ଆହୁରି ରାଗିଯାଇ ଉତ୍ତରଦେଲେ- ''ମତେ ମହାରାଣୀ କୁହନାହିଁ । କ'ଣ ପାଇଁ ଏଠିକି ଆସିଛୁ, ଶୀଘ୍ର କହ ।''

ଦାସୀ କହିଲା- ''ମହାରାଜ ! ଏଠାକୁ ଆସିଥିଲେ କି ?''

ମହାରାଣୀ ବ୍ୟଙ୍ଗ କରି କହିଲେ–"ଖୋଜନ୍ତୁ । ମୋର ଓଢ଼ଣୀ ଭିତରେ ବୋଧହୁଏ ତୋର ମହାରାଜ ଲୁଚିଥାଇପାରନ୍ତି । କାଇଁ ଅନ୍ୟ କେଉଁଠି ତ ଦେଖାଯାଉନାହାନ୍ତି ।"

ଦାସୀ ଲାଜରେ ଜଡ଼ସଡ଼ ହୋଇଗଲା । କ୍ଷମା ଯାଚନା କରି କହିଲା– "ମହାଦେବୀ ! କ୍ଷମା କରନ୍ତୁ । ଏକ ଆବଶ୍ୟକ ସୂଚନା ଦେବା ନିମନ୍ତେ ଆସିଥିଲି । ଯୁଦ୍ଧ ପରିଷଦର ଏକ ଜରୁରୀକାଳୀନ ବୈଠକ ବସୁଛି । ସେଠାରେ ମହାମାତ୍ୟ ଓ ଅନ୍ୟମାନେ ପରମ ଭଟ୍ଟାରକଙ୍କର ପ୍ରତୀକ୍ଷା କରୁଛନ୍ତି ।"

ମହାରାଣୀ ଆହୁରି ଚିଡ଼େଇବା ପାଇଁ କହିଲେ– "ଯା... ଅମାତ୍ୟଙ୍କୁ କହିଦେବୁ, ତାଙ୍କର କୃଷ୍ଣ ଓ କାହ୍ନା କେଉଁ କୁଞ୍ଜରେ ହିଞ୍ଜଡ଼ାମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ପାନଗାନରେ ଉନ୍ମତ୍ତ ହେଉଥିବେ । ଯା ସେଠାରେ ଖୋଜିବୁ । ସେ ଏଠାରେ ନାହାନ୍ତି ।"

ଦାସୀ ମୁଣ୍ଡ ନୁଆଁଇ ଅଭିବାଦନ କରି ଚାଲିଗଲା । ଧ୍ରୁବଦେବୀ ଅନ୍ୟମନସ୍କ ଭାବରେ ତପସ୍ୟାକୁ କହିଲେ– "ତପସ୍ୟା ତୁ ଆଜି ହିଁ କୁମାର ଚନ୍ଦ୍ରଗୁପ୍ତଙ୍କ ନିକଟକୁ ଚାଲିଯାଆ । ଆଉ ତାଙ୍କୁ ଜଣାଇବୁ ଯେ ସେ ନିଜର ସୁରକ୍ଷା ପ୍ରତି ବିଶେଷ ଦୃଷ୍ଟି ଦେବେ । ଆଉ...ଆଉ... "

ତପସ୍ୟା ବ୍ୟାକୁଳ ହୋଇ ପଚାରିଲା– "ଆଉ କ'ଣ ଦେବୀ । କୁହନ୍ତୁନା । କୌଣସି କୁଣ୍ଠା ନରଖି କୁହନ୍ତୁ ।"

–"ଠିକ୍ ସମୟ ଆସିଲେ ଥରୁଟିଏ ହେଲେ ସେ ମୋ ସହିତ ସାକ୍ଷାତ କରିବାକୁ କହିବୁ । କିନ୍ତୁ ପରିସ୍ଥିତିକୁ ଭଲ ଭାବରେ ଅନୁଧ୍ୟାନ କଲାପରେ ହିଁ ସେ ଯାହା ନିଷ୍ପତ୍ତି ନେବେ । କୌଣସି ସମୟରେ ସେ ଯେପରି ବିପଦରେ ନପଡ଼ନ୍ତି ସେଥିପ୍ରତି ତାଙ୍କୁ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ ।"

–"ଯାହା ଆଜ୍ଞା !" କହି ତପସ୍ୟା ଧୀରେ ଧୀରେ ସେଠାରୁ ଚାଲିଗଲା । ମହାରାଣୀ ଧ୍ରୁବଦେବୀ ଅନ୍ତଃପୁରର ବହୁମୂଲ୍ୟବାନ ରାଜଶଯ୍ୟା ଉପରେ ନିଜକୁ ଲୋଟାଇ ଦେଲେ । ଆଖିବନ୍ଦ କଲାକ୍ଷଣି ଆଖି ଆଗରେ କୁମାର ଚନ୍ଦ୍ରଗୁପ୍ତଙ୍କ ସୁନ୍ଦର ସୌମ୍ୟଶାନ୍ତ ମୁହଁଟି ନାଚିଗଲା । ମହାରାଣୀଙ୍କର ଅନ୍ତରରୁ ଏକ ଦୀର୍ଘଶ୍ୱାସ ବାହାରି ଆସିଲା ।

ମହାରାଣୀ ଧ୍ରୁବଦେବୀଙ୍କର ଶୟନକକ୍ଷରୁ ବାହାରି ମହାରାଜ ରାମଗୁପ୍ତ ସିଧାଯାଇ ନିଜର ନୃତ୍ୟଶାଳାରେ ପହଞ୍ଚିଲେ । ନୃତ୍ୟଶାଳାର ଦ୍ୱାର ସମ୍ମୁଖରେ ହିଁ ଅମାତ୍ୟଙ୍କର ଏକ ବାମନ ସନ୍ଦେଶ ବାହକ ସହିତ ମହାରାଜାଙ୍କର ସାକ୍ଷାତ ହେଲା ।

ସେ କହିଲା–''ମହାରାଜାଧିରାଜ ପରମ ଭଟ୍ଟାରକଙ୍କର ଜୟ ହେଉ ।''

ରାମଗୁପ୍ତ ହସି ହସି କହିଲେ–''ବାମନବୀର କୁହ କି ସନ୍ଦେଶ ଅଛି ?''

ବାମନ ନିଜର ଚିକ୍କଣିଆ ଦାଢ଼ି ଉପରେ ହାତ ସାଉଁଳେଇ ସାଉଁଳେଇ ବାହୁକୁ ଝଟକେଇ ଦେଇ ଉତ୍ତର ଦେଲା– ''ଅତି ଉତ୍ତମ ମହାରାଜ ।''

ମହାରାଜ ରାମଗୁପ୍ତ ବିଦୂଷକ ବାମନର କାନ୍ଧ ଉପରେ ହାତ ରଖି କହିଲେ– ''କିନ୍ତୁ, ବାମନବୀର ! ତୁମ୍ଭରି ମୁଖଭଙ୍ଗୀରୁ ଯାହା ଜଣାପଡୁଛି, କେଉଁଠି କିଛି ଗୋଳମାଳ ହୋଇଯାଇଚି ।''

ବାମନ ନିଜ କାନ୍ଧ ଉପରେ ଥିବା ରାମଗୁପ୍ତଙ୍କ ହାତ ଆଡ଼େଇ ଦେଲା, ସତେ ଯେମିତି ରାମଗୁପ୍ତଙ୍କ ହାତ କାନ୍ଧ ଉପରେ ରଖିବା ତାକୁ ପସନ୍ଦ ହେଉନଥିଲା । ବାମନ ଜଣେ ସାଧାରଣ ରାଜକର୍ମଚାରୀ ହେଲେ ସୁଦ୍ଧା ସେ ରାଜଦରବାରର ଜଣେ ସମ୍ମାନାସ୍ପଦ ବିଦୂଷକ ଥିଲା, ତାର କାର୍ଯ୍ୟକଳାପ ପ୍ରତି କେହି କୌଣସି ଆପତ୍ତି କରୁନଥିଲେ । ପୁଣି ରାମଗୁପ୍ତ ଏମିତି ଏକ ବିଚିତ୍ର ସମ୍ରାଟ ଥିଲେ ଯାହାଙ୍କୁ ସଂସାରଯାକର ହିଂଜଡ଼ା, ବାମନ, ନଂପୁସକ, ଭୀରୁ କାପୁରୁଷମାନଙ୍କ ପ୍ରତି ବେଶୀ ପ୍ରେମ ଓ ଶ୍ରଦ୍ଧା ଆକର୍ଷଣ ଥିଲା । ବିଦୂଷକ ବାମନ କହିଲା –''ମୋର ମୁଖଭଙ୍ଗୀର ମୁଦ୍ରା ? ସିଏ ପୁଣି କ'ଣ ? ମୁଁ ତ ସେପରି କିଛି ଭାବଭଙ୍ଗୀର ମୁଦ୍ରା ଆପଣଙ୍କ ଆଗରେ ପ୍ରଦର୍ଶନ କରିନାହିଁ ।''

–''ହାଃ... ହାଃ...ହାଃ....ହାଃ...'' ରାମଗୁପ୍ତ ଖୁବ୍ ଜୋରରେ ହସି ଉଠିଲେ ଆଉ କହିଲେ –''ଆରେ ବାମନବୀର, ମୋର କହିବାର ଉଦ୍ଦେଶ୍ୟ ତୁମେ ବୁଝିପାରିଲ ନାହିଁ । ମୁଁ ଧନଲକ୍ଷ୍ମୀ ମୁଦ୍ରା କଥା କହିନାହିଁ । ତମର ଭାବଭଙ୍ଗୀମାରୁ ମୁଁ ଯାହା ବୁଝିଲି, ସେଇ ଅଭିନୟ ମୁଦ୍ରା କଥା କହୁଥିଲି ।''

–''ଓଃ !'' ବିସ୍ମୟଭରା କଣ୍ଠରେ ବାମନ ବିଦୂଷକ କହିଲା–''ମୁଁ ତ ଆଶ୍ଚର୍ଯ୍ୟ ହୋଇଯାଇଥିଲି ମହାରାଜ । ଭାବୁଥିଲି ମୋ ଦ୍ୱାରା ମୁଦ୍ରା ପ୍ରଚଳନ କେମିତି ହେଲା, ମୁଁ ତ କେବେ କେଉଁ ରାଜ୍ୟର ରାଜା ହୋଇପାରିନାହିଁ, ମୋର ବା ମୁଦ୍ରା ପ୍ରଚଳନ ହେଲା କେମିତି ?''

ରାମଗୁପ୍ତ ପଚାରିଲେ –''ବାମନବୀର ! କେଉଁ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟରେ ତୁମର ଏଠାକୁ ଆଗମନ ହୋଇଛି ?''

–''ହୁଁ..'' ବାମନ କହିଲା–''ବିନା କାରଣରେ ମୁଁ କେବେ ହେଲେ ମୋର ପାଦ ଦୁଇଟିକୁ କଷ୍ଟ ଦିଏ ନାହିଁ । ମହାଅମାତ୍ୟ ଆପଣଙ୍କୁ ଅପେକ୍ଷା କରିଛନ୍ତି ।''

–"କେଉଁଠି ?"

–"ଯୁଦ୍ଧ ପରିଷଦ ବୈଠକରେ ।"

–"କାହିଁକି ? ହଠାତ୍ ଯୁଦ୍ଧ ପରିଷଦର ବୈଠକ କାହିଁକି ଆହୂତ ହୋଇଛି ? କ'ଣ କୌଣସି ପଡ଼ୋଶୀ ରାଜ୍ୟ ମଗଧର ପ୍ରତାପରେ ଆତଙ୍କିତ ହୋଇପଡ଼ିଛି ନା କୌଣସି ରାଜ୍ୟ ବାହ୍ୟଶତ୍ରୁଙ୍କ ଆକ୍ରମଣରେ ଭୟଭୀତ ହୋଇ ପଡ଼ି ମଗଧର ସହାୟତା ଚାହୁଁଛି ?"

ବାମନର ମୁଖମଣ୍ଡଳରେ ବ୍ୟଙ୍ଗାତ୍ମକ ହସ ନାଚି ଉଠିଲା ।

ସେ ବ୍ୟଙ୍ଗ କରି କହିଲା–"ଭଟ୍ଟାରକ ମହୋଦୟ ! ଆପଣ ଯେଉଁ ସମସ୍ୟା ପ୍ରସଙ୍ଗ ଉଠାଇଲେ ତାହା ଯୁଦ୍ଧ ପରିଷଦରେ ଆଲୋଚନା ହୁଏନାହିଁ । ତାହାର ସମାଧାନ ଶାନ୍ତି ପରିଷଦରେ ହୁଏ ।"

–"ଓଃ..." ରାମଗୁପ୍ତ ନିର୍ଲଜ୍ଜ ହସ ତୋଳି କହିଲେ–"ଆରେ, ଏକଥା ମୁଁ ଭୁଲିଯାଇଥିଲି, ବାମନବୀର । ତେବେ ଏଥିପାଇଁ ମୋର ଉପସ୍ଥିତିର ଆବଶ୍ୟକତା ମହାଅମାତ୍ୟ ଅନୁଭବ କଲେ କାହିଁକି ? ସିଏ ତ ଏକଥା ଭଲ ଭାବେ ଜାଣନ୍ତି ମୁଁ ମୋର ରଙ୍ଗଶାଳ । ଛାଡ଼ି କୁଆଡ଼େ ଯାଏନାହିଁ ।"

–"ରଙ୍ଗଶାଳାରେ ତ ଆପଣ ସବୁବେଳେ ରହିଥାନ୍ତି । ଆପଣଙ୍କ ମୃତ୍ୟୁପରେ ପରଲୋକକୁ ତାହା ମଧ୍ୟ ଚାଲିଯିବ । ତେବେ ସେକଥା ଛାଡ଼ନ୍ତୁ । ଆପଣଙ୍କ ପାଖରେ ଅମାତ୍ୟଙ୍କ କିଛି ଜରୁରୀ କାର୍ଯ୍ୟ ଅଛି । ଯୁଦ୍ଧ ପରିଷଦ ବୈଠକରେ ଅନ୍ୟ ପାରିଷଦମାନେ ବସିଛନ୍ତି । ସମସ୍ତେ ଆପଣଙ୍କ ଆଗମନକୁ ଚାହିଁ ରହିଛନ୍ତି ।"

ରାମଗୁପ୍ତ କହିଲେ–"ଠିକ୍ ଅଛି । ଚାଲ୍ ।"

–"ହଁ, ଯାହା ଆପଣଙ୍କର କୃପା.." କହି ବାମନ ବିଦୂଷକ ଚାଲିଗଲା । ତାର ପଛେ ପଛେ ରାମଗୁପ୍ତ ।

ରାମଗୁପ୍ତଙ୍କୁ ଦେଖି ମହାଅମାତ୍ୟ ଶିଖରସେଣ କହିଲେ–"ଆସନ୍ତୁ ପରମ ଭଟ୍ଟାରକ । ଆପଣଙ୍କୁ ଅନେକବେଳୁ ଆମେ ଅପେକ୍ଷା କରି ବସିଛୁ ।"

ରାମଗୁପ୍ତ ଚମକି ପଡ଼ିଲେ–"କାହିଁକି ? ମଗଧ ଉପରେ କୌଣସି ଶତ୍ରୁ ଆକ୍ରମଣ କରିଦେଇଚି ?"

–"ନାହିଁ, ଆପଣଙ୍କୁ ଯୁଦ୍ଧ ଭୂମିକୁ ଯିବାକୁ ପଡ଼ିବ ।"

–"ମୋତେ ?" ରାମଗୁପ୍ତ ବିଚଳିତ ହୋଇଉଠିଲେ । .... "କିନ୍ତୁ... କାହିଁକି ?

ଆପଣ ତ ଭଲଭାବେ ଜାଣନ୍ତି ମୁଁ ଗୋଟେ ଶାନ୍ତିପ୍ରିୟ ସହୃଦୟ ମଣିଷ । ଯୁଦ୍ଧ ବିଗ୍ରହ ପ୍ରତି ସବୁବେଳେ ମୋର ବିତୃଷ୍ଣା , ଘୃଣା ।''

–''କିନ୍ତୁ ସମ୍ରାଟ ! ଆପଣ ତ ଦିଗ୍‌ବିଜୟ କରିବାକୁ ଘୋଷଣା କରିସାରିଛନ୍ତି । ଯଦି ଦିଗ୍‌ବିଜୟ ପାଇଁ ଯୁଦ୍ଧଯାତ୍ରା ଆରମ୍ଭ କରିବେ ନାହିଁ, ତେବେ ଆପଣଙ୍କ ଯଶକୀର୍ତ୍ତି ଉପରେ କଳଙ୍କ ଲାଗିଯିବ । ଅନ୍ତତଃ ପକ୍ଷେ ଥରେ ହେଲେ ଆପଣଙ୍କ ବିଜୟକୀର୍ତ୍ତିର ରଣବାଦ୍ୟ ଭେରୀ ତୂରୀ ବାଜିବାକୁ ପଡ଼ିବ ।''

ରାମଗୁପ୍ତ ଚିନ୍ତାଗ୍ରସ୍ତ ଭାବରେ କହିଲେ–''କିନ୍ତୁ ଅମାତ୍ୟ ! ମୁଁ ତ ଏବେ ଗୃହଯୁଦ୍ଧରେ ଛନ୍ଦି ହୋଇପଡ଼ିଛି, ଦିଗ୍‌ବିଜୟରେ କୁଆଡ଼େ ବାହାରିବି ?''

–''ଗୃହଯୁଦ୍ଧ ?'' ଶିଖରସେଣ ଆଶ୍ଚର୍ଯ୍ୟଭରା ଦୃଷ୍ଟିରେ ରାମଗୁପ୍ତଙ୍କୁ ଚାହିଁ ରହିଲେ–''କାହିଁ ମୋତେ କୁଆଡ଼ୁ ଗୃହଯୁଦ୍ଧର ସାମାନ୍ୟ ଆଭାସ ସୁଦ୍ଧା ମିଳିନାହିଁ ।''

ରାମଗୁପ୍ତ ଦୀର୍ଘଶ୍ୱାସ ଟାଣି କହିଲେ–''ଆପଣ ସେଇ ଗୃହଯୁଦ୍ଧର ଆଭାସ ବା ପାଇବେ କେମିତି ? ସେଇ ଯୁଦ୍ଧ ମୋରି ଭିତରେ ଅନବରତ ଲାଗିରହିଛି, ଅମାତ୍ୟ । ମୁଁ ମଗଧର ସମ୍ରାଟ ପରା ଅମାତ୍ୟ ? ମୁଁ ରାଜା ଅଥଚ ମୋର ପତ୍ନୀ ମୋର ସାନଭାଇ ଚନ୍ଦ୍ରଗୁପ୍ତଙ୍କୁ ପ୍ରେମ କରୁଛି । ଦିଗ୍‌ବିଜୟରେ ବାହାରିବା ପୂର୍ବରୁ ମନେ ହେଉଛି ମତେ ଅନ୍ତଃପୁର ଭିତରେ ଲଢ଼େଇ କରିବାକୁ ପଡ଼ିବ । ନୋହିଲେ କୁମାର ଚନ୍ଦ୍ରଗୁପ୍ତ ଓ ମହାଦେବୀ ପାଇଁ ମୋତେ ପାଗଳ ହୋଇଯିବାକୁ ପଡ଼ିବ ।''

ମହାଅମାତ୍ୟ ସ୍ମିତ ହସ ତୋଳି ନୀରବ ହୋଇଗଲେ ।

ଶିଖରସେଣଙ୍କ ମୁହଁରେ ହସ ଦେଖି ରାମଗୁପ୍ତ ମନେ ମନେ କ୍ରୋଧ ଜର୍ଜରିତ ହୋଇପଡ଼ିଲେ ଓ କହିଲେ–''ଅମାତ୍ୟ ! ମୋର ଅନ୍ତର ଭିତରେ ଗୋଟେ ଅଶାନ୍ତ ଝଡ଼ ସୃଷ୍ଟି ହୋଇଛି, ମୋର ପୌରୁଷ, ଅନ୍ତଃପୁର ଭିତରେ ଦାବାଗ୍ନିରେ ଜଳୁଚି ଆଉ ଆପଣ ହସୁଛନ୍ତି ?''

–''ପରମ ଭଟ୍ଟାରକ !'' ଶିଖରସେଣ ରାମଗୁପ୍ତଙ୍କୁ ଅପଲକ ଦୃଷ୍ଟିରେ ଚାହିଁ କହିଲେ–''ଆପଣ କାହିଁକି ଭୁଲିଯାଇଛନ୍ତି ସମ୍ରାଟ ସମୁଦ୍ରଗୁପ୍ତଙ୍କ ଇଛା ବିରୁଦ୍ଧରେ ରହି, ତାଙ୍କ ଆଦେଶକୁ ଉଲ୍ଲଂଘନ କରି, ନୀତିଶାସ୍ତ୍ର ଅନୁସାରେ ମୁଁ ଆପଣଙ୍କୁ ମଗଧର ରାଜସିଂହାସନ ଉପରେ ବସାଇଛି ।

–''ଚୁଲିକି ଯାଉ ତୁମର ନୀତିଶାସ୍ତ୍ର...'' ରାମଗୁପ୍ତ ଚିତ୍କାର କଲେ–''ନୀତିଶାସ୍ତ୍ର ଅନୁସାରେ ଜ୍ୟେଷ୍ଠପୁତ୍ରକୁ ହିଁ ରାଜସିଂହାସନ ପ୍ରାପ୍ତ ହୋଇଥାଏ କିନ୍ତୁ ନୀତିଶାସ୍ତ୍ର କେଉଁଠି କହିଛି–ଜଣକର ପତ୍ନୀ ଆଉ କେଉଁ ପରପୁରୁଷ ସହିତ ପ୍ରଣୟ କରିପାରେ ।''

-''କଦାପି ନୁହେଁ...'' ମହାଅମାତ୍ୟ ଶିଖରସେଣ କହିଲେ ।

-''କିନ୍ତୁ ଏହି ଅନ୍ତଃପୁରରେ ଯେଉଁ ନିଆଁ ଜଳୁଚି, ତାକୁ ଲିଭାଇବ କିଏ ?''

ମହାଅମାତ୍ୟ ଶିଖରସେଣଙ୍କ ଆଖି ଦୁଇଟି ଚମକି ଉଠିଲା । ସେ କହିଲେ- ''ଆପଣ ଦିଗ୍‌ବିଜୟରେ ବାହାରନ୍ତୁ । ଆପଣଙ୍କ ସହିତ ଯୁଦ୍ଧଯାତ୍ରାରେ କୁମାର ଚନ୍ଦ୍ରଗୁପ୍ତଙ୍କୁ ବି ଯିବାକୁ ହେବ । ଯୁଦ୍ଧଯାତ୍ରାବେଳେ ପଥ ମଧ୍ୟରେ ଚନ୍ଦ୍ରଗୁପ୍ତଙ୍କ ଅନ୍ତେଷ୍ଟିକ୍ରିୟା କରିଦେବା । ତାପରେ ଅନ୍ତଃପୁରର ବିଦ୍ରୋହ ଦାବାଗ୍ନି ଆପେ ଆପେ ଅପସରି ଯିବ ।''

-''କିନ୍ତୁ ଏହା କିପରି ବା ସମ୍ଭବ ହେବ ? କୁମାର ଚନ୍ଦ୍ରଗୁପ୍ତ ତ ଆଜିକାଲି ନିଜ ଛାଇକୁ ସୁଦ୍ଧା ବିଶ୍ୱାସ କରୁନାହାନ୍ତି । ପ୍ରତି ପଦକ୍ଷେପରେ ସେ ସତର୍କତା ଅବଲମ୍ବନ କରୁଛନ୍ତି ।''

-''ଏସବୁ ଦାୟିତ୍ୱ ମୋ ଉପରେ ଛାଡ଼ିଦିଅନ୍ତୁ । ଆପଣଙ୍କ ପରି ବୁଦ୍ଧିମାନଙ୍କୁ ଏପରି ଚିନ୍ତା ଶୋଭା ପାଏନାହିଁ ।''

ରାମଗୁପ୍ତ କୁଟୀଳ ହସ ହସି କହିଲେ-''ତେବେ ଠିକ୍ ଅଛି ।''

ମହାଅମାତ୍ୟ ଶିଖରସେଣ କହିଲେ-''ଯୁଦ୍ଧଯାତ୍ରାରେ ବାହାରିବା ପାଇଁ ଆଜି ଶୁଭଲଗ୍ନ ବାହାରିଛି ବୋଲି ରାଜପୁରୋହିତ କହୁଛନ୍ତି ।''

-''ରାଜପୁରୋହିତ ଗୋଟେ ମୂର୍ଖ ବ୍ରାହ୍ମଣ । ତାଙ୍କ ଶୁଭ ଲଗ୍ନବାଣୀ କଥା ଛାଡ଼ନ୍ତୁ । ଆଜି ନୁହେଁ, ଆସନ୍ତାକାଲି ଦିଗ୍‌ବିଜୟରେ ବାହାରିବା ।''

-''ଠିକ୍ ଅଛି । ଯୁଦ୍ଧଯାତ୍ରାରେ କୁମାର ଚନ୍ଦ୍ରଗୁପ୍ତ ଓ ମହାଦେବୀ ମଧ୍ୟ ଯିବେ ତ ?''

-''ସେ ଦୁହେଁ ବି ଆମ ସହିତ ଯିବା ଉଚିତ । ନୋହିଲେ ମୁଁ ରଣଭୂମିରେ ଥିବାବେଳେ ସେ ଦୁହେଁ ଅନ୍ତଃପୁରରେ ରାସଲୀଳା ଚଳେଇବେ ଯେ...''

-''ତେବେ ଠିକ୍ ଅଛି...'' ଅମାତ୍ୟ କହିଲେ ।

ରାମଗୁପ୍ତ ରଙ୍ଗଶାଳା ଆଡ଼େ ପୁଣି ଅଗ୍ରସର ହେଲେ ।

ମଗଧର ଦିଗ୍‌ବିଜୟୀ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦେହାନ୍ତ ପରେ ପରେ ଛଳେ ବଳେ କୌଶଳେ ରାମଗୁପ୍ତ ସିଂହାସନ ଆରୋହଣ କଲାପରେ ସାମ୍ରାଜ୍ୟରୁ ରାଜଲକ୍ଷ୍ମୀ ଯେମିତି ଉଭେଇଗଲେ । ମଗଧର ବଶ୍ୟତା ସ୍ୱୀକାର କରିଥିବା ରାଜ୍ୟମାନେ ମଗଧର ଦୁର୍ବଳତାର ସୁଯୋଗ ନେଇ ସ୍ୱାଧୀନ ହେବା ଆରମ୍ଭ କଲେ । ହିମାଳୟରୁ ସିନ୍ଧୁ ଉପତ୍ୟକା

ପର୍ଯ୍ୟନ୍ତ ବ୍ୟାପ୍ତ ବିଶାଳ ଭୂଖଣ୍ଡରେ ନାନା ଜାତିର, ନାନା ଭାଷା ଓ ସଂସ୍କୃତିର ପ୍ରଜାମାନଙ୍କ ରାଜ୍ୟ ଥିଲା । ସେହି ରାଜ୍ୟଗୁଡ଼ିକ ସମୁଦ୍ରଗୁପ୍ତଙ୍କ ପ୍ରତାପରେ ଆତଙ୍କିତ ହୋଇ ରହିଆସିଥିଲେ । ପୁଣି ସେମାନେ ବହୁଧା ବିଭକ୍ତ ହୋଇ ପରସ୍ପର ମଧ୍ୟରେ ଯୁଦ୍ଧ କରି ଆସୁଥିଲେ । ସେହି ରାଜ୍ୟଗୁଡ଼ିକ ମଧ୍ୟରେ ଶକ ଭୁରଣ୍ଡ ନାମକ ଗୋଟେ ଦୁର୍ଦ୍ଦାନ୍ତ ଜାତି ଦ୍ୱାରା ସିନ୍ଧୁ ଉପତ୍ୟକାର ବିସ୍ତୀର୍ଣ୍ଣ ପାର୍ବତ୍ୟ ଅଞ୍ଚଳ ତାଙ୍କ ଦଖଲରେ ଥିଲା । ଏହି ପାର୍ବତ୍ୟ ରାଜ୍ୟର ପ୍ରଜାମାନେ ନିଜକୁ ଶକ ଏବଂ ଏମାନଙ୍କ ରାଜା ଦୈବପୁତ୍ର ଉପାଧିରେ ନିଜକୁ ଭୂଷିତ କରିଥିଲେ ।

ସମ୍ରାଟ ସମୁଦ୍ରଗୁପ୍ତ ନିଜ ଶାସନ କାଳରେ ଦୁର୍ଦ୍ଦାନ୍ତ ଶକ ଜାତିକୁ ଦମନ କରି ପରାଧୀନ କରିପାରିଥିଲେ । ଶକମାନେ ଏକତାବଦ୍ଧ ହୋଇ ମଗଧ ବିରୋଧରେ ବିଦ୍ରୋହ ମଧ୍ୟ କରୁଥିଲେ । କିନ୍ତୁ ସମ୍ରାଟ ସମୁଦ୍ରଗୁପ୍ତ ଅତି ଚତୁରତା ଓ କୌଶଳର ସହିତ ସେମାନଙ୍କ ବିଦ୍ରୋହକୁ ଦମନ କରି ଆସିଥିଲେ । ନିର୍ମମ ନିଷ୍ଠୁର ଶକମାନଙ୍କ ବିଷଦାନ୍ତକୁ ଭାଙ୍ଗି ଦେଇଥିଲେ । ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦେହାନ୍ତର କିଛି ଦିନ ପୂର୍ବରୁ ଦୁର୍ଦ୍ଦାନ୍ତ ଶକମାନଙ୍କ ଦଳପତିଙ୍କର ମୃତ୍ୟୁ ଘଟିଥିଲା । ତାଙ୍କରି ଉତ୍ତରାଧିକାରୀ ଭାବେ ଉଭା ହୋଇଥିଲେ ରୁଦ୍ରସିଂହ । ରୁଦ୍ରସିଂହ ଯୌବନ କାଳରୁ ହିଁ ଶକଜାତିର ଏକ ଦୁର୍ଦ୍ଦାନ୍ତ ଯୋଦ୍ଧା ଭାବେ ନିଜକୁ ପ୍ରସ୍ତୁତ କରିସାରିଥିଲେ ।

ସେ ନିଜକୁ ପଞ୍ଚନଦର ଶାସକ, ଶକମାନଙ୍କ ନେତା ଦୈବପୁତ୍ର ରୁଦ୍ରସିଂହ ବୋଲି ଘୋଷଣା କଲେ ।

ଶକଜାତିର ଘୋର ଶତ୍ରୁ ମଗଧର ଗୁପ୍ତବଂଶ । ଶକମାନେ ନିଜକୁ ସ୍ୱାଧୀନ ରାଜ୍ୟର ନାଗରିକ ଭାବେ ଜୀବନଯାପନ କରିବାକୁ ମଗଧର ଶାସକମାନେ କେବେହେଲେ ଚାହିଁନାହାନ୍ତି । ଶକମାନେ ନିର୍ମମ ନିଷ୍ଠୁର ମ୍ଳେଚ୍ଛ ଅନାର୍ଯ୍ୟ ବୋଲି ମଗଧ ଇତିହାସରେ ବାରଂବାର ଅବହେଳିତ, ନିର୍ଯାତିତ ହୋଇ ଆସିଛନ୍ତି । ପୂର୍ବପୁରୁଷମାନଙ୍କ ପ୍ରତି ମଗଧ ସମ୍ରାଟ ସମୁଦ୍ରଗୁପ୍ତ ଓ ତାଙ୍କ ଗୁପ୍ତ ବଂଶର ଶାସକମାନେ ଯେଉଁ ଦମନଲୀଳା ଚଳାଇଥିଲେ ସେଇ ପ୍ରତିଶୋଧ ନେବାର ସମୟ ଆସିଛି ବୋଲି ରୁଦ୍ରସିଂହ ମନେ ମନେ ଉଲ୍ଲସିତ ହୋଇଉଠୁଥିଲେ ।

ମଗଧ ସମ୍ରାଟ ସମୁଦ୍ରଗୁପ୍ତଙ୍କ ମୃତ୍ୟୁ ପରେ ପରେ ରୁଦ୍ରସିଂହ ମଗଧ ଉପରେ ତୁରନ୍ତ ଆକ୍ରମଣ ପାଇଁ ଯୋଜନା ଆରମ୍ଭ କରିଦେଲେ ।

ମଗଧର ବିଭିନ୍ନ ଜନପଦଠାରୁ ଆରମ୍ଭ କରି ରାଜଧାନୀ ପାଟଳୀପୁତ୍ର ପର୍ଯ୍ୟନ୍ତ

ପଞ୍ଚନଦର ରାଜା ରୁଦ୍ରସିଂହ ଗୁପ୍ତଚର ମୃତୟନ କରିଦେଲେ । ମଗଧ ରାଜଧାନୀ ପାଟଳୀପୁତ୍ରର ରାଜମହଲ ଓ ଅନ୍ତଃପୁରରେ ଘଟୁଥିବା ପ୍ରତିଟି ଘଟଣାର ଖବର ସଂଗ୍ରହରେ ଗୁପ୍ତଚରମାନେ ମାତିଗଲେ ।

ଶକରାଜ ରୁଦ୍ରସିଂହ କୁମାର ଚନ୍ଦ୍ରଗୁପ୍ତଙ୍କ ଶକ୍ତି ଓ ସାମର୍ଥ୍ୟକୁ ଭଲ ଭାବେ ଜାଣିଥିଲେ । ସମ୍ରାଟ ସମୁଦ୍ରଗୁପ୍ତ ଏକଚକ୍ରବର୍ତ୍ତୀ ସମ୍ରାଟ ଭାବରେ ରାଜ୍ୟବିସ୍ତାର ଚଳାଇବା ପଛରେ କୁମାର ଚନ୍ଦ୍ରଗୁପ୍ତଙ୍କ ଯୋଗଦାନ ଯେ ଅଭୂତପୂର୍ବ ଥିଲା ତାହା ଶକରାଜ ରୁଦ୍ରସିଂହ ଅବଗତ ଥିଲେ । ତାଙ୍କ ପୂର୍ବଜ ଶକ ଦଳପତିମାନଙ୍କ ମଗଧ ବିରୋଧରେ ବିଦ୍ରୋହବେଳେ କୁମାର ଚନ୍ଦ୍ରଗୁପ୍ତ ମଗଧ ସେନାଙ୍କ ନେତୃତ୍ୱ ନେଇ ଯେପରି ନିର୍ମମ ନିଷ୍ଠୁର ଭାବେ ଦମନ କରିଥିଲେ ତାହା ମନେ ପକାଇ ରୁଦ୍ରସିଂହ ପ୍ରତିଶୋଧର ନିଆଁରେ ଜଳୁଥିଲେ ।

କିନ୍ତୁ ଏବେ ? ସମୁଦ୍ରଗୁପ୍ତ ନାହାନ୍ତି, କୁମାର ଚନ୍ଦ୍ରଗୁପ୍ତ ଏବେ ମଗଧ ରାଜପ୍ରାସାଦ ମଧ୍ୟରେ ଏକପ୍ରକାର ଗୃହବନ୍ଦୀ ଆଉ ଭୀରୁ କ୍ଳୀବ ନଂପୁସକ ରାମଗୁପ୍ତ ମଗଧର ସମ୍ରାଟ । ହାଃ ହାଃ ...

ସମୁଦ୍ରଗୁପ୍ତଙ୍କ ପରେ ଚନ୍ଦ୍ରଗୁପ୍ତ ହିଁ ମଗଧ ସମ୍ରାଟ ହେବେ ବୋଲି ଯେଉଁ ସମ୍ଭାବନାର କଳ୍ପନା ଜଳ୍ପନା ହେଉଥିଲା କିନ୍ତୁ କୁଟନୈତିକ ଖେଳରେ ଚନ୍ଦ୍ରଗୁପ୍ତଙ୍କୁ ପ୍ରତାରିତ କରି ରାମଗୁପ୍ତ ମଗଧ ନରେଶ ଭାବେ ରାଜଗାଦୀ ହାସଲ କରିବା ବାର୍ତ୍ତା ରୁଦ୍ରସିଂହଙ୍କ ପାଖରେ ପହଞ୍ଚିଲା କ୍ଷଣି ରୁଦ୍ରସିଂହ ଆଶ୍ୱସ୍ତ ହେଲେ ।

ରୁଦ୍ରସିଂହଙ୍କ ଦ୍ୱାରା ରାଜସଭା ବାରଂବାର ଆହୂତ ହେଲା । ଶକ ଯୋଦ୍ଧାମାନଙ୍କ ଉପସ୍ଥିତିରେ ପାରିଷଦବର୍ଗରେ ମଗଧ ଆକ୍ରମଣ ପାଇଁ ପ୍ରତିଦିନ ବିଭିନ୍ନ ଯୋଜନା, କଳ୍ପନା ଜଳ୍ପନା ଚାଲୁଥାଏ କିନ୍ତୁ ନିଜ ଶକ୍ତି ସହିତ ମଗଧ ସେନାର ଦୁର୍ବାର ଶକ୍ତି ସହିତ ତୁଳନା ହେବା ପରେ ମଗଧ ଆକ୍ରମଣ ଯୋଜନା ସ୍ଥଗିତ ରଖିବାକୁ ପଡୁଥାଏ ।

କାହିଁ ବିଶାଳ ମଗଧସେନାର ଶକ୍ତି ଆଉ ସାମାନ୍ୟ ଗୋଟେ ରାଜ୍ୟ ପଞ୍ଚନଦର ସେନାବାହିନୀର ଶକ୍ତି ଯାହାକି ମଗଧ ଆକ୍ରମଣର ସାମର୍ଥ୍ୟ ରଖେ ।

ରୁଦ୍ରସିଂହ ରାଜସଭାରେ ଚିନ୍ତାମଗ୍ନ ଭାବରେ ବସିଥିଲେ । ପଞ୍ଚନଦ ସେନାବାହିନୀର ଦୁର୍ଦ୍ଦାନ୍ତ ସେନାପତି ସୂର୍ଯ୍ୟପ୍ରତାପ ସିଂହ, ଅମାତ୍ୟ ଚନ୍ଦ୍ରମୋହନ, କୋଷାଧକ୍ଷ ସାତ୍ୟକୀସେଣ ଶକରାଜ ରୁଦ୍ରସିଂହଙ୍କ ମୁହଁକୁ ଚାହିଁରହିଥିଲେ ।

ଏବେ ସୁଯୋଗ ମିଳିଛି ମଗଧ ଆକ୍ରମଣ ପାଇଁ । କିନ୍ତୁ ?

ଶକରାଜ ରୁଦ୍ରସିଂହ ଶକସେନାବାହିନୀର ଶକ୍ତି, ମଗଧ ଆକ୍ରମଣ ପାଇଁ

ରଣକୌଶଳ ନେଇ ପାରିଷଦବର୍ଗ ସହ ଆଲୋଚନା ଚଳାଇଥିବାବେଳେ ସଭା କକ୍ଷରେ ପ୍ରବେଶ କଲା ପ୍ରତିହାରୀ ଓ ଅଭିବାଦନ ଜଣାଇ କହିଲା–"ଶକରାଜଙ୍କ ଜୟ ହେଉ ।"

ଅନ୍ୟମନସ୍କ ଭାବେ ସିଂହାସନ ଉପରେ ବସିଥିବା ଶକରାଜ ରୁଦ୍ରସିଂହ କହିଲେ – "କୁହ ପ୍ରତିହାରୀ, କେଉଁ ସଂବାଦ ନେଇ ଆସିଛ ?"

ପ୍ରତିହାରୀ କହିଲା–"ରାଜଗୁରୁ ଆଚାର୍ଯ୍ୟ ବିଷ୍ଣୁଦତ୍ତ ଆପଣଙ୍କୁ ସାକ୍ଷାତ କରିବାକୁ ଆସିଛନ୍ତି, ମହାରାଜ ।"

ଆଚାର୍ଯ୍ୟ ବିଷ୍ଣୁଦତ୍ତଙ୍କ ଆଗମନର ସୂଚନା ପାଇ ଶକରାଜ ରୁଦ୍ରସିଂହଙ୍କ ଚିନ୍ତିତ ମ୍ଳାନ ମୁଖମଣ୍ଡଳରେ ଆନନ୍ଦର ଜ୍ୟୋତିରେଖା ପ୍ରଜ୍ୱଳିତ ହୋଇଉଠିଲା । ରୁଦ୍ରସିଂହ ସିଂହାସନରୁ ଉଠି ରାଜଗୁରୁ ଆଚାର୍ଯ୍ୟ ବିଷ୍ଣୁଗୁପ୍ତଙ୍କୁ ପାଛୋଟି ଆଣିବା ପାଇଁ ଅଗ୍ରସର ହେଲେ ।

ରୁଦ୍ରସିଂହ ନତମସ୍ତକ ହୋଇ କହିଲେ–"ପ୍ରଣାମ ଆଚାର୍ଯ୍ୟ ! ସଭାଭବନରେ ଆପଣଙ୍କୁ ସ୍ୱାଗତ । ଆସନ୍ତୁ, ଆସନ୍ତୁ । ଏବେ ରାଜସଭାରେ ଉପସ୍ଥିତ ପ୍ରତିଟି ସଂଭାସଦ୍ ଧର୍ମସଂକଟରେ ପଡ଼ି କୌଣସି ନିଷ୍ପତ୍ତି ନେଇପାରୁନଥିବା ବେଳେ ଆପଣଙ୍କର ଅଚାନକ ଆଗମନ ଆମ୍ଭମାନଙ୍କୁ ଅଧିକ ଉତ୍ସାହିତ କରିଛି ।"

ଆଚାର୍ଯ୍ୟ ବିଷ୍ଣୁଦତ୍ତ ମୁଖମଣ୍ଡଳରେ ସ୍ମିତ ହସ ଟୋଳି କହିଲେ–"ଆୟୁଷ୍ମାନ, ଯଶସ୍ୱୀ ଭବଃ ଶକରାଜ । ଆପଣମାନେ ସମସ୍ତେ କୁଶଳରେ ତ ?"

–"ହଁ, ଆପଣଙ୍କ ଅପାର କରୁଣା ଓ ଆଶୀର୍ବାଦରୁ..."

–"ମୁଁ ଗୋଟିଏ ସାଧାରଣ ମଣିଷ ଶକରାଜ । ମୋର ଆଶୀର୍ବାଦ ନୁହେଁ, ସବୁ କୃପା ସେହି ପରମେଶ୍ୱରଙ୍କର । ତାଙ୍କରି ଇଚ୍ଛାରେ ଯାହା ସବୁ କିଛି ଘଟିଥାଏ । ତାଙ୍କ କୃପା ବିନା...."

ଶକରାଜ ରୁଦ୍ରସିଂହଙ୍କ ମୁଖମଣ୍ଡଳରେ ନିରାଶାର ଭାବ ।

ଯୋଡ଼ହସ୍ତରେ ଠିଆ ହୋଇ ରୁଦ୍ରସିଂହ ଆଚାର୍ଯ୍ୟଙ୍କୁ ପ୍ରଶ୍ନ କଲେ–"ଗୁରୁଦେବ । ଆପଣ ପ୍ରତିଟି କଥାକୁ ଈଶ୍ୱରଙ୍କ ଉପରେ ନ୍ୟସ୍ତ କରିଦେଉଛନ୍ତି । ମୁଁ ବୁଝିପାରୁନାହିଁ, ଆପଣଙ୍କ ଈଶ୍ୱର କେଉଁଠି ଅଛନ୍ତି ଆଉ କ'ଣ କରୁଛନ୍ତି ?"

ଆଚାର୍ଯ୍ୟ ବିଷ୍ଣୁଦତ୍ତ ଶାନ୍ତ ଭାବରେ କହିଲେ–"ଶକରାଜ ! ଈଶ୍ୱର ସର୍ବତ୍ର ବିଦ୍ୟମାନ । ସେ ପ୍ରତିଟି କ୍ଷଣରେ ମଣିଷ ସାଙ୍ଗରେ ଥାଆନ୍ତି । ସେ ପ୍ରତି ମୁହୂର୍ତ୍ତରେ ମଣିଷକୁ ଅପମାନ, କ୍ଷୋଭ, ଦୁଃଖ ଓ ପାପ କାର୍ଯ୍ୟରୁ ନିବୃତ୍ତ କରିବା ପାଇଁ ଯତ୍ନଶୀଳ ହୋଇ ରହିଥାନ୍ତି ।"

-"ମୁଁ କିନ୍ତୁ ଆପଣଙ୍କର ଏହି ତଥ୍ୟକୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ, ଗୁରୁଦେବ ।"

-"ମୋର ପ୍ରିୟ ଶକରାଜ ରୁଦ୍ର ! ଆପଣଙ୍କ ବିଶ୍ୱାସ ବା ଅବିଶ୍ୱାସ ଉପରେ ଈଶ୍ୱରଙ୍କ ସତ୍ତାକୁ ତ ଅସ୍ୱୀକାର କରିହେବନାହିଁ ।"

କିଛିକ୍ଷଣ ନୀରବ ରହିବା ପରେ ରୁଦ୍ରସିଂହ କହିଲେ-"ଆଚ୍ଛା ଗୁରୁଦେବ ! ମୋର ଗୋଟେ ପ୍ରଶ୍ନ ରହିଛି । ମୋର ଆପଣ ଜିଜ୍ଞାସାର ସମାଧାନ କରନ୍ତୁ । ଗୁରଦେବ ! ମୋର ପୂର୍ବଜମାନଙ୍କୁ ମଗଧ ସାମ୍ରାଜ୍ୟର ଅଧିପତିମାନେ ଯେପରି ଭାବେ ଅପମାନିତ କରିଆସିଛନ୍ତି, ମୁଁ ଏବେ ମଗଧ ବିରୁଦ୍ଧରେ ପ୍ରତିଶୋଧ ନେବାକୁ ନିଷ୍ପତ୍ତି କରିଛି । ମୋତେ ଏ କ୍ଷେତ୍ରରେ ଆପଣଙ୍କ ଈଶ୍ୱର ସହାୟତା ଦେଇପାରିବେ ?"

ରାଜଗୁରୁ ବିଷ୍ଣୁଦତ୍ତ ହସିଲେ-"ଅତୀତରେ ଯଦି ତୁମକୁ ଈଶ୍ୱର ସାହାଯ୍ୟ କରିନାହାନ୍ତି, ଏବେ ହୁଏତ ସହଯୋଗ କରିବେ । ତୁମ ପୂର୍ବଜମାନଙ୍କ ପ୍ରତି ଯେଉଁ ଅତ୍ୟାଚାର ଓ ଅବମାନନା ହୋଇଛି, ତୁମେ ତାର ପ୍ରତିଶୋଧ ନେବାର ସମୟ ସନ୍ନିକଟ ହେଉଛି । ଆଜି ମୋର ପ୍ରାତଃ କର୍ମକାଣ୍ଡ ସମାପନ କଲାପରେ ମୁଁ ଆକାଶ ଆଡ଼କୁ ଦୃଷ୍ଟିପାତ କଲି । ନକ୍ଷତ୍ର ଯୋଗ ତୁମ ରାଜ୍ୟ ପାଇଁ ଅତି ଶୁଭମଙ୍ଗଳ ଦ୍ୟୋତକ ହେଉଛି ।"

ଅତ୍ୟନ୍ତ ଉତ୍ସାହିତ ଭାବରେ ଶକରାଜ ପଚାରିଲେ-"ଗୁରୁଦେବ ! ତେବେ ଯଥାଶୀଘ୍ର ମଗଧ ଉପରେ ଶକସେନାବାହିନୀ ଆକ୍ରମଣ ଆରମ୍ଭ କରିଦେବେ ? ମୋ ଭିତରେ ଯେଉଁ ପ୍ରତିଶୋଧର ଅଗ୍ନି ଜଳୁଛି ତାହା ସହ୍ୟ କରିବା ମୋ ପକ୍ଷରେ ଅସମ୍ଭବ ହୋଇଉଠିଲାଣି ଗୁରୁଦେବ ।"

-"ନା, ଏତେ ଶୀଘ୍ର ନୁହେଁ । ଗ୍ରହନକ୍ଷତ୍ର ଚଳନରୁ ମୁଁ ଯାହା ଲକ୍ଷ୍ୟ କରୁଛି ଶିକାରୀ ସ୍ୱୟଂ ନିଜର ଶିକାର ପାଇଁ ଅଗ୍ରସର ହୋଇଆସୁଛି । ଧୈର୍ଯ୍ୟ ଓ ବୁଦ୍ଧିମତ୍ତା ପ୍ରୟୋଗ କଲେ ତୁମେ ଆପେ ଆପେ ବିନା ସୈନ୍ୟଚାଳନାରେ ବିଜୟୀ ହେବ । କିନ୍ତୁ..."

ଶକରାଜ ରୁଦ୍ରସିଂହଙ୍କ ଆଖି ଭିତରୁ ସତେ ଯେମିତି ବିଦ୍ୟୁତରେଖା ଝଲସି ଉଠିଲା । ସେ ବ୍ୟତିବ୍ୟସ୍ତ ହୋଇପଡ଼ି ପଚାରିଲେ-"ଗୁରୁଦେବ ! କିନ୍ତୁ ପୁଣି କ'ଣ ଗୁରୁଦେବ ? ଆପଣଙ୍କ ମନରେ କେଉଁଠି କିଛି ସଂଶୟ ସୃଷ୍ଟି ହେଇଛି ?"

ଆଚାର୍ଯ୍ୟ ବିଷ୍ଣୁଦତ୍ତ ନିର୍ବିକାର ଭାବରେ ଆକାଶର ଶୂନ୍ୟତା ଆଡ଼କୁ ଦୃଷ୍ଟି ପକାଇ କହିଲେ-"ଶକରାଜ ! ପରନାରୀ ହରଣ ବା ପରନାରୀ କାମନା ବାସନାରୁ ଏହି ଯୋଗ ବର୍ଷ ଦୂରେଇ ରହିବାକୁ ପଡ଼ିବ । ଅନ୍ୟଥା, ସମ୍ଭବତଃ ଏହି ସୌଭାଗ୍ୟନକ୍ଷତ୍ର ଦୁର୍ଭାଗ୍ୟରେ

ପରିଣତ ହୋଇଯିବ । ତୁମର ସାମାନ୍ୟତ୍ରୁଟି ଯୋଗୁଁ ଶକବଂଶର ସଂପୂର୍ଣ୍ଣ ବିନାଶ ଘଟିବ । ଏପରିକି ଏହି ବଂଶର ତିଳତର୍ପଣ କରିବାକୁ ସୁଦ୍ଧା କେହି ରହିବେ ନାହିଁ ।''

ରୁଦ୍ରସିଂହଙ୍କ ଗ୍ରୀବା ଶ୍ରଦ୍ଧାରେ ଅବନତ ହୋଇଗଲା ।

–''ଈଶ୍ୱର ତୁମର ମଙ୍ଗଳ କରନ୍ତୁ...'' କହି ରାଜଗୁରୁ ଆଚାର୍ଯ୍ୟ ବିଷ୍ଣୁଦତ୍ତ ରାଜସଭା ସଦନରୁ ବିଦାୟ ନେଇ ଚାଲିଗଲେ ।

ପୂର୍ବାହ୍ନରୁ ଆରମ୍ଭ ହୋଇ ଅପରାହ୍ନ ପର୍ଯ୍ୟନ୍ତ ଚାଲିଥିବା ସଭାସଦନର ବୈଠକ ସମାପ୍ତ ହେଲା । ଅମାତ୍ୟ,ସେନାଧ୍ୟକ୍ଷ ଓ ପାରିଷଦବର୍ଗ ଶକରାଜ ରୁଦ୍ରସିଂହଙ୍କୁ ବିଦାୟ ଅଭିବାଦନ ଜଣାଇ କକ୍ଷ ତ୍ୟାଗ କଲେ ।

ରାଜଉଦ୍ୟାନ ।

ବିଚଳିତ ମନକୁ ଶାନ୍ତ କରିବାକୁ ରୁଦ୍ରସିଂହ ଉଦ୍ୟାନରେ ପଦଚାରଣ କରୁଥାନ୍ତି । ଉଦ୍ୟାନରେ ବିକାଶିତ ନାନା ପ୍ରକାର ପୁଷ୍ପ ଓ କଳିକାର ସୌନ୍ଦର୍ଯ୍ୟ ଏବଂ ସୁଗନ୍ଧରେ ନେତ୍ର ଓ ନାସାର ତୃଷ୍ଣା ମେଣ୍ଟାଇବାରେ ଲାଗିଥାନ୍ତି । ସବୁଜିମାଭରା ଲତାଗୁଳ୍ମକୁ ସେ ଅନ୍ୟମନସ୍କ ଭାବରେ ନିରୀକ୍ଷଣ କରି କରି ଉଦ୍ୟାନର ମଧ୍ୟଭାଗରେ ଥିବା ସରୋବର ତଟରେ ଯାଇ ଠିଆ ହେଲେ ।

ଉଦ୍ୟାନ ଉପରକୁ ଜ୍ୟୋତ୍ସ୍ନା ବିଚ୍ଛୁରିତ ପୂର୍ଣ୍ଣିମା ସଂଧ୍ୟାର ପଣତକାନି ହୀରକ ଆଲୋକ ସମ ଝଲମଲ ହୋଇ ଓହ୍ଲାଇ ଆସୁଥିଲା ।

ଉଦ୍ୟାନର ସେଇ ସରୋବର କୂଳରେ ବସି କିଏ ଜଣେ ଘନକୃଷ୍ଣ ଶାନ୍ତ ଜଳରାଶି ଉପରକୁ କ୍ଷୁଦ୍ର କ୍ଷୁଦ୍ର ଶିଳାଖଣ୍ଡ ଫୋପାଡ଼ି ତରଙ୍ଗାୟିତ ଜଳକ୍ରୀଡ଼ାର ଆନନ୍ଦ ଉପଭୋଗ କରୁଥିଲା ।

ଶକରାଜ ରୁଦ୍ରସିଂହ ନିରାପଦ ଦୂରତ୍ୱରେ ଥାଇ ନିରୀକ୍ଷଣ କଲେ ସରୋବର ତଟରେ ବସି ଗୁଣୁଗୁଣୁ ହୋଇ ଗୀତ ଗାଉଥିବା ସେଇ କଳାଛାଇଟି କିଏ !

ଧୀର ପଦପାତରେ ରୁଦ୍ରସିଂହ ଛାୟାନ୍ଧକାର ମଧ୍ୟରେ ସେହି ଛାଇପାଖରେ ଯାଇ ପହଞ୍ଚିଲେ ଓ ତାର ପଛପଟେ ଥାଇ ଦୁଇ ହାତ ପାପୁଲିରେ ଆଖି ଦୁଇଟିକୁ ଚାପି ଧରିଲେ ।

ରୁଦ୍ରସିଂହ କହିଲେ-''କିଏ ତମେ ସୁନ୍ଦରୀ ? କହିଲ ଦେଖି ମୁଁ କିଏ ?

ସେଇ ସୁନ୍ଦରୀ ତରୁଣୀଟି କହିଲା-''କହିବି ? କହିବି ଆପଣ କିଏ ?''

-''ହଁ, ହଁ କୁହ...'' ରୁଦ୍ରସିଂହ ଭାବବିହ୍ୱଳ କଣ୍ଠରେ କହିଲେ ।

-''ସେଇ...''

-'ସେ ପୁଣି କିଏ ?''

-''ମୋର ସେଇ ହୃଦୟର ମଣିଷ ଯିଏ ଦିନରାତିର ପ୍ରତିଟି ମୁହୂର୍ତ୍ତରେ ମୋର ଅନ୍ତର ଭିତରେ ନେସି ହୋଇରହିଛନ୍ତି... ମୃଗତୃଷ୍ଣା ପରି କାହିଁ ଦୂର ଦିଗନ୍ତରୁ ହିଁ ଗୋଟିଏ ଝଲକ ଦେଖାଇ ପାଖକୁ ଗଲାବେଳକୁ ଅଦୃଶ୍ୟ ହୋଇଯାଉଛନ୍ତି ।''

-''ହେଲା, ବହୁତ ହୋଇଯାଇଚି କ୍ଷୀପ୍ରା । ମୋ ଉପରେ ଆଉ ଅଧିକ ଅସନ୍ତୋଷ ପ୍ରକଟ କରନାହିଁ ।'' ରୁଦ୍ରସିଂହ କ୍ଷୀପ୍ରା ପାଖରେ ଗୋଡ଼ ଲମ୍ବାଇ ବସିପଡ଼ିଲେ ।

କ୍ଷୀପ୍ରା ରୁଦ୍ରସିଂହଙ୍କ କୋଳରେ ଲୋଟିପଡ଼ି କହିଲା-''ମୁଁ ଅସନ୍ତୋଷ ପ୍ରକଟ କରୁଛି ? ମୁଁ ଯାହା ବା କହିଲି ତାହା କ'ଣ ମିଥ୍ୟା ? ଅସତ୍ୟ ?''

କ୍ଷୀପ୍ରାର ଘନକୃଷ୍ଣ ଗହଳ କେଶରାଶି ଭିତରେ ଆଙ୍ଗୁଳି ସଂଚାଳନ କରୁ କରୁ ରୁଦ୍ରସିଂହ କହିଲେ-''କ୍ଷୀପ୍ରା । ମୁଁ ମୋର ଯେଉଁ କଥା ତୁମକୁ କହିବା କଥା ଓଲଟା ତମେ ମତେ କହୁଛ । ମୃଗତୃଷ୍ଣା କିଏ ? ମୁଁ ନା ତୁମେ ? ତୁମେ ନିଜେ ମୋ ପାଇଁ ଗୋଟେ ମୃଗତୃଷ୍ଣା ପାଲଟି ଯାଇଚ । ତମେ ଗଭୀର ରାତ୍ରିରେ ମୋର ସ୍ୱପ୍ନରେ ଆସୁଚ, ମୁହୂର୍ତ୍ତକ ପାଇଁ ଖେଳ ଖେଳି ମୋତେ ନିଦରୁ ଉଠାଇ ଦେଉଚ ପୁଣି କୁଆଡ଼େ ଅପସରି ଯାଉଚ । ମୋର ସକଳ ସୁଖ, ଶ୍ୱାସ-ପ୍ରଶ୍ୱାସ ଛଡ଼େଇ ନେଉଚି ତମର ଏଇ କଜଳବୋଳା ଛଳଛଳ ମୃଗୀନୟନ ।''

କ୍ଷୀପ୍ରା ହସିଲା-''ତେବେ ଆପଣ ଲଂଫ ଦେଉନାହାନ୍ତି ଏଇ ଆଖିର ହ୍ରଦରେ ?''

ରୁଦ୍ରସିଂହ ଗାଢ଼ ଆଲିଙ୍ଗନରେ କ୍ଷୀପ୍ରାକୁ ଭିଡ଼ିଧରି କହିଲେ-''ହଁ, ଖୁବ୍ ଶିଘ୍ର ତମର ଏଇ ଆଖିର ସମୁଦ୍ରରେ ମୋର ଏଇ ନୟନଯୁଗଳ ଲଂଫ ଦେବ । ଆମର ଏଇ ଲୁଚାଛପା ପ୍ରେମଖେଳକୁ କିଛିଦିନ ସ୍ଥଗିତ ରଖିବାକୁ ପଡ଼ିବ କ୍ଷୀପ୍ରା । ମୋର ପୂର୍ବଜମାନଙ୍କ .

ପ୍ରତି ମଗଧ ଯେଉଁ ଅତ୍ୟାଚାର, ଦମନଲୀଳା କରିଛି, ଏବେ ମୋତେ ତାହାର ପ୍ରତିଶୋଧ ନେବାପାଇଁ ସୁଯୋଗ ମିଳିଛି ...''

-''ଠିକ୍ ଅଛି...'' କ୍ଷୀପ୍ରା କହିଲା ଏବଂ ରୁଦ୍ରସିଂହଙ୍କ କୋଳରୁ ନିଜକୁ ମୁକ୍ତ କରି ସରୋବରର ଜଳଗର୍ଭକୁ ପୁଣି ଟେକାଟିଏ ଫୋପାଡ଼ିଲା । ଶାନ୍ତ ସ୍ଥିର ଜଳରାଶିରେ ତରଙ୍ଗ ସୃଷ୍ଟି ହେଲା ।

ଜଳ ତରଙ୍ଗକୁ ଲକ୍ଷ୍ୟ କରି ରୁଦ୍ରସିଂହ କହିଲେ-''ଶାନ୍ତ ସ୍ଥିର ଜଳରାଶିକୁ ଅସ୍ଥିର କାହିଁକି କରିଦେଲ କ୍ଷୀପ୍ରା ? ତମରି ଏପରି ଆଘାତ ଯୋଗୁଁ ଶାନ୍ତ ସରୋବରରେ ଦେଖୁଛ କେମିତି ତରଙ୍ଗର ଉନ୍ମାଦ ରୂପ ।''

-''ହଁ, ଦେଖୁଚି ଉନ୍ମାଦ ଜଳ ତରଙ୍ଗ କିପରି ଶତସହସ୍ର ଅଭିଳାଷ ନେଇ କୂଳକୁ ଆସୁଚି ଆଉ କୂଳରେ ପିଟି ହୋଇ ପୁଣି ଫେରିଯାଉଚି ।''

ରୁଦ୍ରସିଂହ ପୁଣି କ୍ଷୀପ୍ରାକୁ କୋଳକୁ ଟାଣିନେଇ କହିଲେ-''ନୀଳ ସରୋବରର ଉନ୍ମାଦ ତରଙ୍ଗ କୂଳରେ ପିଟି ହୋଇ ପୁଣି ଫେରିଯାଏ ନାହିଁ କ୍ଷୀପ୍ରା । ତାହା ତ କୂଳର ଗଳାରେ ଛନ୍ଦି ହୋଇଯାଏ, ଠିକ୍ ଆମ ଦୁହିଁଙ୍କ ପରି ।''

କ୍ଷୀପ୍ରା ଉଠି ଠିଆ ହେଲା ଆଉ କହିଲା-''ଚାଲନ୍ତୁ, ଏହି କ୍ଷଣିକର ମିଳନ ପରେ ଆମ ଦୁହିଁଙ୍କୁ ପୁଣି ନିଜ ନିଜ ମାର୍ଗରେ ଫେରିଯିବାକୁ ପଡ଼ିବ । ସଂଧ୍ୟା ଯାଇ ରାତି ଆସିଲାଣି । ବାବା ମୋର ଫେରିବା ବାଟକୁ ଅନାଇ ବସିଥିବେ ।''

-''ଗୁରୁଦେବଙ୍କ ପ୍ରତି ତୁମର ଖୁବ୍ ଧ୍ୟାନ ରହିଛି ନୁହେଁ, କ୍ଷୀପ୍ରା ।'' ରୁଦ୍ରସିଂହ ପଚାରିଲେ ।

କ୍ଷୀପ୍ରାର ରୁଦ୍ଧଗଳାରେ ଏପରି ସ୍ୱର ଗୁଂଜରିତ ହେଲା ଯେମିତି ଗଭୀର ସମୁଦ୍ର ଭିତରୁ ସ୍ୱରଟିଏ ଭାସି ଆସୁଥିଲା-''ଆଜି ବାବା ନଥିଲେ, ଜାଣେନା ମୋର ଅବସ୍ଥା କ'ଣ ହୋଇଥାନ୍ତା ? ମୋ ପରି ଗୋଟେ ଅନାଥ ବାଳିକାକୁ ସେ ନିଜ ପାଖରେ ଆଶ୍ରୟ ଦେଇ ଜନ୍ମିତ କନ୍ୟାର ଯେଉଁ ସ୍ନେହ ଶ୍ରଦ୍ଧା ଅଜାଡ଼ି ଦେଇ ଆସିଛନ୍ତି, ମୋ ପାଇଁ ଏହାଠାରୁ ବଡ଼ ଭାଗ୍ୟ କ'ଣ ଥାଇପାରେ ?''

-''ତମେ ଠିକ୍ କହୁଛ କ୍ଷୀପ୍ରା । ମୋର ଗୁରୁଦେବ ଆଚାର୍ଯ୍ୟ ବିଷ୍ଣୁଦତ୍ତ ପ୍ରକୃତରେ ଜଣେ ଦେବତୁଲ୍ୟ ପୁରୁଷ । ମୋର ରାଜ୍ୟ ତାଙ୍କ ଆଶିର୍ବାଦ ଯୋଗୁଁ ଅଗ୍ରଗତି ପଥରେ ଚାଲିଛି । ଏହାମୋର ଭାଗ୍ୟ । ''

ଦୁହେଁ ଉଦ୍ୟାନ ବାହାରେ ଆସି ପହଞ୍ଚିଲେ । ଉଦ୍ୟାନ ଦ୍ୱାର ପାଖରେ ଦୁହେଁ ପହଞ୍ଚିଲା ବେଳକୁ ସେଠାରେ ରୁଦ୍ରସିଂହଙ୍କୁ ପ୍ରତିହାରୀ ଅପେକ୍ଷା କରି ରହିଥିଲା । ପ୍ରତିହାରୀ ନତମସ୍ତକ ହୋଇ ଅଭିବାଦନ ଜଣାଇଲା–''ଦୈବପୁତ୍ର ଶକରାଜଙ୍କର ଜୟ ହେଉ ।''

ରୁଦ୍ରସିଂହ ପଚାରିଲେ–''ହଁ, କୁହ ପ୍ରତିହାରୀ ।''

ପ୍ରତିହାରୀ କହିଲା– ''ମହାରାଜ ! ପାଟଳୀପୁତ୍ରରେ ଥିବା ଆମ ଗୁପ୍ତଚର ଏକ ଗୁରୁତ୍ୱପୂର୍ଣ୍ଣ ସନ୍ଦେଶ ପଠାଇଛି । ମଗଧ ସମ୍ରାଟ ରାମଗୁପ୍ତ ତାଙ୍କ ମନ୍ତ୍ରୀମଣ୍ଡଳ ଓ ମଗଧ ସେନାବାହିନୀରେ ବ୍ୟାପକ ପରିବର୍ତ୍ତନ କରିଛନ୍ତି । ଏହି ପରିବର୍ତ୍ତନ ମଧ୍ୟରେ ଶିଳାଦିତ୍ୟ ସେନାପତି, ବୀରସେଣ ଯୁଦ୍ଧମନ୍ତ୍ରୀ, ସ୍ୱର୍ଗତ ବିଷ୍ଣୁଦାସଙ୍କ ପୁତ୍ର ସନକାନିକ, ସ୍ୱାମୀ ଦାସ, ବିଶ୍ୱାମିତ୍ରସ୍ୱାମୀ ତଥା ଭିକମଲ୍ଲ ଆଦି ସାମନ୍ତ ଭାବେ ନିର୍ବାଚିତ ହୋଇଛନ୍ତି । ଆମ ଗୁପ୍ତଚର ପାଇଥିବା ସୂଚନା ଅନୁସାରେ ନବନିର୍ବାଚିତ ଅଧିକାଂଶ ମନ୍ତ୍ରୀ ଏବଂ ସାମନ୍ତମାନେ କୁମାର ଚନ୍ଦ୍ରଗୁପ୍ତଙ୍କ ନୀରବ ସମର୍ଥକ ଓ ପକ୍ଷପାତି ।''

ଶକରାଜ ରୁଦ୍ରସିଂହ ଉଦ୍‌ବିଗ୍ନ ହୋଇ ପଚାରିଲେ–''ରାମଗୁପ୍ତର କାର୍ଯ୍ୟକାଳ ସମାପ୍ତ ହୋଇଗଲା ନା କ'ଣ ?''

–''ନା, ମହାରାଜ ! ସାମ୍ରାଜ୍ୟର ଶାସନ କ୍ଷମତା ଯଦିଓ ରାମଗୁପ୍ତଙ୍କ ହାତରେ ତେବେ କୁମାର ଚନ୍ଦ୍ରଗୁପ୍ତଙ୍କ କୁଶଳ ବୁଦ୍ଧିର ପରିଣାମ ହେଉଚି ସେ କୁଶଳତାପୂର୍ବକ ମନ୍ତ୍ରୀମଣ୍ଡଳ ଓ ସେନାବାହିନୀର ଅଧିକାଂଶ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିଙ୍କୁ ନିଜପକ୍ଷକୁ ଅକ୍ତିଆର କରିନେଇଛନ୍ତି । ଏବେ ମଗଧ ସାମ୍ରାଜ୍ୟର କେନ୍ଦ୍ରବିନ୍ଦୁ ପାଟଳୀପୁତ୍ରର କ୍ଷମତାକେନ୍ଦ୍ରରେ ଘଡ଼ିକେ ଘୋଡ଼ା ଛୁଟୁଛି ।''

–''ଏହା ତ ଆମ ପାଇଁ ଅତି ଶୁଭଙ୍କର । ରାଜ୍ୟଶାସନ ନାମକୁ ମାତ୍ର ରାମଗୁପ୍ତ ହାତରେ ଆଉ ସେନାବାହିନୀ ଚନ୍ଦ୍ରଗୁପ୍ତ କବ୍‌ଜାରେ । ମହାଅମାତ୍ୟ ଶିଖରସେଣ ରାମଗୁପ୍ତର ପକ୍ଷରେ ଥିବାବେଳେ ସେନାପତି କୁମାର ଚନ୍ଦ୍ରଗୁପ୍ତଙ୍କ ସପକ୍ଷରେ... ବାଃ...ବାଃ । ମଗଧ କ୍ଷମତାକେନ୍ଦ୍ରରେ ଏହି ଘଟ ପରିବର୍ତ୍ତନ ଫଳରେ ଆମର ପ୍ରତିଶୋଧର ମାର୍ଗ ସରଳତାର ସହିତ ପ୍ରଶସ୍ତ ହୋଇପାରିବ । ପରସ୍ପର ବିରୋଧି ଓ ଶତ୍ରୁତା ମଧ୍ୟରେ ଛନ୍ଦି ହୋଇପଡ଼ିଥିବା ଗୁପ୍ତ ସାମ୍ରାଜ୍ୟ ଆମର ସାମାନ୍ୟ ଆକ୍ରମଣରେ ଛିନ୍ନବିଚ୍ଛିନ୍ନ ହୋଇଯିବ ।''

ପ୍ରତିହାରୀ ବିନମ୍ରତାର ସହିତ କହିଲା–''କିନ୍ତୁ ସ୍ଥିତି ବିପରୀତ ମନେ ହେଉଚି ମହାରାଜ ! ରାମଗୁପ୍ତ ବିଶାଳ ମଗଧ ସେନା ସହିତ ଦିଗ୍‌ବିଜୟରେ ବାହାରିବା ପାଇଁ

ପ୍ରସ୍ତୁତ ହେଉଛନ୍ତି । ଏହି ସୂଚନା ମଧ୍ୟ ମିଳିଛି ଯେ, ଏହି ମଗଧ ସେନାବାହିନୀର ଦିଗ୍‌ବିଜୟ ଅଭିଯାନରେ ରାମଗୁପ୍ତଙ୍କ ସହିତ କୁମାର ଚନ୍ଦ୍ରଗୁପ୍ତ ଏବଂ ଧ୍ରୁବଦେବୀ ମଧ୍ୟ ଆସୁଛନ୍ତି ।''

ଶକରାଜ ରୁଦ୍ରସିଂହ ଅଧିକ ଉତ୍ସାହିତ ହୋଇ କହିଲେ-''ଏହି ଧ୍ରୁବଦେବୀ କିଏ ପ୍ରତିହାରୀ ?''

ପ୍ରତିହାରୀ ରୁଦ୍ରସିଂହଙ୍କ ପାଖରେ ଠିଆ ହୋଇଥିବା କ୍ଷୀପ୍ରାର ମୁହଁକୁ ଚାହିଁ କହିଲା- ''ମହାରାଜ ! ଧ୍ରୁବଦେବୀ ହେଉଛନ୍ତି ଏହି ଭୂମଣ୍ଡଳର ଅଦ୍ୱିତୀୟ ସୁନ୍ଦରୀ । ଏକଦା କୁମାର ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ପରାଜିତ ରାଜା ନାଗସେଣଙ୍କ ଏକମାତ୍ର କନ୍ୟା । ଏହି କନ୍ୟାରନ୍‌ଟିକୁ ପରାଜିତ ରାଜା ସନ୍ଧିସର୍ତ୍ତ ଅନୁସାରେ ଚନ୍ଦ୍ରଗୁପ୍ତଙ୍କୁ ଉପହାର ସ୍ୱରୂପ ଦେଇଥିଲେ । କିନ୍ତୁ ଏହି ସୁନ୍ଦରୀ ଏବେ ମଗଧ ସମ୍ରାଟ ରାମଗୁପ୍ତଙ୍କର ମହାଦେବୀ ।''

-''ସତେ ?'' ଅନ୍ୟମନସ୍କ ଭାବେ ଶକରାଜ ରୁଦ୍ରସିଂହ ଆଗକୁ ପାଦ ବଢ଼ାଇଲେ ।

ଧ୍ରୁବଦେବୀଙ୍କ ସୌନ୍ଦର୍ଯ୍ୟ ଓ ରୂପଲାବଣ୍ୟର ଚର୍ଚ୍ଚାରେ ରୁଦ୍ରସିଂହ ଆସକ୍ତ ହୋଇ ଉଠୁଥିବା ଦେଖି କ୍ଷୀପ୍ରା ଯେମିତି ନାରୀ ସୁଲଭ ଈର୍ଷାରେ ଜଳିଉଠିଲା । ତାର ମୁଖମଣ୍ଡଳ ମ୍ଳାନ ପଡ଼ିଗଲା । ସେ ଅନ୍ୟମନସ୍କ ଭାବରେ ଆଗକୁ ପାଦ ବଢ଼ାଇଲା ।

ରୁଦ୍ରସିଂହ କ୍ଷୀପ୍ରାର ଅନ୍ୟମନସ୍କ, ବିଚଳିତ ମୁଖମଣ୍ଡଳକୁ ଚାହିଁ ତାର ମନୋଭାବ ପରଖିନେଇ ବ୍ୟଙ୍ଗ କରି କହିଲେ-''ଦେବୀ, ଅଚାନକ ଏବେ ଜ୍ୟୋସ୍ନା ବିଚ୍ଛୁରିତ ଆକାଶର ପଣତରେ ଝଲମଲ ହେଉଥିବା ଚନ୍ଦ୍ରକୁ ଏମିତି କାହିଁକି ଅନ୍ଧକାର ଘୋଟିଗଲା ?''

-''ଚନ୍ଦ୍ରକୁ ଗ୍ରହଣ ଗ୍ରାସ କରିଥାଇପାରେ ।''

-''ଗ୍ରହଣ ? ସେ ଗ୍ରହଣ ପୁଣି କ'ଣ ?''

-''ମତେ ପଚାରୁଛନ୍ତି ? ମୋତେ ସ୍ପଷ୍ଟ କରି କହିପାରିବେ, ଆପଣ ପ୍ରତିହାରୀ ପାଖରୁ ମଗଧର ମହାରାଣୀ ଧ୍ରୁବଦେବୀଙ୍କ ସୌନ୍ଦର୍ଯ୍ୟଚର୍ଚ୍ଚା ଶୁଣିଲାପରେ କାହିଁକି ଏତେ ଉତ୍ସାହିତ ହୋଇଉଠିଲେ ?''

ରୁଦ୍ରସିଂହ କ୍ଷୀପ୍ରାର ଏପରି ସିଧାସଳଖ ଅଭିମାନଭରା ପ୍ରଶ୍ନରେ ହସି ଉଠିଲେ- ''ଓଃ, ଏଇ କଥା ? କ୍ଷୀପ୍ରା ତୁମେ ବୁଝିପାରିବନି କ୍ଷମତା ରାଜନୀତିର କୂଟନୈତିକ ଖେଳ । ପ୍ରତିହାରୀ ସହିତ ମୋର ଯେଉଁ ଆଲୋଚନା ହେଉଥିଲା ତାହା ଥିଲା ରାଜନୈତିକ ପ୍ରସଙ୍ଗ ଏବଂ କୂଟନୈତିକ କାରଣରୁ ମୁଁ ମଗଧର ମହାରାଣୀ ଧ୍ରୁବଦେବୀଙ୍କ ବିଷୟରେ ସବିଶେଷ ତଥ୍ୟ ଜାଣିବା ପାଇଁ ଆଗ୍ରହୀ ହୋଇପଡ଼ିଥିଲି ।''

–"ଥାଉ, ଆପଣଙ୍କ ପରି ପୁରୁଷ ଜାତିର ରାଜନୈତିକ ଓ କୂଟନୈତିକ ଖେଳ । ଦେଶ କାଳପାତ୍ର ନିର୍ବିଶେଷରେ ଆମେ ନାରୀମାନେ ପୁରୁଷମାନଙ୍କ ପାଖରେ କେବଳ ଭୋଗ୍ୟା । ପୁରୁଷମାନଙ୍କ କେବଳ ଶଯ୍ୟାସଂଗିନୀ ହେବା ପାଇଁ ଜନ୍ମନେଇଥିବା ନାରୀମାନେ ଆପଣମାନଙ୍କର ରାଜନୈତିକ ତତ୍ତ୍ୱ କେମିତି ବା ବୁଝିପାରିବେ ମହାରାଜ ?"

–"କ୍ଷୀପ୍ରା ତୁମେ ଅଯଥାରେ ମୋତେ ସନ୍ଦେହ କରି ନିଜକୁ ଉଦ୍‌ବେଳିତ କରୁଚ ଓ ଆଘାତ ଦେଉଛ ।"

–"ମୋର ଆନନ୍ଦ ହେଉବା ଅସନ୍ତୋଷ–ସନ୍ଦେହ ସହିତ ଆପଣଙ୍କ ପରି ରାଜନୈତିକ ପ୍ରାଣୀମାନଙ୍କ ରକ୍ତପାତ.... ରଣକାଙ୍ଗାଳ ପୁରୁଷମାନଙ୍କର କେତେ ବା ଯାଏ ଆସେ ?" କହି କ୍ଷୀପ୍ରା ରାଜଗୁରୁ ଆଚାର୍ଯ୍ୟ ବିଷ୍ଣୁଦତ୍ତଙ୍କ ଉଦ୍ୟାନ ସନ୍ନିକଟ କୁଟୀର ଆଡ଼କୁ ଅଗ୍ରସର ହେଲା ।

ଏବଂ ଶକରାଜ ରୁଦ୍ରସିଂହ କ୍ଷୀପ୍ରାର ଏପରି ସରଳ ନିରୀହ ନାରୀସୁଲଭ ଅଭିମାନ ଦେଖି ହସି ଉଠିଲେ ଓ ରାଜଭବନ ଆଡ଼କୁ ଅଗ୍ରସର ହେଲେ ।

–"ଆସ, ତପସ୍ୟା ଆସ । ତୁ ମୋ ପାଇଁ କ'ଣ ଆଣିଚୁ ? ତୋର ମହାଦେବୀ ମୋ ପାଇଁ ତୋ ହାତରେ କଣ ପଠାଇଛନ୍ତି ? ମନ୍ଦମନ୍ଦ ଶୀତଳ ସମୀରଣ ନା ଭୟାନକ ଉତ୍ତପ୍ତ ଲାର୍ଭାର କିଛି ବାର୍ତ୍ତା ?"

ତପସ୍ୟା କହିଲା– "କୁମାର ! ମହାଦେବୀ ଆପଣଙ୍କୁ ଭୁଲିପାରୁନାହାନ୍ତି । ପ୍ରତିଟି କ୍ଷଣରେ ସେ ଆପଣଙ୍କୁ ଝୁରୁଛନ୍ତି... କେବଳ ଝୁରୁଛନ୍ତି । ରାଜ ଅନ୍ତଃପୁରରେ ଏତେ ଦାସୀ ପରିଚାରିକାଙ୍କ ଗହଳ ଚହଳ ସତ୍ତ୍ୱେ ସେ ଯେମିତି ନିଃସଙ୍ଗତା ଆଉ ଶୂନ୍ୟତାର ଦାବାନଳରେ ଜଳୁଛନ୍ତି ।" ତପସ୍ୟା କହିଲା ।

କୁମାର ଚନ୍ଦ୍ରଗୁପ୍ତ ଧ୍ରୁବଦେବୀଙ୍କ ଅନ୍ତରଙ୍ଗ ପରିଚାରିକା ତପସ୍ୟାର ମୁହଁକୁ ଅପଲକ ନେତ୍ରରେ କିଛିକ୍ଷଣ ଚାହିଁ ରହିଲା ପରେ କହିଲେ–"ମହାଦେବୀ ପ୍ରତିକ୍ଷଣରେ ମୋତେ ଝୁରୁଛନ୍ତି ? ତେବେ ତ ମୁଁ ହୃଦୟଙ୍ଗମ କରିବା ଉଚିତ ମୋର ହୃଦୟାସନ ରିକ୍ତ ନୁହେଁ ।"

ତପସ୍ୟା ଟିକିଏ ଗମ୍ଭୀର ହୋଇ କହିଲା– "ଏମିତି କିଛି କଥା ନାହିଁ କୁମାର ।"

ଚନ୍ଦ୍ରଗୁପ୍ତ କହିଲେ- ''ତୁ କାହିଁକି ଏପରି କ୍ଷୁଣ୍ଣ, ବିଷଣ୍ଣ ଦେଖାଯାଉଛୁ ।''

ତପସ୍ୟା କୁଣ୍ଠିତ ହୋଇ କହିଲା- ''କୁମାର ! ମହାଦେବୀ କହିଥିଲେ ଯେ ଆପଣଙ୍କର ସ୍ନେହସିକ୍ତ ସ୍ଥାନର ବ୍ୟକ୍ତିତ୍ୱକୁ କେହି କେବେ ହେଲେ ଭୁଲି ପାରିବେ ନାହିଁ । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଏହିକି ଯେ ସେ ଆପଣଙ୍କୁ ଗଭୀର ସ୍ନେହ କରୁଥିଲେ ମଧ୍ୟ ନିଜର ପ୍ରଣୟ ପ୍ରଦାନ କରିବାରେ ଅସମର୍ଥ ହୋଇପଡ଼ିଛନ୍ତି ।''

ତପସ୍ୟାର ଏପରି କଥାରେ ଚନ୍ଦ୍ରଗୁପ୍ତଙ୍କର ପ୍ରଣୟୀ ମନଟା ଆହୁରି କରୁଣ ବିଷାଦଗ୍ରସ୍ତ ହୋଇପଡ଼ିଲା । ଅତ୍ୟନ୍ତ ଆବେଗଭରା କଣ୍ଠରେ ସେ କହିଲେ- ''ତୁ କହ ତପସ୍ୟା । ମୁଁ ଏମିତି କ'ଣ ଅପରାଧ କରିପକାଇଲି ଯେ ମହାଦେବୀଙ୍କ ଭଳି ପ୍ରଣୟିନୀଙ୍କୁ ପାଇପାରିଲି ନାହିଁ ? ମୋ ଜୀବନ ସତରେ ବ୍ୟର୍ଥ ହୋଇଗଲା । ''

ତପସ୍ୟା କୁମାର ଚନ୍ଦ୍ରଗୁପ୍ତଙ୍କର କଥାରେ ବ୍ୟସ୍ତ ହୋଇପଡ଼ିଲା ।-''ଅପରାଧ କଥା କାହିଁକି କହୁଛନ୍ତି କୁମାର । ମହାଦେବୀ କହୁଥିଲେ ଆପଣ ଦୁଇଜଣଙ୍କର ପ୍ରେମପଥରେ ଧର୍ମଶାସ୍ତ୍ର ଓ ପୁରୋହିତମାନଙ୍କର ଆଶୀର୍ବାଦ ଅଭିଶାପରୂପୀ ବିଷଧର ସର୍ପ ଭଳି ଫଣାଟେକି ଅବରୋଧ କରି ଠିଆ ହୋଇଛି ।''

ଚନ୍ଦ୍ରଗୁପ୍ତ ଉଦ୍‌ବେଗ ପ୍ରକାଶ କରି କହିଲେ-'ଓହୋ' ତପସ୍ୟା । ଆସନ୍ତାକାଲି ହିଁ ମୁଁ ଏସବୁ ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହର ଯୁଦ୍ଧ ଘୋଷଣା କରିବି । ଯେତେ ସବୁ ମିଛ ନୈତିକତା, ମିଛ ପ୍ରଥା ପରମ୍ପରାକୁ ଯଜ୍ଞକୁଣ୍ଡର ନିଆଁରେ ଭସ୍ମ କରିଦେବି । ମୋର ତ ସବୁ ସ୍ୱପ୍ନ, ଆକାଙ୍‌କ୍ଷା ଜଳି ପୋଡ଼ି ଛାରଖାର ହୋଇଗଲା । ତା'ହେଲେ ଏସବୁ କଟକଣା, ନୈତିକତାର କିବା ପ୍ରୟୋଜନ ଅଛି ? ଯଦି ଏହାଦ୍ୱାରା ମତେ କଳଙ୍କର ଟିକା ବହନ କରିବାକୁ ପଡ଼ିବ, ପଡୁ । ମୁଁ ସେଥିପାଇଁ ଆଦୌ ଭୟଭୀତ ହେଉନାହିଁ । ସମ୍ରାଟ ସମୁଦ୍ରଗୁପ୍ତଙ୍କ ଭଳି ମତେ ମଧ୍ୟ ମୋର ଅସ୍ତ୍ର ଉଠାଇବାକୁ ପଡ଼ିବ । ଯେମିତି ସମ୍ରାଟ ସମୁଦ୍ରଗୁପ୍ତ ନିଜର ଭାଇ କାଞ୍ଚିଗୁପ୍ତଙ୍କୁ ଯେତେ ସ୍ନେହରେ ବୁଝାଇଲେ ମଧ୍ୟ ସେ ରାଜଗାଦି ଛାଡ଼ିବାକୁ ରାଜିନଥିଲେ ସେଥିପାଇଁ ତାଙ୍କୁ ଅସ୍ତ୍ରଧାରଣ କରି ଯୁଦ୍ଧଂଦେହିର ଡ଼ାକରା ଦେବାକୁ ପଡ଼ିଥିଲା, ସେମିତି ମତେ ମଧ୍ୟ ସାମ୍ରାଜ୍ୟକୁ ନିଜର ହାତମୁଠାକୁ ଆଣିବାକୁ ହେଲେ ସଶସ୍ତ୍ର ବିପ୍ଳବ କରିବାକୁ ହେବ । ରାମଗୁପ୍ତ ସ୍ନେହ ଓ ତ୍ୟାଗର ଭାଷା ବୁଝିବାରେ ଅସମର୍ଥ । ସେ କେବଳ ଯୁଦ୍ଧ ରକ୍ତପାତର ଭାଷା ବୁଝେ । ମତେ ଶାଣିତ ତରବାରୀର କରାମତି ଦେଖାଇବାକୁ ହିଁ ପଡ଼ିବ ତପସ୍ୟା ।''

କୁମାର ଚନ୍ଦ୍ରଗୁପ୍ତଙ୍କର ମୁଖମଣ୍ଡଳର ଦୃଢ଼ତା ଆଉ ଆଖିରେ ଶତ ସିଂହର ବଳ ଦେଖି ତପସ୍ୟା ମନେ ମନେ ଡ଼ରିଗଲା ।

ତା'ର ପାଟିରୁ କଥା ବାହାରିଲା ନାହିଁ । କେବଳ କହିଲା-''କୁମାର ... ମହାଦେବୀ ।....''

ଚନ୍ଦ୍ରଗୁପ୍ତ ନିଜର ଦୁଇ କାନକୁ ହାତରେ ଜୋର୍‌ରେ ଦବାଇ ଦେଲେ ଓ ଅସହ୍ୟ ଯନ୍ତ୍ରଣାରେ ଯେମିତି କଲବଲ ହୋଇଉଠିଲା ପରି କହିଲେ-''ତପସ୍ୟା ! ଦୟାକରି ମୋ ସମ୍ମୁଖରେ ମହାଦେବୀଙ୍କର ନାମ ଆଉ ନିଅନାହିଁ । ବର୍ତ୍ତମାନ ତାଙ୍କୁ ଭୁଲିଯିବା ହିଁ ମୋ ପାଇଁ ଶ୍ରେୟସ୍କର ହେବ । ହଁ, ସେ ବି ଠିକ୍ କଥା କହୁଛନ୍ତି । ପ୍ରକୃତରେ ସେ ଜଣେ ହିନ୍ଦୁନାରୀ । ହିନ୍ଦୁନାରୀ ଯାହା କରୁନା କାହିଁକି ଧର୍ମଶାସ୍ତ୍ରକୁ ଅବହେଳା କରି ସେହି ଆଦର୍ଶର ନିୟମରୁ କଦାପି ବାହାରକୁ ଯାଇପାରିବ ନାହିଁ । କ'ଣ କରିବି ? ତାଙ୍କୁ ଭୁଲିବାକୁ ଯେତେ ଚେଷ୍ଟା କରୁଥିଲେ ସୁଦ୍ଧା ନିୟତିର କଠୋର ବିଧାନ ଦେଖୁନ କେମିତି ମୋର ଅଗ୍ରଜଙ୍କ ଜୀବନସାଙ୍ଗରେ ତାଙ୍କୁ ଯୋଡ଼ିଦେଲା ।''

ତପସ୍ୟା ଧୀର ସ୍ୱରରେ କହିଲା-''କୁମାର ! ଶୁଣିବା ହୁଅନ୍ତୁ । ମହାଦେବୀଙ୍କର ଏକ ପ୍ରାର୍ଥନା ଆପଣଙ୍କ ନିକଟରେ ଥିଲା ।''

-''କି ପ୍ରକାର ପ୍ରାର୍ଥନା ।''

-''ଏଇଆ ଯେ ଆପଣ ଏମିତି କୌଣସି କାର୍ଯ୍ୟ କରନ୍ତୁ ନାହିଁ ଯେଉଁଥିରେ ଆପଣଙ୍କୁ ଅତ୍ୟନ୍ତ ବିଷମ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ । ନିଜ ପ୍ରତି ସତର୍କ ରୁହନ୍ତୁ ।''

ଚନ୍ଦ୍ରଗୁପ୍ତଙ୍କର ମୁହଁରେ ନିରାଶାର ଭାବ ଖେଳାଇଗଲା ।

-''ତା' ହେଲେ ତୁ କହ ତପସ୍ୟା । ମୁଁ କ'ଣ କରିବି ଯେ, କ'ଣ ଖାଲି ଅପମାନ ଦୁଃଖର ଅଗ୍ନିରେ ମୁଁ ଜୀବନସାରା ଏମିତି ସିଝୁଥିବି ?''

ତପସ୍ୟା ଆଶ୍ୱାସନା ଦେଇ କହିଲା- ''ଆପଣ ନିଜ ଉପରେ ଭରସା ରଖନ୍ତୁ କୁମାର । ସମୟକ୍ରମେ ସବୁ ଠିକ୍ ହୋଇଯିବ ।''

ଚନ୍ଦ୍ରଗୁପ୍ତ ଚିଡ଼ିଯାଇ କହିଲେ-''ଈଶ୍ୱର କେଉଁଠି ଅଛନ୍ତି, କହିଲୁ ? ବିଧାତାର କି ନିଷ୍ଠୁର ଆଘାତ ଯେ ମୋର ସବୁ ଆଶାକୁ ଚୂର୍‌ମାର୍ କରିଦେଲା । ଆହୁରି କ୍ଷୋଭର ବିଷୟ ହେଉଛି ମୁଁ ଏକ ପଳାତକ ଅକର୍ମଣ୍ୟ ଭଳି ଲୁଚିଛପି ବଞ୍ଚୁଛି । ପ୍ରତିମୁହୂର୍ତ୍ତରେ ଯେକୌଣସି ଘାତକର ଆକ୍ରମଣର ଆଶଙ୍କାରେ ରହିବାକୁ ପଡୁଛି । ଅଥଚ ତୁ କହୁଛୁ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖିବାକୁ ? ତୋର ଈଶ୍ୱର ପ୍ରକୃତରେ ଏହି କ୍ଷେତ୍ରରେ କିଛି

ହେଲେ କରିପାରିବେ ନାହିଁ । ରହ ତୁ ଦେଖିବୁ, ଦିନେ ମୋର ଏହି ପଳାତକ ଜୀବନର ଅନ୍ତ ମୋର ଅଗ୍ରଜର ସ୍ୱାର୍ଥ ଲାଳସାର ବଳିବେଦୀରେ ଚଢ଼େଇ ଦିଆଯିବ ।''

ତପସ୍ୟା ଅତ୍ୟନ୍ତ ବ୍ୟସ୍ତ ହୋଇକହିଲା– ''ଛି...ଛି...କୁମାର । ଆପଣ ଏମିତି କାହିଁକି ଭାବୁଛନ୍ତି ଯେ ।''

ଚନ୍ଦ୍ରଗୁପ୍ତ ସେମିତି ଦୃଢ଼ଭାବରେ କହିଲେ–''ଆଉ କ'ଣ ଭାବିବି ଯେ ! ଏଇଠି କିଛି ବି ଅସମ୍ଭବ ନାହିଁ । କୁତ୍ସିତ ଭାବରେ ମୃତ୍ୟୁବରଣ କରିବା ଅପେକ୍ଷା ନିଜେ ଆତ୍ମହତ୍ୟା କରିଦେବା ବହୁଗୁଣରେ ଶ୍ରେୟସ୍କର ହେବ ।''

ତପସ୍ୟା କୁମାରଙ୍କ ଏପରି ଅଦ୍ଭୁତ କଥାରେ ଚମକି ପଡ଼ିଲା–''ଆତ୍ମହତ୍ୟା ? ଏକଥା ଆପଣଙ୍କ ଭଳି ମହାନ୍ ଯୋଦ୍ଧା ବୀର କହୁଛନ୍ତି କୁମାର ! ମୁଁ ତ ନିଜକାନକୁ ସୁଦ୍ଧା ବିଶ୍ୱାସ କରିପାରୁନାହିଁ ।''

ଚନ୍ଦ୍ରଗୁପ୍ତ କହିଲେ– ''ହଁ ! ମୁଁ ହିଁ ଏକଥା କହୁଛି । ଏହାବ୍ୟତୀତ ମୋ ନିକଟରେ ଅନ୍ୟ କୌଣସି ପନ୍ଥା ବା ବିକଳ୍ପ ଦିଶୁନାହିଁ ।''

ତପସ୍ୟା କହିଲା– ''କୁମାର ! ଆପଣ ଏସବୁ ଅନିଷ୍ଟ କଥା କହିବା ପୂର୍ବରୁ ଟିକିଏ ଭାବିବା କଥା ଯେ ଏହାଦ୍ୱାରା ମହାଦେବୀଙ୍କୁ କେତେ ଗଭୀର ଯନ୍ତ୍ରଣା ହେବ ।''

ଚନ୍ଦ୍ରଗୁପ୍ତ କହିଲେ–''କ'ଣ ପାଇଁ ? ତାଙ୍କୁ କାହିଁକି ଦୁଃଖ ଲାଗିବ ?''

ତପସ୍ୟା ଦୃଢ଼ ଭାବରେ କହିଲା–''ଯେଉଁ ପ୍ରେମର ପ୍ରଦୀପକୁ ମହାଦେବୀ ନିଜ ଅନ୍ତର ଭିତରେ ଯତ୍ନରେ ଜଳାଇ ରଖିଛନ୍ତି, ଅଥଚ ସେ ଯେତେବେଳେ, ଶୁଣିବେ ଯେ ଆକସ୍ମିକ କରାଳ ଝଡ଼ର ପବନରେ ତାଙ୍କର ଅନ୍ତରତମ ପ୍ରିୟ ପ୍ରେମର ପ୍ରଦୀପଟି ଲିଭିଗଲା ତା'ହେଲେ ସେ କ'ଣ ଆଉ ବଞ୍ଚିପାରିବେ କୁମାର ?''

ତପସ୍ୟାର କଥାରେ କୁମାର ଚନ୍ଦ୍ରଗୁପ୍ତଙ୍କର ହୃଦୟ ଥରିଉଠିଲା । ସେ ମଧ୍ୟ କାତର ହୋଇ ଉଠିଲେ –''ଆଃ ତପସ୍ୟା ! ମୁଁ କିଛି ଭାବିପାରୁନାହିଁ । କ'ଣ କରିବି କ'ଣ ନକରିବି ଠିକ୍ କରିପାରୁନାହିଁ । ମହାଦେବୀଙ୍କର ସେ ନିରୀହ ମୁହଁ ମୋ ଆଗରେ ସର୍ବଦା ନାଚିଯାଉଛି । ତା'ହେଲେ କହ ମୁଁ କ'ଣ କରିବି ?''

କେତେ ସମୟ ନୀରବରେ ବିତିଗଲା ।

ତପସ୍ୟା ଚନ୍ଦ୍ରଗୁପ୍ତଙ୍କର କଥାର କୌଣସି ଉତ୍ତର ଦେଲାନାହିଁ । କେବଳ ଚୁପ୍‌ଚାପ୍ ଦୁଃଖରେ ବୁଡ଼ିରହିଥିବା କୁମାରଙ୍କ ଆଖିକୁ ଚାହିଁରହିଲା । କୁମାରଙ୍କ ଅସହାୟତା ଓ କଷ୍ଟ

ଚିନ୍ତାକରି ନିଜେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲା । ଆଉ ସମ୍ଭାଳି ପାରିଲା ନାହିଁ । ବଡ଼ ବିକଳ ଭାବରେ କହିଲା– "କୁମାର ! ମହାଦେବୀ କହୁଥିଲେ ଯଦି କୌଣସି ପ୍ରକାର ସୁଯୋଗ ଆପଣଙ୍କ ପାଇଁ ସୃଷ୍ଟି ହୁଏ, ତେବେ ଆପଣ ତାଙ୍କୁ ସାକ୍ଷାତ କରିପାରିବେ । କିନ୍ତୁ ନିଜର ସୁରକ୍ଷାକୁ ଦୃଷ୍ଟିରେ ରଖି ଏହା କରିବେ ।" ଆଖିର ଲୁହକୁ କାନିରେ ପୋଛୁ ପୋଛୁ କୁମାର ଚନ୍ଦ୍ରଗୁପ୍ତଙ୍କୁ ପ୍ରଣାମ କରି ତପସ୍ୟା ଚାଲିଗଲା ।

ଚନ୍ଦ୍ରଗୁପ୍ତ ଅପଲକ ନୟନରେ ତପସ୍ୟାର ଯିବାପଥକୁ ଚାହିଁ ରହିଲେ । ତପସ୍ୟା ସଂପୂର୍ଣ୍ଣ ଭାବେ ଅଦୃଶ୍ୟ ହୋଇ ଗଲାପରେ ଚନ୍ଦ୍ରଗୁପ୍ତଙ୍କ ଓଠରୁ ଏକ ଦୀର୍ଘଶ୍ୱାସ ବାହାରି ଆସିଲା । ଠିକ୍ ଏହି ସମୟରେ ଇନ୍ଦ୍ରଦେବ ସେଠାକୁ ପ୍ରବେଶ କଲେ । କୁମାର ଚନ୍ଦ୍ରଗୁପ୍ତ ନିଜକୁ ସଂଯତ କରି ବ୍ୟବସ୍ଥିତ ହୋଇଗଲେ । ଆଖିର ଲୁହକୁ ଆଖିରେ ହିଁ ପିଇଦେଲେ । କହିଲେ– "କଣ ସମାଚାର ଆଣିଛ ଇନ୍ଦ୍ରଦେବ" ? ଇନ୍ଦ୍ରଦେବ ଗମ୍ଭୀର ସ୍ୱରରେ କହିଲେ– "କୁମାର ! ବିଦ୍ରୋହ ନିମନ୍ତେ ସମସ୍ତ ବ୍ୟବସ୍ଥା ହୋଇସାରିଛି । ଆପଣଙ୍କର ଆଜ୍ଞା ମିଳିଲା କ୍ଷଣି ବିଦ୍ରୋହର ତୂରୀ ବାଜିଉଠିବ ।"

କିନ୍ତୁ ଚନ୍ଦ୍ରଗୁପ୍ତ ଇନ୍ଦ୍ରଦେବ କଥାରେ କିଛି ହେଲେ ଉତ୍ତର ଦେଲେନାହିଁ । ନୀରବରେ ଶୂନ୍ୟକୁ ଚାହିଁରହିଲେ । କିଛି ସମୟ ପରେ କହିଲେ– " ଇନ୍ଦ୍ରଦେବ ! ବର୍ତ୍ତମାନ ଆଦୌ ନୁହେଁ । ସେହି ସମୟ ଏଯାଏଁ ଆସିନାହିଁ । ଯଥାର୍ଥ ସମୟ ଆସି ଉପସ୍ଥିତ ହେଲେ ମୁଁ କଦାପି ମନା କରିବି ନାହିଁ । ତମକୁ ନିଶ୍ଚୟ ଆଦେଶ ପ୍ରଦାନ କରିବି ।"

ଇନ୍ଦ୍ରଦେବ କହିଲେ–"କିନ୍ତୁ କୁମାର ! ମୁଁ ଆପଣଙ୍କର ଏହି ଦୀନ ଅବସ୍ଥା ଆଉ ସହିପାରିବି ନାହିଁ । ମୁଁ ମଧ୍ୟ ବୁଝିପାରୁନାହିଁ ନିଜର ଅଧିକାରକୁ ପ୍ରାପ୍ତ ହେବାପାଇଁ ଆପଣ କାହିଁକି ସଙ୍କୋଚ ପ୍ରକାଶ କରୁଛନ୍ତି ?"

ଚନ୍ଦ୍ରଗୁପ୍ତ ଅତ୍ୟନ୍ତ ସେହ୍ନରେ ଇନ୍ଦ୍ରଦେବଙ୍କର ପିଠି ଉପରେ ହାତ ରଖି କହିଲେ– "ଇନ୍ଦ୍ରଦେବ ! ତୁମର ଏ ଅନନ୍ୟ ପ୍ରଭୁଭକ୍ତିର ମୁଁ ଉଚ୍ଚ ପ୍ରଶଂସା କରୁଛି । ମୁଁ ଭଲଭାବରେ ଜାଣେ, ତୁମ ହୃଦୟରେ ମୋ ପାଇଁ କିଭଳି ଅମାପ ସମ୍ମାନ ରହିଛି । ତୁମେ ମୋର କେବଳ ସେନାପତି ନୁହଁ, ମୋର ଅତି ଅନ୍ତରଙ୍ଗ ବନ୍ଧୁ ମଧ୍ୟ । ହେ ମୋର ସାଥୀ ତୁମେ ଟିକିଏ ଧୈର୍ଯ୍ୟଧର । ମୁଁ ଏହା ଆଦୌ ଚାହେଁନାହିଁ ଯେ କେବଳ ପଦଲାଳସା ପାଇଁ ଖଣ୍ଡା ଉଠାଇବାକୁ ହେବ । ଗୁପ୍ତ ବଂଶର ମହାନ୍ ସମ୍ରାଟ ସମୁଦ୍ରଗୁପ୍ତଙ୍କର ହତ୍ୟାର କଳଙ୍କ ପରେ ମୁଁ ଏହାକୁ ଆହୁରି କଳଙ୍କିତ କରିବାକୁ ଚାହେଁନାହିଁ ।"

ଇନ୍ଦ୍ରଦେବ ଚନ୍ଦ୍ରଗୁପ୍ତଙ୍କ କଥାରେ ବ୍ୟାକୁଳ ହୋଇଗଲେ ! କୁମାର –"ଆପଣ

ଖଡ଼୍ଗ ଉଠାଇବାକୁ ଚାହାନ୍ତି ନାହିଁ, ଆଉ ସେମାନେ ସ୍ନେହରେ ଶାନ୍ତିରେ କୌଣସି କଥା ମାନିବାକୁ ପ୍ରସ୍ତୁତ ନୁହନ୍ତି । କାହିଁ କୁଆଡ଼େ ଗଲା ଆପଣଙ୍କର ସାହସ ଓ ବାହୁର ବଳ ?''

ଚନ୍ଦ୍ରଗୁପ୍ତ ଇନ୍ଦ୍ରଦେବଙ୍କର ସ୍ନେହର ସରଳତାରେ ଟିକେ ହସିଦେଇ କହିଲେ-'' ହେ ମୋର ପ୍ରିୟ ବନ୍ଧୁ । ମୋର ସାହସର କିଛି କ୍ଷତି ହୋଇନାହିଁକି ବାହୁର ବଳ ଟିକିଏ ହେଲେ କମିନାହିଁ, ମୁଁ ତରବାରୀ ଉଠାଇବାକୁ ଡରୁନାହିଁ । ମୋର ତରବାରୀ ସର୍ବଦା ଗୁପ୍ତବଂଶର କୀର୍ତ୍ତି ଓ ଗୁପ୍ତ ସାମ୍ରାଜ୍ୟର ପ୍ରଜାମାନଙ୍କର ରକ୍ଷା ନିମନ୍ତେ ହିଁ ଉଠିବ । ମୋ ନିଜର ସ୍ୱାର୍ଥ ପାଇଁ ମୁଁ କେବେହେଲେ ଖଡ଼୍ଗ ଉଠାଇବାକୁ ଚାହେଁନାହିଁ ।''

ଇନ୍ଦ୍ରଦେବ କହିଲେ-''ତା'ହେଲେ କୁମାର । ସେହି ପ୍ରତୀକ୍ଷିତ ଦିନର ଅପେକ୍ଷାରେ ମୁଁ ମୋର ସାହସ ଓ ବଳକୁ ସଂଚିତ କରି ରଖୁଛି ।''

କିଛି ସମୟ ପରେ ଦୁଇଜଣ ମୌନ ହୋଇଗଲେ । କୁମାର ଚନ୍ଦ୍ରଗୁପ୍ତ ନୀରବତା ଭଂଗକରି କହିଲେ-''ଇନ୍ଦ୍ର ! ମୁଁ ଗୋଟିଏ କଥା ବୁଝିପାରୁନାହିଁ ।'' ଇନ୍ଦ୍ରଦେବ ଆଗ୍ରହରେ ପଚାରିଲେ-''କେଉଁ କଥା କୁମାର ।''

-''ସମ୍ରାଟ ସମୁଦ୍ରଗୁପ୍ତ ଏହି ବିଶାଳ ଭୂଭାଗକୁ ଅଧିକାର ନିମିତ୍ତ ମଗଧ ସାମ୍ରାଜ୍ୟର ସଂପ୍ରସାରଣ କରିଥିଲେ । ଫଳରେ ଜଣେ କେହି ହେଲେ ରାଜା ଗୁପ୍ତସାମ୍ରାଜ୍ୟ ବିରୁଦ୍ଧରେ ମୁଣ୍ଡ ଟେକିବାକୁ ସାହସ କରିପାରୁନାହାନ୍ତି । ତା'ହେଲେ ରାମଗୁପ୍ତର କଥିତ ଦିଗ୍‌ବିଜୟ କରିବାର ପ୍ରସ୍ତୁତିପର୍ବ କାହିଁକି ଚାଲିଛି ?''

ଇନ୍ଦ୍ରଦେବ କହିଲେ-''କୁମାର ! ଆପଣଙ୍କର କଥା ସତ୍ୟ ଅଟେ । କିନ୍ତୁ ଶକରାଜ ରୁଦ୍ରସିଂହକୁ କ'ଣ ଆପଣ ଭୁଲିଗଲେ କି ?''

-''ଶକରାଜ... ରୁଦ୍ରସିଂହ ତ ଗୁପ୍ତ ସାମ୍ରାଜ୍ୟ ଆଡ଼କୁ ଆଖି ଉଠାଇ ଦେଖିବାର ସାମାନ୍ୟତମ ଚେଷ୍ଟା ମଧ୍ୟ କରିପାରିବ ନାହିଁ ଇନ୍ଦ୍ରଦେବ । ସମ୍ରାଟ ସମୁଦ୍ରଗୁପ୍ତ ଯେଉଁଳି ଭାବରେ ଶକମାନଙ୍କୁ ପରାସ୍ତ କରିଥିଲେ ସେଥିରେ ସେମାନେ ମୁଣ୍ଡ ଟେକି ଉଠିବା ଆଦୌ ସମ୍ଭବ ନୁହେଁ ।''

ଇନ୍ଦ୍ରଦେବ କହିଲେ-''କିଏ କହିଲା ଅସମ୍ଭବ ବୋଲି କୁମାର । ରୁଦ୍ରସିଂହ ଅତ୍ୟନ୍ତ ସାହସୀ ଓ ପ୍ରତିଶୋଧପରାୟଣ ଶକନେତା । ଯେକୌଣସି ସମୟରେ ସେ ପୂର୍ବଜଙ୍କର ଅପମାନର ପ୍ରତିଶୋଧ ନେବା ନିମନ୍ତେ ମଗଧ ଉପରେ ଆକ୍ରମଣ କରିପାରେ ।''

ଚନ୍ଦ୍ରଗୁପ୍ତ କହିଲେ- ''ଅସମ୍ଭବ । ସେ ଏଠାକୁ କେବେହେଲେ ଆସିପାରିବ ନାହିଁ । ଭୟଙ୍କର ଘଞ୍ଚ ବଣ ପାହାଡ଼ ପାର ହୋଇ ଆସିବା ରୁଦ୍ରସିଂହ ପକ୍ଷରେ ସମ୍ଭବ

ନୁହେଁ । ସେହି ଅଲଂଘ୍ୟ ପର୍ବତଶ୍ରେଣୀକୁ ସେଥିପାଇଁ ସମ୍ରାଟ ସମୁଦ୍ରଗୁପ୍ତ ନିଜରାଜ୍ୟରେ ମିଶାଇ ନଥିଲେ । ଶକମାନଙ୍କର ଗର୍ବ ଭାଙ୍ଗିବା ପାଇଁ ପର୍ବତ ସେପଟେ ସେମାନଙ୍କୁ ଛାଡ଼ିଦେଇଥିଲେ । ତେଣୁ ରାମଗୁପ୍ତଙ୍କର ତଥାକଥିତ ଦିଗ୍‌ବିଜୟ ଯାତ୍ରାରେ ମୋର କାହିଁକି ଆଶଙ୍କା ସୃଷ୍ଟି ହେଉଛି ।''

ଇନ୍ଦ୍ରଦେବ ଉତ୍ସୁକତାର ସହିତ କହିଲେ- ''କେଉଁ ପ୍ରକାର ଆଶଙ୍କା କୁମାର ?''

ଚନ୍ଦ୍ରଗୁପ୍ତ କହିଲେ- ''ମତେ ଲାଗୁଛି ଏହି ଦିଗ୍‌ବିଜୟ ଯାତ୍ରା ପଛରେ ବୋଧହୁଏ ମତେ ହତ୍ୟା କରାଯିବାର ଷଡ଼ଯନ୍ତ୍ର ଲୁଚିରହିଛି ।''

ଇନ୍ଦ୍ରଦେବ କୁମାର ଚନ୍ଦ୍ରଗୁପ୍ତଙ୍କର କଥା ଶୁଣି ଚମକି ଉଠିଲେ । ସଙ୍ଗେ ସଙ୍ଗେ ମିଆନରୁ ଖଣ୍ଡାଟା ଟାଣି ଆଣିଲେ । ଦାନ୍ତ କଡ଼ମଡ଼ କରି କହିଲେ-''କୁମାର ! ଆପଣଙ୍କର ସେବକ ଇନ୍ଦ୍ରଦେବ ବଞ୍ଚି ଥାଉ ଥାଉ କେହି ହେଲେ ଆପଣଙ୍କର କେଶାଗ୍ର ସୁଦ୍ଧା ସ୍ପର୍ଶ କରିପାରିବ ନାହିଁ । ମୁଁ ଭାବୁଥିଲି ଯେ ଏହି ଦିଗ୍‌ବିଜୟ ବେଳେ ନିଜକୁ ଅଲଗା ରଖିବି । ମୋର ବିଧବା ମା ଓ ଗର୍ଭବତୀ ପତ୍ନୀଙ୍କୁ ଯାଇ ଦେଖିଆସିବି । କିନ୍ତୁ.. ମୁଁ ବର୍ତ୍ତମାନ ଭାବୁଛି ସେହି ଦିଗ୍‌ବିଜୟ ଯାତ୍ରାରେ ସାମିଲ ହେବି ଓ ଦେଖିବି କିଏ ସଫଳ ହେଉଛି-ଛଳକପଟ ନା ସଚ୍ଚାବୀରତ୍ୱ ।''

ଚନ୍ଦ୍ରଗୁପ୍ତ ହସିଲେ-''ଏକଥା ମୁଁ ଭାବି କରି ଅମାତ୍ୟଙ୍କ ନିକଟକୁ ସମ୍ବାଦ ପଠାଇଛି ।''

ଇନ୍ଦ୍ରଦେବ ପଚାରିଲେ- ''କ'ଣ ?''

-''ଏଇଆ ଯେ ମୁଁ ଦିଗ୍‌ବିଜୟ ଯାତ୍ରାରେ ସମ୍ମିଳିତ ହେବି । ଜାଣିଛ ଅମାତ୍ୟ କ'ଣ କହିଲେ ?''

ଇନ୍ଦ୍ରଦେବ ପଚାରିଲେ- ''କ'ଣ କହିଲେ ?''

-''ଅମାତ୍ୟ କହିଲେ ଯେ ଏହି ଦିଗ୍‌ବିଜୟ ଯାତ୍ରା ମହାରାଜ ରାମଗୁପ୍ତଙ୍କର ନିର୍ଦ୍ଦେଶ ତଥା ତାଙ୍କର ବାହୁବଳ ଦ୍ୱାରା ହିଁ ସମ୍ପନ୍ନ ହେବ । ଯାହା ଜଣାପଡୁଛି ଯେ ଜଣେ ଅପାରଗ ଭୀରୁ ରାଜାକୁ ବୀର ଭାବରେ ଆଖ୍ୟାୟିତ କରି ଦିଗ୍‌ବିଜୟୀ କରାଇବାର ପ୍ରଚେଷ୍ଟା ଚାଲିଛି । ପୁଣି ମତେ ବଳିର ନୈବେଦ୍ୟ ଭାବରେ ଉପସ୍ଥାପିତ କରାଯାଉଛି ।''

ଚନ୍ଦ୍ରଗୁପ୍ତଙ୍କର କଥା ଶୁଣି ଇନ୍ଦ୍ରଦେବଙ୍କର ଚକ୍ଷୁ ଯୁଗଳ କ୍ରୋଧରେ ରକ୍ତିମ ହୋଇଗଲା । ସେ ହୁଙ୍କାର ଛାଡ଼ି କହିଲେ-''କୁମାର ! ଦେଖିବା କେମିତି ଏସବୁ ସମ୍ପନ୍ନ ହେବ ।''କାପୁରୁଷଙ୍କର ଏହି ରାଜଧାନୀରେ ଯେଉଁଠି ଚଞ୍ଚଳତାକୁ ଲୁଚାଇବା ପାଇଁ ରାଜନୈତିକ

ଛଳନାର ଯେତେ ଆଡ଼ମ୍ବର ଦେଖାଇଲେ ମଧ୍ୟ ସତ୍ୟକୁ ଲୁଚାଇ ରଖାଯାଇପାରିବ ନାହିଁ । ମୋ ନିଜର ଦୃଢ଼ ଆତ୍ମବିଶ୍ୱାସ ଅଛି ଯେ ମଗଧ ସାମ୍ରାଜ୍ୟର ଅର୍ଦ୍ଧାଧିକ ସୈନିକ ଆମପକ୍ଷରେ ଅଛନ୍ତି । ମହାରାଜ ରାମଗୁପ୍ତଙ୍କର ତୋଷାମଦକାରୀ ଚାଟୁକାରମାନଙ୍କୁ ଖଣ୍ଡାର ଗୋଟିଏ ଚୋଟରେ ଖଣ୍ଡ ଖଣ୍ଡ କରିଦେବାକୁ ସେଥିପାଇଁ ବେଶି ବେଳ ଲାଗିବ ନାହିଁ ।''

ଚନ୍ଦ୍ରଗୁପ୍ତ କହିଲେ-'' ମୁଁ ମଧ୍ୟ ସେହି ସୁଦିନକୁ ଅପେକ୍ଷା କରିଛି । ଦେଖିବାକୁ ଚାହୁଁଛି ଯେ ମଦାରୀ କେମିତି ଚତୁରତାର ସହିତ ଖେଳ ଖେଳାଉଛି । ମଗଧର ପ୍ରଜାଙ୍କ ଆଖିରେ ଧୂଳି ଦେଇ ଯେତେଦିନପାରେ ରାଜ୍ୟଶାସନ କରିଚାଲିଛନ୍ତି ବୋଲି ଭାବିଛନ୍ତି ନିରୀହ ପ୍ରଜାଗଣ କିଛି ପ୍ରତିବାଦ କରିବେ ନାହିଁ । କିନ୍ତୁ ଧୂଳି ଯେଉଁଦିନ ମହାଘୂର୍ଣ୍ଣିଝଡ଼ରେ ପରିଣତ ହେବ ସେଦିନ ନା ରହିବ ରାଜ୍ୟ ନା ରହିବେ ନିଜେ ସ୍ୱୟଂ ରାମଗୁପ୍ତ ।''

ଇନ୍ଦ୍ରଦେବ ପଚାରିଲେ- ''ଏଥର ମୁଁ ଆସୁଛି କୁମାର ! ମତେ ନିଜକୁ ପ୍ରସ୍ତୁତ କରିବାକୁ ହେବ । କାଲି ସକାଳୁ ସେହି କାପୁରୁଷର ବିଜୟବାହିନୀ ଯେ ପ୍ରସ୍ଥାନ କରିବ । ମତେ ସେହି ବାହିନୀ ଭିତରେ ମିଶିବାକୁ ହେବ । ଆପଣ ମତେ ଅନୁମତି ଦିଅନ୍ତୁ ।''

ଚନ୍ଦ୍ରଗୁପ୍ତ ଆଦରରେ ଇନ୍ଦ୍ରଦେବଙ୍କୁ କୋଳେଇ ନେଲେ ଓ ସ୍ୱୀକୃତି ଦେଲେ । ଇନ୍ଦ୍ରଦେବ କୁମାର ଚନ୍ଦ୍ରଗୁପ୍ତଙ୍କୁ ପ୍ରଣାମ କରି ଚାଲିଗଲେ ।

ଶକ ଦୁର୍ଗର ଭିତର ଅଂଶ । ଗୋଟିଏ ପ୍ରକୋଷ୍ଠର ଖୋଲା ଭାଗକୁ ଅଗଣା ଭଳି କରି ସେଥିରେ ବହୁ କାରୁକାର୍ଯ୍ୟ ସଂପନ୍ନ ଖମ୍ବ ଚାରିପଟରେ ଦିଆଯାଇଛି । ସେହି ମଝିରେ କାଠର କାରୁକାର୍ଯ୍ୟ ସମ୍ପନ୍ନ ସିଂହାସନ ଟିଏ ଅବସ୍ଥାପିତ କରାଯାଇଥିଲା । ଚନ୍ଦନ କାଠର ଏହି ସିଂହାସନ ଉପରେ ଅନେକ ସୁନ୍ଦର ସୁନ୍ଦର ଆକୃତି ଅଙ୍କା ଯାଇଥିଲା । ଖମ୍ବଗୁଡ଼ିକ ହଳଦିଆ ବୁଟି ପଡ଼ିଥିବା ପର୍ଦ୍ଦାରେ ସୁଶୋଭିତ ହୋଇଥିଲା । ଶକରାଜ ରୁଦ୍ରସିଂହ ଅତ୍ୟନ୍ତ ଚିନ୍ତିତ ଭାବରେ ପଦଚାରଣ କରି ପୁଣି କିଛି ସମୟପରେ ଆସି ସିଂହାସନରେ ବସିପଡ଼ିଲେ । ପାଖ କାନ୍ଥରେ ଗୋଟିଏ ଅତ୍ୟନ୍ତ ମାର୍ମିକ ଚିତ୍ରପଟଟିଏ ଟଙ୍ଗା ହୋଇଥିଲା, ଚିତ୍ରଟିଥିଲା ଏହିପରି ବଡ଼ ମାର୍ମିକତାର ଅଭିବ୍ୟକ୍ତି । ଦେଖିଲା କ୍ଷଣି ହୃଦୟରୁ ଏକ ଦୀର୍ଘଶ୍ୱାସ ବାହାରି ଆସିବ । ଜଣେ ପୁରୁଷ ତା'ର ପତ୍ନୀକୁ ହତ୍ୟା କରିଦେଇଛି । ପତ୍ନୀର ଗଣ୍ଡିରୁ ମୁଣ୍ଡ ଅଲଗା ହୋଇ ତଳେ ପଡ଼ିଛି । ହତ୍ୟାକାରୀ ପୁରୁଷଟି ପ୍ରେମିକା ନାରୀଟି ସହିତ ମିଶି ନୃତ୍ୟ

କରୁଛି । ଓଃ କି ଅଦ୍ଭୁତ ଭୟଙ୍କର ବିରୋଧାଭାସ । କ୍ଷୀପ୍ରା ଅତ୍ୟନ୍ତ ନିବିଷ୍ଟ ଚିତ୍ତରେ ଏହି ଚିତ୍ରପଟ୍ଟକୁ ଏକଲୟରେ ଦେଖୁଥାଏ । ରୁଦ୍ରସିଂହ ଏଭଳି ଚିନ୍ତାରେ ମଗ୍ନଥିଲେ ଯେ କିଏ ପ୍ରକୋଷ୍ଠ ଭିତରକୁ ପ୍ରବେଶ କରିଛି, ଜାଣି ପାରିନାହାନ୍ତି । ଅନ୍ୟମନସ୍କ ଭାବନାରେ ସେପଟ ସେପଟ ଦେଖିବାକୁ ଲାଗିଲେ । ତା'ପରେ ହଠାତ୍ ଚମକି ପଡ଼ି କହିଲେ– "ଆରେ କ୍ଷୀପ୍ରା ! ତୁମେ ?"

କ୍ଷୀପ୍ରା ହସି ହସି କହିଲା– "ଯାହା ଆଜ୍ଞା ଦେବପୁତ୍ର ! ଆଦେଶ କରନ୍ତୁ ।"

ଶକରାଜ କ୍ଷୀପ୍ରାକୁ ସ୍ନିଗ୍ଧ ନେତ୍ରରେ ଦେଖି କହିଲେ– "ତୁମକୁ ଆଦେଶ ଦେବି କ୍ଷୀପ୍ରା ! ଏମିତି କ'ଣ କେବେ ହୋଇପାରିବ ?"

କ୍ଷୀପ୍ରା କହିଲା–"କାହିଁକି ହୋଇପାରିବ ନାହିଁ ? ଏହି ଚିତ୍ରପଟ୍ଟକୁ ଦେଖୁନାହାନ୍ତି ?"

ଶକରାଜ କହିଲେ–"ହଁ, ଦେଖୁଛି ତ । ହେଲେ କିଛି ବିଶେଷତ୍ୱ ଦେଖିପାରୁନି ଯେ ।"

କ୍ଷୀପ୍ରା ଅସନ୍ତୁଷ୍ଟ ହୋଇ କହିଲା– "ଅବଶ୍ୟ ଏହି ଚିତ୍ରପଟ୍ଟରେ ଥିବା ବିଶେଷତ୍ୱ ଆପଣଙ୍କୁ ଦେଖାଯିବ ନାହିଁ ।"

ଶକରାଜ ରୁଦ୍ରସିଂହ କଅଁଳେଇ କହିଲେ– "କ୍ଷୀପ୍ରା ! ତୁମେ ଏମିତି ରାଗି ମାଗି କହୁଛ କାହିଁକି ?"

ରୁଦ୍ର ସିଂହଙ୍କର କଥାଶୁଣି କ୍ଷୀପ୍ରାର ଓଠରେ ଏକ ଫିକାହସ ଖେଳିଗଲା, – "ମୁଁ କାହିଁକି ରାଗିବି ମହାରାଜ ! ଏତେ ସୌଭାଗ୍ୟ କ'ଣ ମୋର ହୋଇଛି ?"

–"କ୍ଷୀପ୍ରା ! ତୁମେ ଏମିତି ତୀକ୍ଷ୍ଣ ବ୍ୟଙ୍ଗର ବାଣ ଗଳାଇ ମୋ ହୃଦୟକୁ ବିଦ୍ଧ କରନାହିଁ କି ଆହତ କରନାହିଁ । ତୁମକୁ ମୁଁ ଭଲପାଏ । ଗଭୀର ସ୍ନେହକରେ । କିନ୍ତୁ ଆଜିକାଲି ଯେଉଁ ଭୀଷଣ ପରିସ୍ଥିତିର ମୁଁ ସମ୍ମୁଖୀନ ହୋଇଛି, ତାହାର ସମାଧାନର ବାଟ ମୁଁ ପାଉନି । ଅତ୍ୟନ୍ତ ମନସ୍ତାପରେ ରହୁଛି ।"

କ୍ଷୀପ୍ରା ଶକରାଜ ରୁଦ୍ର ସିଂହଙ୍କ ଆଗକୁ ଆହୁରି ଆସିଯାଇ ଆଖିରେ ଆଖି ମିଶାଇ ଅନ୍ତରଙ୍ଗ ହୋଇ କହିଲା –"ମତେ ବି ଆପଣଙ୍କର ସେହି ଭୀଷଣ ପରିସ୍ଥିତି ମଧ୍ୟରେ ମିଶାଇ ଦିଅନ୍ତୁ ନା । ମତେ ସେଥିରୁ ଅଲଗା କରି ରଖିଲେ ପରିସ୍ଥିତି କ'ଣ ସରଳ ହୋଇଯାଉଛି କି ?"

ଶକରାଜ ଦୁଃଖିତ ହୋଇ କହିଲେ– ‘‘ନା...ନା.. କ୍ଷୀପ୍ରା ! ସେ କଥା ନୁହେଁ । ମୋ ନିଜର ଚିନ୍ତା ଓ ଦୁଃଖକୁ ତୁମ ପଣତରେ ଢ଼ାଳିଦେଇ ତୁମକୁ ଆହୁରି ଦୁଃଖି କରିବାକୁ ଚାହେଁ ନାହିଁ ।’’

କ୍ଷୀପ୍ରା ଆଉ ଟିକିଏ ଗେହ୍ଲେଇ ହୋଇକହିଲା– ‘‘ତା’ହେଲେ ମୁଁ କ’ଣ ଭାବିବି କୁହନ୍ତୁ ତ ! ଆପଣଙ୍କର କୌଣସି ବସ୍ତୁରେ ମୋର କ’ଣ ଭାଗ ନାହିଁ ।’’

ରୁଦ୍ରସିଂହ କହିଲେ–‘‘ଏମିତି ବାରମ୍ବାର କାହିଁକି କହୁଛ କହିଲ କ୍ଷୀପ୍ରା ! ମୋର ସର୍ବସ୍ୱ, ଏପରିକି ମୋର ଅସ୍ତିତ୍ୱ ମଧ ତୁମର କେବଳ ମାତ୍ର ତୁମର ।’’

କ୍ଷୀପ୍ରା ନଛୋଡ଼ବନ୍ଧା ହୋଇ କହିଲା–‘‘ତା’ହେଲେ ଏହି ସବୁ ଦୁଶ୍ଚିନ୍ତା ମାନଙ୍କରୁ ମତେ କାହିଁକି ଦୂରରେ ରଖାଯାଉଛି । ଯଦି ଆପଣଙ୍କ ସବୁ ବସ୍ତୁ ମୋର, ତେବେ ନିଜର ବସ୍ତୁଠାରୁ ମତେ କାହିଁକି ବଞ୍ଚିତ କରାଯାଉଛି ?’’

କ୍ଷୀପ୍ରାର କଥାଗୁଡ଼ିକ ରୁଦ୍ରସିଂହଙ୍କୁ ଆହୁରି ବ୍ୟାକୁଳିତ କରି ଦେଉଥିଲା । – ‘‘ତୁମେ ବୁଝିପାରିବ ନାହିଁ କ୍ଷୀପ୍ରା ! ବର୍ତ୍ତମାନ ମୋ ସମ୍ମୁଖରେ ଜୀବନ ଓ ମୃତ୍ୟୁ ଆସି ଛିଡ଼ା ହୋଇଛି । ଚିନ୍ତାର ବୁଢ଼ିଆଣି ଜାଲରେ ମୁଁ ଛନ୍ଦି ହୋଇଯାଇଛି ଓ ମୋର ସମଗ୍ର ଅସ୍ତିତ୍ୱ ସେଥିରେ ଝୁଲୁଛି । ମୁଁ କିଛି ଥଳକୂଳ ପାଉନାହିଁ । ମତେ ଟିକେ ବୁଝିବାକୁ ଚେଷ୍ଟା କର ।’’

କ୍ଷୀପ୍ରା ସେମିତି କାନ୍ଥଆଡ଼କୁ ଅନାଇ କହିଲା–‘‘ ପ୍ରଶ୍ନଟିଏ କେବେହେଲେ ନିଜେ ସ୍ୱୟଂ ବ୍ୟକ୍ତି ନିକଟକୁ ଆସେ ନାହିଁ । ମୁଁ ଭଲ ଭାବରେ ଜାଣିଛି ଯେ ବ୍ୟକ୍ତି ନିଜେ ନିଜପାଇଁ ଚିନ୍ତାର ବୁଢ଼ିଆଣି ଜାଲ ବୁଣେ ଓ ସେଥିରେ ଏମିତି ଛନ୍ଦି ହୋଇଯାଏ ଯେ ସେଥିରୁ ବାହାରିବାର କୌଣସି ବାଟ ପାଏନାହିଁ । ତେଣୁ ଥରେ ସେହି ଗୋଲକ ଧନ୍ଦାରେ ନିଜେ ପ୍ରବେଶ କଲାପରେ ଦୁଃଶ୍ଚିନ୍ତାର ଅର୍ଥ କ’ଣ ଥାଇପାରେ ?’’

କ୍ଷୀପ୍ରାର ଏଭଳି ତୀକ୍ଷ୍ଣ ବ୍ୟଙ୍ଗ ବାକ୍ୟବାଣରେ ଶକରାଜ ରୁଦ୍ରସିଂହ ଅତ୍ୟନ୍ତ ଦୁଃଖିତ ହୋଇପଡ଼ିଲେ –‘‘ଏହା ହିଁ ମୋର ଦୁର୍ଭାଗ୍ୟ କ୍ଷୀପ୍ରା ! ତୁମେ ଆଦୌ ମତେ ବୁଝିପାରିଲ ନାହିଁ ।’’

କ୍ଷୀପ୍ରା ସେହିଭଳି ଅବିଗଳିତ ଭାବରେ କହିଲା –‘‘ସୌଭାଗ୍ୟ ଓ ଦୁର୍ଭାଗ୍ୟ ବୋଲି କିଛି ନାହିଁ । ସୌଭାଗ୍ୟ ଓ ଦୁର୍ଭାଗ୍ୟ ମଣିଷର ଏକ ଦୁର୍ବଳତା ମାତ୍ର ମହାରାଜ ! ମନୁଷ୍ୟ ନିଜର କର୍ମଫଳରୁ ଦୂରେଇ ଯିବାକୁ ଚେଷ୍ଟା କଲେ ଏହି ଦୁଇ ପରିସ୍ଥିତି ତା’ପାଇଁ ଚାତକ ପକ୍ଷୀର ମେଘକୁ ବର୍ଷା ଆଗମନର ପ୍ରତୀକ୍ଷା ଭଳି ଅବସ୍ଥା ସୃଷ୍ଟିକରିଥାଏ । ଆପଣ

ଯେତେବେଳେ ନିଜେ ଦୁଃଶ୍ଚିନ୍ତାକୁ ବରଣ କରିସାରିଲେଣି, ସେତେବେଳେ ଆଉ ଚିନ୍ତା କରି ଲାଭ କ'ଣ ?''

ରୁଦ୍ରସିଂହ ଅତ୍ୟନ୍ତ ଅସନ୍ତୁଷ୍ଟଭରା ସ୍ୱରରେ କହିଲେ- ''କ୍ଷୀପ୍ରା ! ମୁଁ ତ ନିଜେ ମଗଧ ଉପରେ ଆକ୍ରମଣ କରିବା ପାଇଁ କେବେହେଲେ ଆଗ୍ରହୀ ହୋଇନଥିଲି । ଯେତେବେଳେ ସେଇ ଭୀରୁ କାପୁରୁଷ ରାମଗୁପ୍ତ ଦିଗ୍‌ବିଜୟରେ ବାହାରି ମୋ ରାଜ୍ୟ ଆଡ଼କୁ ମାଡ଼ିଆସୁଛି, ସେତେବେଳେ କ'ଣ ମୁଁ ମୋର ବୀର ସ୍ୱାଭିମାନଙ୍କୁ ବିସର୍ଜନ କରିଦେଇ ହାତରେ ଚୂଡ଼ିପିନ୍ଧି ନିଜ ପ୍ରାସାଦରେ ଲୁଚି ବସିବି ବୋଲି ତୁମେ ଚାହୁଁଛ ?''

କ୍ଷୀପ୍ରାର କୌଣସି ପରିବର୍ତ୍ତନ ହେଲାନାହିଁ । ସେ କହିଲା-''ଆପଣ କାହିଁକି ରାମଗୁପ୍ତଙ୍କ ସହିତ ସନ୍ଧି କରିବାପାଇଁ ଆଗଭର ହେଉନାହାନ୍ତି ? କାରଣ ଗୁପ୍ତ ସୈନ୍ୟବଳ ଆପଣଙ୍କଠାରୁ କାହିଁ କେତେଗୁଣରେ ଶକ୍ତିଶାଳୀ । ତେଣୁ ପ୍ରତିପକ୍ଷ ଯଦି ଶକ୍ତିଶାଳୀ ତେବେ ସେଠାରେ ନିଜେ ଆତ୍ମସମର୍ପଣ କରିବା କୌଣସି ଦୃଷ୍ଟିରୁ ଦୁର୍ବଳତା ନୁହେଁ । ଏଇଟା ହିଁ ଯୁଦ୍ଧର ନିୟମ । ନିଜର ସମକକ୍ଷ ପ୍ରତିଦ୍ୱନ୍ଦ୍ୱୀ ସହିତ ସିନା ପୌରୁଷତ୍ୱ ପ୍ରଦର୍ଶନ କରାଯାଏ ।''

ଆହତକଣ୍ଠରେ ରୁଦ୍ରସିଂହ କହିଲେ-''କ୍ଷୀପ୍ରା ! ଅନ୍ତତଃ ମୁଁ ଏମିତି କାମ କେବେହେଲେ କହିପାରିବିନାହିଁ । ଯଦି ସେମାନେ ପ୍ରବଳ ଶକ୍ତିଶାଳୀ ଭାବରେ ମୋ ଆଡ଼କୁ ଅଗ୍ରସର ହେଉଛନ୍ତି, ତା'ହେଲେ ମୁଁ ମଧ୍ୟ କୌଣସି ଦୃଷ୍ଟିରୁ କମ୍ ନୁହେଁ । ମୋର ଖଣ୍ଡାର ରକ୍ତ ଶୋଷଣ କୌଣସି ପରିସ୍ଥିତିରେ ଦବି ଯିବନାହିଁ ।''

କ୍ଷୀପ୍ରା ତୀବ୍ରକଣ୍ଠରେ କହିଲା- ''ସର୍ବଦା, ସବୁ ଯୁଗରେ ମନୁଷ୍ୟ ନିଜେ କେତେ କ୍ଷୁଦ୍ର ହେଉନା କାହିଁକି, ଅସମର୍ଥ ହେଉନା କାହିଁକି ନିଜକୁ ଶ୍ରେଷ୍ଠ ବୋଲି ପ୍ରମାଣିତ କରିବାକୁ ପଛାଏନାହିଁ ।''

ଶକରାଜ ସତକୁ ସତ କ୍ଷୀପ୍ରାର ଏଭଳି ବାରମ୍ବାର ବ୍ୟଙ୍ଗବାଣରେ ଭାରି ରାଗିଗଲେ ଓ କହିଲେ -''ଛାଡ଼...ଛାଡ଼, ତୁମର ନୀତିବାଣୀ ନିଜପାଖରେ ରଖ କ୍ଷୀପ୍ରା । ମତେ କ'ଣ କରିବାକୁ ହେବ, ସେସବୁ ମୁଁ ଭଲ ଭାବରେ ଜାଣିଛି । ମୋର ତଣ୍ଟି ଶୁଖିଯାଉଛି, ଯଦି କିଛି ପାନୀୟ ଅଛି ତ ପିଆଇ ଦିଅ ।''

କିନ୍ତୁ କ୍ଷୀପ୍ରା ରୁଦ୍ରସିଂହଙ୍କ ଆଦେଶ ମାନିଲାନାହିଁ । ସେମିତି ମୂର୍ତ୍ତିବତ ଛିଡ଼ା ହୋଇରହିଲା । ରୁଦ୍ରସିଂହ କ୍ଷୀପ୍ରାର ଏଭଳି ବେଖାତିର ବ୍ୟବହାରରେ ଅତ୍ୟନ୍ତ କ୍ଷୁର୍ଣ୍ଣ ହୋଇପଡ଼ିଲେ - ''ଆରେ କ୍ଷୀପ୍ରା ! ତୁମେ ଏମିତି ପଥର ମୂର୍ତ୍ତିଭଳି ଛିଡ଼ା ହୋଇଛ ଯେ, ଯାଅ । ଯାଉନା କାହିଁକି ? ଯାଅ !'' ସେ କହିଲେ- ''ଦେଖ......ଦେଖ ଅମାତ୍ୟ !

କ୍ଷୀପ୍ରା ନିରାଶଭରା ଦୃଷ୍ଟିରେ ରୁଦ୍ରସିଂହଙ୍କୁ ଚାହିଁଲା – ''ହଁ....ହଁ.. ପଥରଟାଏ । ମୁଁ ଗୋଟେ ପାଷାଣ ମାତ୍ର । କିନ୍ତୁ ମହାରାଜ ଆପଣଙ୍କର ଜାଣିବା ଆବଶ୍ୟକ ଯେ ପଥର ସନ୍ଧିରୁ ହିଁ ଶୀତଳ ଜଳସ୍ରୋତ କଳକଳ ନାଦରେ ବୋହିଆସେ । ପଥର ଗର୍ଭରୁ ମୁକୁଳିଥିବା ଝରଣାର ଶୀତଳ ଜଳରେ ହିଁ ପଥିକର ତୃଷ୍ଣା ମେଣ୍ଟେ ।''

ରୁଦ୍ରସିଂହ କହିଲେ– ''ତୁମ ଝରଣାର ଶୀତଳ ଜଳରେ ତୃଷ୍ଣା ମେଣ୍ଟୁଥିବ, ହେଲେ ବର୍ତ୍ତମାନ ଉଷ୍ମତାର ଆବଶ୍ୟକତା ଅଛି । ମୋର ଝରଣାର ପାଣି ନୁହେଁ ଅଙ୍ଗୁର ରସର ପାଣି ଦରକାର, କ୍ଷୀପ୍ରା ।''

କ୍ଷୀପ୍ରା କହିଲା–''ହଁ, ମୁଁ ଆଣୁଛି ।'' ସେ ପ୍ରକୋଷ୍ଠ ଭିତରକୁ ଚାଲିଗଲା । ସେହି ସମୟରେ ଦୁର୍ଗଦ୍ୱାରର ପ୍ରତିହାରୀ ପ୍ରବେଶ କରି ରୁଦ୍ରସିଂହଙ୍କୁ ଅଭିବାଦନ କଲା – ''ଦେବପୁତ୍ରଙ୍କର ଜୟ ହେଉ ।''

ଅନ୍ୟମନସ୍କ ହୋଇ ପଦଚାରଣା କରୁ କରୁ ରୁଦ୍ରସିଂହ କହିଲେ–''କୁହ ପ୍ରତିହାରୀ ! କ'ଣ ସମାଚାର ଆଣିଛ ?''

ପ୍ରତିହାରୀ କହିଲା–''ଦେବ ! ମହାରାଜ ରାମଗୁପ୍ତ ନିଜର ସୈନ୍ୟସାମନ୍ତ ସହିତ ଆମର ସୀମାନ୍ତର ପାହାଡ଼ି ଅଞ୍ଚଳରେ ପହଞ୍ଚି ଗଲେଣି । ଗୁପ୍ତଚରମାନଙ୍କ ଠାରୁ ସୂଚନା ମିଳିଛି ଯେ ପାହାଡ଼ର ପାଦଦେଶରେ ହିଁ ସେମାନଙ୍କର ଶିବିର ଲଗାଯାଉଛି । ମଗଧ ସୈନ୍ୟବାହିନୀଙ୍କର ବିଶ୍ରାମସ୍ଥଳୀ ସେଠାରେ ହୋଇଛି ।''

ଶକରାଜ ରୁଦ୍ରସିଂହ ଏହି ସମାଚାର ଶୁଣି ଆନନ୍ଦିତ ହୋଇଉଠିଲେ । କହିଲେ– ''ବାଃ ! ବହୁତ ବଢ଼ିଆ ! ପ୍ରତିହାରୀ ଅତ୍ୟନ୍ତ ସୁଖଦ ସମ୍ବାଦ ଦେଇଛ । ତୁମକୁ ନିଶ୍ଚୟ ପୁରସ୍କୃତ କରାଯିବ । ନା...ନା.. ଖାଲି ସେତିକି ନୁହେଁ ତୁମକୁ ସାମନ୍ତ ପଦରେ ଅଧିଷ୍ଠିତ କରିବି । ତୁମଭଳି ଯୋଗ୍ୟ ପ୍ରତିହାରୀ ମତେ କୁଆଡୁ ମିଳିବ ?''

ପ୍ରତିହାରୀ ଅକସ୍ମାତ୍ ଏଭଳି ସୌଭାଗ୍ୟରେ ଆତ୍ମହରା ହୋଇଗଲା । ଶକରାଜଙ୍କୁ ଅଭିଭୂତ ହୋଇ ପ୍ରଣାମ କରିବାକୁ ଲାଗିଲା ।

ରୁଦ୍ରସିଂହ କହିଲେ –''ହଁ କ'ଣ କହୁଥିଲ ପ୍ରତିହାରୀ ? ମଗଧସେନା ସହିତ ରାମଗୁପ୍ତ ଆମର ବନ ପର୍ବତର ଗୁମ୍ଫା ପାଖକୁ ଆସି ଯାଇଛି ? ଆଚାର୍ଯ୍ୟ ଠିକ୍ କଥା କହୁଥିଲେ । ଈଶ୍ୱର ଆମ ଉପରେ ଅତ୍ୟନ୍ତ କୃପାଳୁ ହୋଇଛନ୍ତି । ବର୍ଷାଦିନର ପ୍ରକୃତି ମଧ୍ୟ ଆମପାଇଁ ସହାୟକ ହୋଇଛି । ଚତୁର୍ଦ୍ଦିଗର ବିପଦସଙ୍କୁଳ ପାହାଡ଼ ଘେରା ଘାଟି, ହିଂସ୍ରଜନ୍ତୁପୂର୍ଣ୍ଣ ଅରଣ୍ୟାନି । ଏ ସବୁ ରାମଗୁପ୍ତର ସୈନ୍ୟବାହିନୀର ଦମ୍ଭକୁ ଭାଙ୍ଗି ଚୂରମାର କରିଦେବ ।

ରାତ୍ରିର ଭୟଙ୍କର ଅନ୍ଧକାର, ପ୍ରକୃତିର ଅଦ୍ଭୁତ ସାନ୍ଦ୍ରତା ସେମାନଙ୍କୁ ଚତୁର୍ଦ୍ଦିଗରୁ ଏପରି କବଳିତ କରିରଖିବ ଯେ ସ୍ୱଂୟ ସେମାନେ ପଛଘୁଞ୍ଚା ଦେଇ ପଳାୟନ କରିବେ । ହାଃ.... ହାଃ...ହାଃ...ହାଃ...."

ପ୍ରତିହାରୀ ମୁଣ୍ଡହଲାଇ ସମ୍ମତି ପ୍ରଦାନ କଲା । ଶକରାଜ ରୁଦ୍ରସିଂହ ଦାନ୍ତ କଡ଼ମଡ଼ କରି କହିଲେ -"ଦୁଇପଟର ଅଭେଦ୍ୟ ଦୁର୍ଲଂଘ୍ୟ ପର୍ବତ ଶ୍ରେଣୀ, ଭୟଙ୍କର ପ୍ରପାତର ଖରସ୍ରୋତା ଚକ, ପାହାଡ଼ି ନଦୀର ପିଚ୍ଛିଳତା ସାଙ୍ଗକୁ ଅନ୍ୟ ଦୁଇପଟରୁ ଆମର ଦୁର୍ଦ୍ଧର୍ଷ ସୈନ୍ୟବାହିନୀର ଘେରାବନ୍ଦୀ ସେମାନଙ୍କୁ ବହୁତ ଭାରି ପଡ଼ିବ । ମୂଳ କାଟିଲା ଭଳି ଆମର ଶକସେନା ଗୁପ୍ତ ସୈନ୍ୟବାହିନୀକୁ ସମୂଳେ ନିଃଶେଷ କରିଦେବେ । ଆଉ ପାହାଡ଼ି ଗୁମ୍ଫା ତାଙ୍କର ମୃତ୍ୟୁର ସମାଧି ସ୍ଥଳରେ ପରିଣତ ହୋଇଯିବ । ହାଃ..ହାଃ...ହାଃ..ହାଃ.. । ଯାହା ଜଣାପଡୁଛି ମୋର ପୂର୍ବଜଙ୍କର ଅପମାନର ପ୍ରତିଶୋଧ ପୂରଣର ସମୟ ଆସିଗଲା ।"

ପ୍ରତିହାରୀ ମଥାନତ କରି କହିଲା-"ମହାରାଜ ।"

ରୁଦ୍ରସିଂହ କହିଲେ-"ଯାଅ, ସେନାପତିଙ୍କୁ ମୋ ନିକଟକୁ ପଠାଅ ।"

ପ୍ରତିହାରୀ 'ଆଜ୍ଞା ମହାରାଜ' କହି ପ୍ରଣାମ କରି ପ୍ରସ୍ଥାନ କଲା ।

କିଛିକ୍ଷଣ ପରେ ସେନାପତି କକ୍ଷ ମଧ୍ୟକୁ ପ୍ରବେଶକରି ଶକରାଜ ରୁଦ୍ରସିଂହଙ୍କର ଜୟଧ୍ୱନି କଲେ । ରୁଦ୍ରସିଂହ ଉଲ୍ଲସିତ ଭାବରେ କହିଲେ,-" ଆସ...ଆସ.. ସେନାପତି ! ତୁମ କାନରେ ଏ ଭିତରେ ଯାହା ହେଉଛି କିଛି ପଡ଼ିଛି' ତ ?"

ସେନାପତି କହିଲେ- "ଶୁଣିସାରିଛି ଦେବପୁତ୍ର !"

ରୁଦ୍ରସିଂହ ଅସ୍ଥିର ହୋଇ କହିଲେ- "ତା'ହେଲେ ଯାହା କରିବା କଥା ଶୀଘ୍ର କରିବା ଆବଶ୍ୟକ । ତେଣୁ ତୁମେ ଆଜି ହିଁ ଆରମ୍ଭ କରିଦିଅ ।"

-"ଯାହା କରିବା କଥା, ମୁଁ କରିସାରିଛି ଦେବ ।"

ସେନାପତିଙ୍କ କଥା ଶୁଣି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ଶକରାଜ ରୁଦ୍ରସିଂହ ପଚାରିଲେ- " ତୁମେ କରିସାରିଛ, ଅର୍ଥାତ୍ ?"

ସେନାପତି ମୁଣ୍ଡ ନୁଆଁଇ କହିଲେ -"ହଁ, ମହାରାଜ ।"

ଶକରାଜ କହିଲେ -"ତା'ହେଲେ ମତେ ଶୁଣାଅ, କ'ଣ କରିଛ ?"

ସେନାପତି ଆରମ୍ଭ କଲେ- "ଉପସେନାପତିଙ୍କର ଅଧିନାୟକତ୍ୱରେ ମୁଁ ରାମଗୁପ୍ତଙ୍କର ଶିବିରକୁ ଚତୁର୍ଦ୍ଦିଗକୁ ଘେରିଯିବା ପାଇଁ ଆଦେଶ ପ୍ରଦାନ କରିସାରିଛି ।

ଦୁଇ ଦିଗରେ ଆମର ସୈନ୍ୟବାହିନୀ ଘେରି ରହିଛନ୍ତି, ଅନ୍ୟ ଦୁଇପଟରେ ଭୟଙ୍କର ଶୈଳଶ୍ରେଣୀ ଘେରି ରହିଛି । କୌଣସି ପରିସ୍ଥିତିରେ ମଧ୍ୟ ଜଣେ ହେଲେ ଗୁପ୍ତ ସୈନିକ କିମ୍ବା ଗୁପ୍ତଚର ଆମ କବଳରୁ ଖସିଯାଇପାରିବ ନାହିଁ ।''

ସେନାପତିଙ୍କର ଏହିସବୁ ଉତ୍ତମ ବ୍ୟବସ୍ଥା ଶୁଣି ଶକରାଜ ରୁଦ୍ରସିଂହ ଅତ୍ୟନ୍ତ ଉଲ୍ଲାସ ଅନୁଭବ କଲେ ଓ ତାଙ୍କ ନିକଟକୁ ଆସି ସାବାସି ଦେଇ କହିଲେ –''ତୁମେ ସତରେ ଜଣେ ଅତ୍ୟନ୍ତ ଦକ୍ଷ ସେନାପତି । ମୁଁ ଯାହା କରିବାକୁ ଚାହୁଁଥିଲି ତୁମେ ମତେ ନପଚାରି ମଧ୍ୟ ଠିକ୍ ସେହି ବ୍ୟବସ୍ଥା କରିଦେଲ । ବାଃ... ଧନ୍ୟ ତୁମ ସାହାସ ! ଧନ୍ୟ ତୁମ ତୀକ୍ଷ୍ଣ ପ୍ରତ୍ୟୁତ୍ପନ୍ନମତିତା ।''

ସେନାପତି ଶକରାଜଙ୍କର ପ୍ରଶଂସାରେ ଉତ୍ଫୁଲ୍ଲିତ ହୋଇ କହିଲେ- ''ମୁଁ ସେନାପତି, କାହାର ଯେ ମହାରାଜ ।''

ରୁଦ୍ରସିଂହ ହସିଦେଇ କହିଲେ- ''ଠିକ୍ କଥା କହିଛ । କିନ୍ତୁ, ବର୍ତ୍ତମାନ କ'ଣ କରିବା ଉଚିତ କହିଲ ?''

ସେନାପତି କହିଲେ, ''ଦେବପୁତ୍ର ! ଆପଣ ଯଦି କିଛି ଖରାପ ଭାବିବେନାହିଁ, ତେବେ ଗୋଟିଏ କଥା ମୁଁ କହିବାକୁ ଚାହୁଁଛି ।''

–''ଆରେ କୁହ କୁହ ! ତୁମ କଥାକୁ ମୁଁ କାହିଁକି ଖରାପ ବୋଲି ଭାବିବି ?''

–''ମହାରାଜା ! ଯୁଦ୍ଧ କେବେହେଲେ କୌଣସି ସମସ୍ୟାର ସମାଧାନ ନୁହେଁ । ଅବଶ୍ୟ ଏହା ନିଶ୍ଚିତ ଯେ ଏହି ଯୁଦ୍ଧରେ ଆମେ ହିଁ ବିଜୟଲାଭ କରିବୁ । କିନ୍ତୁ ଗୁପ୍ତ ସୈନ୍ୟବାହିନୀ ଆଗରେ ଆମର ସୈନ୍ୟବଳ ବହୁତ କମ୍ ଅଛନ୍ତି । ତାଙ୍କର ଦଶଜଣ ସୈନିକଙ୍କୁ ଆମର ଜଣେ ସୈନିକ ମାରିଲେ ମଧ୍ୟ ଯଦି ବିଜୟ ଆମେ ପାଇବା ତେବେ ବି ଆମର ବହୁତ ବଡ଼ କ୍ଷତି ହେବ ମହାରାଜ ! ଆମର ସୈନ୍ୟଶକ୍ତିକୁ ଆଖିରେ ରଖି ଏତିକି କୁହାଯାଇପାରେ ଯେ ଆମର ଜଣେ ଜଣେ ସୈନିକ ଏହି ପରିପ୍ରେକ୍ଷୀରେ ଆମ ପାଇଁ ଅତ୍ୟନ୍ତ ମୂଲ୍ୟବାନ୍ ।''

କିନ୍ତୁ ଶକରାଜ ସେନାପତିଙ୍କର କଥାରେ ସମ୍ମତ ନହୋଇ ଅସନ୍ତୁଷ୍ଟ କଣ୍ଠରେ କହିଲେ–''ସେନାପତି ! ତୁମେ ବାସ୍ତବରେ କ'ଣ କହିବାକୁ ଚାହୁଁଛ ? ତା'ହେଲେ କ'ଣ ଆମେ ଯୁଦ୍ଧ କରିବାନାହିଁ ? ଦ୍ୱାରଦେଶରେ ଛିଡ଼ା ହୋଇଥିବା ଶତ୍ରୁ ଆମକୁ ଯୁଦ୍ଧ ପାଇଁ ହୁଙ୍କାର ଛାଡୁଥିବାବେଳେ ଆମେ ଭୟରେ ଘରେ ଲୁଚିକରି ବସିବା ? ଏଇଟା କେଉଁ ପ୍ରକାର ଯୁଦ୍ଧନୀତି, କହିଲ ?''

ସେନାପତି ଶକରାଜଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରି କହିଲେ– ‘‘ମୋର କଥାର ଏହି ତାତ୍ପର୍ଯ୍ୟ ନଥିଲା ମହାରାଜ ! ଯୁଦ୍ଧ ତ ଆମକୁ ଯାହାହେଲେ ବି କରିବାକୁ ହେବ । କିନ୍ତୁ ଯୁଦ୍ଧ ପୂର୍ବରୁ ସମ୍ରାଟ ରାମଗୁପ୍ତଙ୍କ ନିକଟକୁ ଏକ ପ୍ରସ୍ତାବ ଯଦି ପଠାଯାଏ, ତା’ହେଲେ କ୍ଷତି କ’ଣ ? ମୋର ଦୃଢ଼ ବିଶ୍ୱାସ ଯେ ସମ୍ରାଟ ରାମଗୁପ୍ତ ନିଜକୁ ଚତୁର୍ଦ୍ଦିଗରୁ ଘେରାବନ୍ଦୀ କରାଯାଇସାରିଛି ବୋଲି ଜାଣିବା ପରେ ନିଶ୍ଚୟ ଡରିଯିବେ ଏବଂ ଆମର ସର୍ତ୍ତଭିତ୍ତିକ ପ୍ରସ୍ତାବକୁ ସ୍ୱୀକାର କରିବା ବ୍ୟତୀତ ତାଙ୍କ ନିକଟରେ କୌଣସି ଉପାୟ ମଧ୍ୟ ନଥିବ । ସେ ବାଧ୍ୟହେବେ । ଆମର ଶରଣାପନ୍ନ ହେବେ ।’’

ତଥାପି ଶକରାଜ ରୁଦ୍ର ସିଂହ ସେନାପତିଙ୍କର ପ୍ରସ୍ତାବରେ ରାଜି ହେଲେ ନାହିଁ– ‘‘କାହିଁକି ସେନାପତି ! ସେମାନେ ଆମ ସହିତ ଯୁଦ୍ଧ ମଧ୍ୟ କରିପାରନ୍ତି ।’’

ସେନାପତି କହିଲେ–‘‘ଆମେ କେବେହେଲେ ଯୁଦ୍ଧରୁ ଅପସରି ଯାଉନାହୁଁ ମହାରାଜ ! କେବଳ ଏତିକି ଚାହୁଁଛୁ ଅଯଥାରେ ରକ୍ତପାତ ନହେଉ ।’’

ଶକରାଜ ରୁଦ୍ର ସିଂହ ଏଥର ଟିକେ ଶାନ୍ତ ହେଲେ ଓ କହିଲେ– ‘‘ଠିକ୍ ଅଛି । ତୁମର ପ୍ରସ୍ତାବକୁ ଗ୍ରହଣ କରୁଛି । ତୁମେ ଏଥର ଯାଅ ଓ ରଣେନ୍ଦ୍ର ସିଂହଙ୍କୁ ମୋ ନିକଟକୁ ପଠାଇଦିଅ ।’’

–‘‘ଯଥା ଆଜ୍ଞା !’’ କହି ସେନାପତି ଚାଲିଗଲେ ।

ଗୁପ୍ତ ସାମ୍ରାଜ୍ୟର ବିଶାଳ ସେନାବାହିନୀ ବିଜୟ ଅଭିଯାନରେ ଅନବରତ ଅନେକଦିନ ଚାଲିବା ଫଳରେ କିଛି ସମୟ ମନ ପୂରାଇ ବିଶ୍ରାମ କରିବାକୁ ଚାହୁଁଥିଲେ । ଚତୁର୍ଦ୍ଦିଗ ପାହାଡ଼ ଘେରା ପଥୁରିଆ ଘଞ୍ଚ ଜଙ୍ଗଲର ଘାଟି ନିକଟରେ ସେମାନଙ୍କର ଶିବିର ଲାଗିଥିଲା । ସେମାନେ ଭିନ୍ନ ଭିନ୍ନ ଗୁମ୍ଫା, ପର୍ବତ, ଗଛ ଆଢୁଆଳରେ ଥାଇ ସୁରାପାନରେ ମତ୍ତ ହୋଇପଡ଼ିଥିଲେ । ଦେହରୁ ଚାଲିବାର ଶ୍ରମକୁ ମେଣ୍ଟାଇବାକୁ ଚାହୁଁଥିଲେ ।

ଏବେ ଶକ୍ତିଶାଳୀ ସୈନ୍ୟବାହିନୀର ମୁଖ୍ୟ କର୍ଣ୍ଣଧାର ମହାରାଜା ରାମଗୁପ୍ତ । ଯୁଦ୍ଧକାଳୀନ ଶିବିରରେ ସୁଦ୍ଧା ରଙ୍ଗଶାଳା ଖୋଲି ଦେଇଥିଲେ । ଯୁଦ୍ଧ ହେଉକି ନ ହେଉ ରାଜାଙ୍କର କ’ଣ ଯାଏ ଆସେ ଯେ ! ସୁରା ସେବନ ସାଙ୍ଗରେ ମତ୍ତ ହୋଇ ସୁନ୍ଦରୀ ନର୍ତ୍ତକୀମାନଙ୍କର ନୃତ୍ୟ ଯଥା ଅର୍ଦ୍ଧନଗ୍ନ ଯୌବନ ଦୀପ୍ତ ଶରୀରର ଝଲମଲ କଳା କୁଶଳତା

ଭିତରେ ବୁଡ଼ି ରହିଥିଲେ । ରାମଗୁପ୍ତ ସୁନ୍ଦରୀ ନର୍ତ୍ତକୀମାନଙ୍କର ଆକର୍ଷଣରେ ଉତ୍ତେଜିତ ହୋଇ ରହିଥିଲାବେଳେ ବାମନ ପ୍ରତିହାରୀ ରଙ୍ଗଶାଳା ମଧ୍ୟରେ ପ୍ରବେଶ କଲା । ମହାରାଜା ରାମଗୁପ୍ତଙ୍କର ହିଞ୍ଜଡ଼ା, ବାମନ ମାନଙ୍କ ପ୍ରତି ପୂର୍ବରୁ ଏକ ପ୍ରକାର ଅହେତୁକ ଦୁର୍ବଳତା ରହିଛି । ବାମନକୁ ଦେଖି ରାମଗୁପ୍ତ ଆନନ୍ଦିତ ହୋଇ ଉଠିଲେ । କହିଲେ– ''ଆସ...ଆସ ବାମନବୀର । ତୁମର ତିନିପାଦର ମହିମା, ଏ ସଂସାରରେ ଅତ୍ୟନ୍ତ ଅସାଧାରଣ ଲୀଳା ସୃଷ୍ଟି କରିଛି । ଆଜି ଏଭଳି ଅସମୟରେ ତୁମର ପାଦ ଏପଟକୁ କେମିତି ପଡ଼ିଲା ?''

ବାମନ ମହାରାଜ ରାମଗୁପ୍ତଙ୍କର କଥାରେ ନିଜ ମୁହଁର ଛୋଟ ଛୋଟ ନିଶ ଗୁଡ଼ିକୁ ମୋଡ଼ି ମୋଡ଼ି ହସିଲା, ନିଜର ଦୃଷ୍ଟି ରଙ୍ଗଶାଳା ଉପରେ ପହଁରେଇ ଆଣି କହିଲା– ''କ'ଣ କରିବା ମହରାଜ ! ଦିଗ୍‌ବିଜୟରେ ଯେତେବେଳେ ବାହାରିଛୁ ସେତେବେଳେ ବିଶ୍ରାମ କାହିଁ ଯେ ? ତଥାପି ଆସିବାକୁ ପଡ଼ିଲା ।''

ରାମଗୁପ୍ତ ବାମନର କଥା ଶୁଣି ହସିଲେ– ''ଆରେ ଏ କି କଥା । ଏତେ ପରିଶ୍ରମ କ'ଣ କରିବା କଥା ବାମନବୀର ? ବିଶ୍ରାମ ନକଲେ ତମେ ଥକିପଡ଼ିବନି ? ଆସ ଆସ ଟିକେ ଚାଖି ଦିଅ, ସବୁ କ୍ଲାନ୍ତି କେଉଁଆଡ଼େ ପଳାଇବ ।''

ମଦଭର୍ତ୍ତି ସୁରେଇକୁ ଦେଖି ବାମନ କହିଲା– ''ନା, ....ନା ମହାରାଜ ।''

ରାମଗୁପ୍ତ ବଡ଼ ଆଶ୍ଚର୍ଯ୍ୟ ହୋଇ ପଚାରିଲେ– ''କ'ଣ ତୁମେ ମଦ୍ୟକୁ ପରିତ୍ୟାଗ କରିଦେଲ ?''

ବାମନ କହିଲା– ''ସେ କଥା ନୁହେଁ !''

ରାମଗୁପ୍ତ ପଚାରିଲେ– ''ତା ହେଲେ ଆଉ କ'ଣ ବାମନବୀର ?''

ବାମନ କହିଲା – ''ଆମତ୍ୟ କୁଆଡ଼େ ଆସୁଛନ୍ତି ।''

ବାମନ କଥା ଶୁଣି ରାମଗୁପ୍ତଙ୍କର କପାଳ କୁଞ୍ଚିତ ହୋଇ ଆସିଲା । ଅତ୍ୟନ୍ତ କ୍ଷୁଣ୍ଣ ସ୍ୱରରେ କହିଲେ– ''ଏହି ଅମାତ୍ୟଟା ମୋର କାଳ ହୋଇ ଛିଡ଼ା ହୋଇଛି । ଏବେ ଆସି କହିବ ଯୁଦ୍ଧ ଏମିତି ହେଲା ସେମିତି ହେଲା, ଯୁଦ୍ଧ.....ଖାଲି ଯୁଦ୍ଧ । ଯାହା ଲାଗୁଛି ଯୁଦ୍ଧ ଚିନ୍ତା କରି କରି ମତେ ମରିବାକୁ ହିଁ ପଡ଼ିବ ।''

ରାମଗୁପ୍ତଙ୍କ କଥା ଶେଷ ହୋଇନଥାଏ ସେଠାକୁ ଅମାତ୍ୟ ଆସି ପହଞ୍ଚିଗଲେ । ରାଗରେ ରାମଗୁପ୍ତ ନିଜକୁ ସମ୍ଭାଳିନେଇ ବ୍ୟଙ୍ଗାତ୍ମକ ଭାବରେ କହିଲେ, –''ଆସନ୍ତୁ, ଗୁରୁ ବୃହସ୍ପତି ! କେମିତି ଆସିବାର କଷ୍ଟକଲେ ?''

ଅମାତ୍ୟ କହିଲେ- ''ଏକ ଆବଶ୍ୟକ ମନ୍ତ୍ରଣା ଆପଣଙ୍କ ସହିତ କରିବାର ଥିଲା, ଭଟ୍ଟାରକ ।''

ରାମଗୁପ୍ତ ପଚାରିଲେ - ''କେଉଁ ପ୍ରକାର ମନ୍ତ୍ରଣା ? ଚନ୍ଦ୍ରଗୁପ୍ତ କିଛି ଗଡ଼ବଡ଼ କରିଦେଇଛି କି ?''

ଅମାତ୍ୟ କହିଲେ - ''ନା....ନା ସେ କଥା ନୁହେଁ । ସେ ପୁରା ଶାନ୍ତ ଅଛନ୍ତି ।''

ରାମଗୁପ୍ତ ପଚାରିଲେ -''ତା'ହେଲେ ମହାଦେବୀ ନିଶ୍ଚୟ କିଛି କହିଥିବେ ।''

ଅମାତ୍ୟ କହିଲେ - ''ନା, ସେପରି କିଛି ନାହିଁ ।

ରାମଗୁପ୍ତ କହିଲେ - ''ଆଶ୍ଚର୍ଯ୍ୟ କଥା ତ । ତା'ହେଲେ ଆଉ କେଉଁ ବିଷୟରେ ମନ୍ତ୍ରଣା କରିବେ ?''

ଅମାତ୍ୟ କହିଲେ - ''ସୈନ୍ୟବାହିନୀକୁ ଯୁଦ୍ଧ ପାଇଁ ଆଦେଶ ଦିଅନ୍ତୁ ।''

ରାମଗୁପ୍ତ ପ୍ରଶ୍ନକଲେ - ''କାହିଁକି ?''

ଅମାତ୍ୟ କହିଲେ - ''ଏହି ସ୍ଥାନ ଆଦୌ ସୁରକ୍ଷିତ ନୁହେଁ । ଦୁଇପଟରେ ପର୍ବତମାଳା ଖେଳାଇ ହୋଇ ପାଚେରୀ ଭଳି ରହିଛି ।''

ରାମଗୁପ୍ତ ହସିଲେ - ''ହଁ, ଠିକ୍ ତ । ତେବେ ଏଥିରେ ଏତେ ଚିନ୍ତା କରିବାର କ'ଣ ଅଛି ? ଦୁଇପଟରୁ ଆମର ସୈନ୍ୟବାହିନୀ ଆମକୁ ସୁରକ୍ଷା ଦେଉଛନ୍ତି ।''

ଅମାତ୍ୟ କହିଲେ - ''ଆପଣ ଠିକ୍ କଥା କହୁଛନ୍ତି ମହାରାଜ ! କିନ୍ତୁ ହୁଏତ ଯେକୌଣସି ସମୟରେ ଶତ୍ରୁ ଆମକୁ ଘେରି ଦେଇପାରେ ।''

ରାମଗୁପ୍ତ କହିଲେ - ''ଠିକ୍ ଅଛି, ଯେତେବେଳେ ଯାହା ଘଟିବ ସେତେବେଳେ ଦେଖିବା, ଅମାତ୍ୟ । ଆସନ୍ତାକାଲି କଣ ହେବ, ସେଥିପାଇଁ ଅଯଥା ଚିନ୍ତାକରି କାହିଁକି ଆମ ମୁଣ୍ଡ ଖରାପ କରିବା ଯେ ? ଆଚ୍ଛା ! ଆଜି କୁମାର ଚନ୍ଦ୍ରଗୁପ୍ତ ସହିତ କଥାବାର୍ତ୍ତା କଲା ପରେ ତା'ଣ ମନୋଭାବ କ'ଣ ସେ ସଂପର୍କରେ କିଛି ଅନୁସନ୍ଧାନ କରିପାରିଲେ ?''

ଅମାତ୍ୟ କହିଲେ - ''କେଉଁ କଥା ମହାରାଜ ।''

ରାମଗୁପ୍ତ କହିଲେ - ''କୁମାର କହୁଥିଲେ, ପାହାଡ଼ ତଳେ ଶିବିର ପକାଇବା ନାହିଁ ବରଂ ପାହାଡ଼ର ପଛପଟରେ ଥିବା ଖୋଲା ପ୍ରାନ୍ତରରେ ଶିବିର ପକାଇବା ଉଚିତ ।''

ଅମାତ୍ୟ କହିଲେ - ''କୁମାର ଠିକ୍ କଥା କହୁଥିଲେ । ମୁଁ ମଧ୍ୟ ସେଇଆ ଭାବୁଥିଲି । ଏହି ସ୍ଥାନ ଅପେକ୍ଷା ଆମେ ଖୋଲା ପ୍ରାନ୍ତରରେ ଶିବିର ପକାଇଲେ ଅଧିକ ସୁରକ୍ଷିତ ରହିପାରିବା ।''

ରାମଗୁପ୍ତ ଚମକି ପଡ଼ିଲେ ଓ କହିଲେ- ''ତା'ହେଲେ ଆପଣ ଚନ୍ଦ୍ରଗୁପ୍ତଙ୍କ ସହିତ ହାତ ମିଳାଇଛନ୍ତି ?''

ଅମାତ୍ୟ କହିଲେ- ''ଆପଣ ଯାହା କହିଲେ କୁହନ୍ତୁ ମହାରାଜା, ମଣିଷର ସନ୍ଦେହ ନିବାରଣ ପାଇଁ ସଂସାରରେ କୌଣସି ଔଷଧ ନାହିଁ ।''

ରାମଗୁପ୍ତ ଆହୁରି ଚିଡ଼ିଯାଇ କହିଲେ-''ଠିକ୍ କଥା କହୁଛନ୍ତି ଆପଣ । ଏବେ ଦେଖୁନାହାନ୍ତି, ମୋର ପୂରା ସନ୍ଦେହ ଧ୍ରୁବଦେବୀ ଏବେ ମଧ୍ୟ ଚନ୍ଦ୍ରଗୁପ୍ତଙ୍କୁ ପ୍ରେମ କରୁଛନ୍ତି ।''

ଅମାତ୍ୟ କହିଲେ- ''ଏହା ଅସମ୍ଭବ ମଧ୍ୟ ନୁହେଁ ମହାରାଜା । ''

ରାମଗୁପ୍ତ କହିଲେ- ''ଓଃ ! ତା'ହେଲେ ସମ୍ଭବ ନିଶ୍ଚୟ ନୁହେଁ ?''

ଅମାତ୍ୟ କହିଲେ - ''ନିଶ୍ଚୟ ।''

ରାମଗୁପ୍ତ ଅମାତ୍ୟଙ୍କ କଥାରେ ଆହୁରି ରାଗିଗଲେ - ''ଆପଣ ତାହାହେଲେ ମୋର ଗୁରୁ ହେବା ପାଇଁ ଉପଯୁକ୍ତ ନୁହନ୍ତି ।''

ଅମାତ୍ୟ କହିଲେ- ''କାହିଁକି ମହାରାଜ ।''

ରାମଗୁପ୍ତ ନିଜକୁ ଆଉ ସମ୍ଭାଳି ପାରିଲେ ନାହିଁ । କହିଲେ- ''ଅମାତ୍ୟ ମହୋଦୟ ! ଆପଣଙ୍କର ବୁଦ୍ଧିମତ୍ତାକୁ ଆହୁରି ଟିକେ ପ୍ରଖର କରିବାକୁ ପଡ଼ିବ । କାରଣ ବାହାର ଭିତର ହୋଇ ଯେତେ ଶତ୍ରୁ ଅଛନ୍ତି ଅନ୍ତତଃ ସେମାନେ ଏକା ଥରକେ ନଷ୍ଟ ହୋଇଯିବେ ।''

ଅମାତ୍ୟ କହିଲେ - ''ଏସବୁ ହୋଇଯିବ ମହାରାଜ । ଏଠାରୁ ବର୍ତ୍ତମାନ ଆମର ଶିବିରକୁ ଉଠାଇବାକୁ ପଡ଼ିବ । କାରଣ ଯେକୌଣସି ମୁହୂର୍ତ୍ତରେ ପରିସ୍ଥିତି ଆମ ପାଇଁ ପ୍ରତିକୂଳ ହୋଇଯାଇପାରେ ।''

ରାମଗୁପ୍ତ କହିଲେ- ''କିନ୍ତୁ ଅମାତ୍ୟ ! ଟିକେ ଭଲ ଭାବରେ ଚିନ୍ତା କରନ୍ତୁ । ଆମର ସେନାବାହିନୀ ବର୍ତ୍ତମାନ ମଦ୍ୟରେ ସ୍ନାନ କରି ନିଶ୍ଚିନ୍ତ ମନରେ ନିଦ୍ରା ଯାଇଛନ୍ତି । କାହାର ହେଲେ ଉଠିବାର ନାହିଁ । ସେନାଙ୍କୁ କ'ଣ କହିବି, ମୋର ମଧ୍ୟ ସେହି ଅବସ୍ଥା ହୋଇଛି । ଆମର ଏଇ ବାମନ ବୀର ଯଦି ଚାହିଁବନା ତେବେ ଆଖି ପିଛୁଳାକେ ମୋର ହାତଗୋଡ଼ ଏକ କରିଦେବ । ମୋ ଭିତରେ ପ୍ରତିରୋଧ କରିବାର ଟିକିଏ ହେଲେ ଶକ୍ତିନାହିଁ । ଏହି ଅବସ୍ଥାରେ ଶିବିର ଉଠାଇବା ପାଇଁ ମୁଁ ଆଦେଶ ଦେବା ଅସମ୍ଭବ । ଆସନ୍ତୁ ଅମାତ୍ୟ । ଆପଣ ବିଶ୍ରାମ କରନ୍ତୁ । ମତେ ଖୁବ୍ ଜୋର୍‌ରେ ନିଦ ଆସିଲାଣି । ଯାହା ହେବ କାଲି ସକାଳ ଦେଖାଯିବ ।''

ରାମଗୁପ୍ତ ନିଦରେ ହାଇ ମାରିଲା ବେଳକୁ ଶିବିରରେ କୋଳାହଳ ଶୁଭିଲା – ‘‘ଅମାତ୍ୟ । ଏମିତି କୋଳାହଳ କାହିଁକି ଶୁଭୁଛି ? କ’ଣ କାହାକୁ ପିଇବା ପାଇଁ ପାଣି ମୁନ୍ଦେ ମିଳୁ ନାହିଁ ? ଦେଖନ୍ତୁ ତ ଟିକିଏ । ଯଦି କାହାକୁ ପାଣି ମିଳୁ ନାହିଁ, ତାକୁ ପାଣି ଲୋଟାଏ ଦେଇଦିଅନ୍ତୁ । ଚାଲୁ ଚାଲୁ ହୁଏତ ତା’ର ଗଳା ଶୁଖିଯାଇଥିବ ।’’

ଏହି ସମୟରେ ଅତ୍ୟନ୍ତ ଅସ୍ତବ୍ୟସ୍ତ ହୋଇ ଜଣେ ପ୍ରତିହାରୀ ମହାରାଜା ରାମଗୁପ୍ତଙ୍କର ଶିବିର ନିକଟକୁ ଆସିଲା । ତା ଚେହେରାର ରଙ୍ଗ ଉଡ଼ିଯାଇଥାଏ । ବଡ଼ ଆଶଙ୍କିତ ହୋଇ ଅସ୍ଫୁଟ ସ୍ୱରରେ କହିଲ– ‘‘ମହାରାଜ । ବଡ଼ ଅନର୍ଥ ହୋଇଗଲା ।’’

ରାମଗୁପ୍ତ ପ୍ରତିହାରୀକୁ ପାଟିକଲେ– ‘‘ଆରେ ଚୁପ୍ ହୋଇଯାଅ । ଅର୍ଥ ଅନର୍ଥ ତ ଲାଗି ରହିଥିବ । ଏଥିରେ କେଉଁ ପାହାଡ଼ଟା ଟଳିପଡ଼ିଲା ଯେ । ତୁ ଏମିତି ଅସ୍ତବ୍ୟସ୍ତ କାହିଁକି ହେଉଛୁ ?’’

ପ୍ରତିହାରୀ କାନ୍ଦି ପକାଇଲା ଓ କହିଲା– ‘‘ହଁ ଆଜ୍ଞା ମହାରାଜ ! ଆମ ଉପରେ ପାହାଡ଼ ଟଳିପଡ଼ିଛି । ଆପଣ ଶୁଣିଲେ ମଧ ଥରି ଉଠିବେ ।’’

ପ୍ରତିହାରୀର କଥା ଶୁଣି ରାମଗୁପ୍ତ ଏକ ଅଜଣା ଆଶଙ୍କାରେ ଆତଙ୍କିତ ହୋଇଉଠିଲେ । ପଚାରିଲେ – ‘‘କ’ଣ ହେଲା କିରେ ? କୁମାର ଓ ମହାଦେବୀ ଦୁଇଜଣ କ’ଣ ଗୋଟିଏ କକ୍ଷରେ ରାତ୍ରିଯାପନ କରୁଛନ୍ତି ?’’

ପ୍ରତିହାରୀ କହିଲା– ‘‘ତାହା ନୁହେଁ, ମହାରାଜ ।’’

ରାମଗୁପ୍ତ ପଚାରିଲେ – ‘‘ତା ହେଲେ ସେମାନେ ଦୁଇଜଣ କ’ଣ କେଉଁଆଡ଼େ ପଳାୟନ କଲେ ?’’

ପ୍ରତିହାରୀ କାକୁସ୍ଥ ହୋଇ ଅନୁନୟ ଭରା କଣ୍ଠରେ କହିଲା– ‘‘ମହାରାଜ ! ପ୍ରଥମେ ପୂରା କଥାଟା ଟିକେ ଧୈର୍ଯ୍ୟ ଧରି ଶୁଣନ୍ତୁ । ତା’ପରେ ଯାହା ପଚାରିବା କଥା ପଚାରିବେ ।’’

ରାମଗୁପ୍ତ କହିଲେ – ‘‘ହଉ, ତା’ହେଲେ କହ’’ ।

ପ୍ରତିହାରୀ କହିଲା – ‘‘ମହାରାଜ ! ଶିବିରର ଚତୁର୍ଦ୍ଦିଗରୁ ଶକମାନେ ଆମକୁ ଘେରି ନେଇଛନ୍ତି ।’’

ପ୍ରତିହାରୀଠାରୁ ଏହି ସମ୍ବାଦ ଶୁଣିଲା ପରେ ଅମାତ୍ୟଙ୍କ ଚେହେରା ଶେଥା ଦିଶିଲା । କିନ୍ତୁ ରାମଗୁପ୍ତ ଖୁବ୍ ଜୋରରେ ହସି ଉଠିଲେ । ହସି ହସି ତାଙ୍କର ପେଟ ଫୁଲିଗଲା,

ଆଖିରୁ ପାଣି ବାହାରି ଆସିଲା । ତା'ପରେ ନିଜକୁ ଟିକେ ଆଶ୍ୱସ୍ତ କରାଇ କହିଲେ– "ଆରେ ! କେଡ଼େ ବଡ଼ ମୂର୍ଖ ତୁ । ଶିବିରକୁ ଦୁଇପଟରୁ ଘେରି ଦେଇଛନ୍ତି ତ ଭଲ ହେଲା । କାରଣ ଦୁଇପଟରୁ ଘେରି ରହିଲେ ହିଁ ଶିବିର ଆମର ଆହୁରି ସୁରକ୍ଷିତ ହୋଇଯିବ । ଏବେ ଦେଖିବା କୁମାର ଓ ମହାଦେବୀ କେମିତି ଏକତ୍ର ପଳାୟନ କରିବେ ! କ'ଣ କହୁଛନ୍ତି ଅମାତ୍ୟ ମହୋଦୟ ?"

ଅମାତ୍ୟ ରାମଗୁପ୍ତଙ୍କ କଥାରେ ଅତ୍ୟନ୍ତ କ୍ଷୁବ୍ଧ ହୋଇଗଲେ ଓ ଚିତ୍କାର କଲେ– "ଭଟ୍ଟାରକ । ନିଜର ମସ୍ତିଷ୍କକୁ ଠିକ୍ ଭାବରେ ରଖିବା ହୁଅନ୍ତୁ !" –"ଏଁ କ'ଣ ହେଲା ? ଅମାତ୍ୟ ଆପଣ ଏତେ ଜୋରରେ ଚିତ୍କାର କାହିଁକି କରୁଛନ୍ତି ? କ'ଣ ଆପଣଙ୍କୁ ଥଣ୍ଡା ଧରିଛି କି ?"

ଅମାତ୍ୟ କହିଲେ– "ଆପଣ ଦୟାକରି ଚୁପ୍ ରୁହନ୍ତୁ ।"

ରାମଗୁପ୍ତ ଆହୁରି ବ୍ୟଙ୍ଗ କରି କହିଲେ– "ହେଇ ଦେଖ ମୁଁ ଚୁପ୍ ହୋଇଗଲି । 'ଓଠରେ ଆଙ୍ଗୁଠି ରଖି ଦେଲେ ଓ ଢୁଳାଇବାକୁ ଲାଗିଲେ ।'

ଅମାତ୍ୟ ଶିଖରସେଣ ପ୍ରତିହାରୀକୁ ପଚାରିଲେ– "ତାଙ୍କର ସେନା କେଉଁପଟକୁ ଯାଇଛନ୍ତି ।"

ପ୍ରତିହାରୀ କହିଲା– "ଜାଣିନି ଆଜ୍ଞା । କେଉଁ ପାହାଡ଼ି ପଥ ଦେଇ ସେମାନେ ଏଇ ଘାଟି ପାଖରେ ଆସି ପହଞ୍ଚିଛନ୍ତି । ଘାଟିର ବାହାର ପଟ ଦେଇ ଯିବା ପଥକୁ ମଧ୍ୟ ସେମାନେ ନିଜ ଅଧିକାରକୁ ନେଇ ସାରିଛନ୍ତି । ଯାହାଫଳରେ ଆମେ ଏଠାରୁ କୌଣସି ପରିସ୍ଥିତିରେ ମଧ୍ୟ ବାହାରିପାରିବା ନାହିଁ । ମରିବା ବ୍ୟତୀତ ଆମ ପାଖରେ କୌଣସି ବିକଳ୍ପ ବ୍ୟବସ୍ଥା ନାହିଁ ।"

–"ହୁଁ".... ଅମାତ୍ୟ ଏସବୁ ଶୁଣିଲା ପରେ ଚିନ୍ତାମଗ୍ନ ହୋଇପଡ଼ିଲେ ।

କୁଞ୍ଚିତ କପାଳ ରେଖାରୁ ଜଣାପଡୁଥିଲା ଅମାତ୍ୟ ଏହି ଆସନ୍ନ ଆକ୍ରମଣରେ ଭୟଭୀତ ହୋଇଯାଇଛନ୍ତି ।

ମନକୁ ମନ ସେ କହିବାକୁ ଲାଗିଲେ– "ଯାହା ଜଣାପଡୁଛି ଏହିଠାରେ ହିଁ ସଂଘର୍ଷ ଆରମ୍ଭ ହୋଇଯିବ – ନା ନା ଏକଥା ହୋଇ ପାରିବ ନାହିଁ ।"

ରାମଗୁପ୍ତ ମଧ୍ୟ ଟିକେ ଚିନ୍ତିତ ସ୍ୱରରେ କହିଲେ– "ବାସ୍ତବିକ ଏହା ଏକ ବଡ଼ ଦୁଃଖଦ ସମ୍ବାଦ ।"

ଅମାତ୍ୟ କହିଲେ- "ହଁ, ପକୃତରେ ଅତ୍ୟନ୍ତ ଦୁଃଖପ୍ରଦ ଘଟଣା ମହାରାଜା ।"

ରାମଗୁପ୍ତ କହିଲେ- "ଏହା ସହିତ ଆକସ୍ମିକ ମଧ, କିନ୍ତୁ ଏହି ଆଶଙ୍କା ମୁଁ ପୂର୍ବରୁ କରି ସାରିଥିଲି ।"

ଅମାତ୍ୟ ଉତ୍ସୁକତା ସହିତ ପଚାରିଲେ- "ଆଗରୁ ଜାଣିଥିଲେ ? ମାନେ ?"

ଗର୍ବର ସହିତ ରାମଗୁପ୍ତ ଉତ୍ତର ଦେଲେ- "ହଁ" ।

-"ତା'ହେଲେ ଆପଣ ଏହି ବିକଟ ପରିସ୍ଥିତିରୁ କେମିତି ବାହାରି ଆସିହେବ, ସେ ଉପାୟ ମଧ ଆପଣ ଜାଣିଥିବେ ?"

ରାମଗୁପ୍ତ ହସି ହସି କହିଲେ "ଆରେ ଏ କଥା ତ ମୁଁ ଆଦୌ ଭାବି ନାହିଁ, ଅମାତ୍ୟ ! ହଉ ଠିକ୍ ଅଛି, ମୁଁ ଏହା ଉପରେ ବିଚାର କରିବି । କିଛି ନା କିଛି ଉପାୟ ନିଶ୍ଚୟ ବାହାରି ପଡ଼ିବ ।"

ଅମାତ୍ୟ କହିଲେ - "ତାହେଲେ ଚିନ୍ତା କରନ୍ତୁ ମହାଭାଗ । ଯେଉଁ ବ୍ୟକ୍ତିକୁ ଚତୁର୍ଦ୍ଦିଗରୁ ବିପତ୍ତି ଘେରି ରହି ଅତ୍ୟନ୍ତ ବିଷମ ପରିସ୍ଥିତି ସୃଷ୍ଟି କରିଥାଏ, ସେହି ବ୍ୟକ୍ତିର ଚିନ୍ତନରୁ ତ ବିଜୁଳି ଭଳି କ୍ଷୀପ୍ରତାର ସହିତ ଯଥାର୍ଥ ଯୁକ୍ତି ବାହାରି ଆସିବା କଥା ।"

ରାମଗୁପ୍ତ କହିଲେ- "ଏସବୁ ଆସେ ଯେ ଅମାତ୍ୟ, କିନ୍ତୁ କେଉଁଟା ହେଲେ ସ୍ଥାୟୀ ହୋଇ ରହେ ନାହିଁ । ତତ୍‌କ୍ଷଣାତ୍ ବିଜୁଳିର ଚମକଭଳି ଯୁକ୍ତିର ପ୍ରକାଶପୁଞ୍ଜ ମସ୍ତିଷରେ ଉଦିତ ହେଉ ହେଉ ପୁନର୍ବାର ସେତିକି ବେଗରେ ଲୁପ୍ତ ହୋଇଯାଉଛି । ଅବଶ୍ୟ ଗୋଟିଏ ଯୁକ୍ତି ମତେ ଠିକ୍ ବୋଲି ପ୍ରତୀୟମାନ ହେଉଛି ।"

ଅମାତ୍ୟ ଏକଥା ଶୁଣି ପୁଲକିତ ହୋଇ ପଚାରିଲେ- "କ'ଣ ଜଣାପଡୁଛି ମହାରାଜ ?"

ରାମଗୁପ୍ତଙ୍କର ଓଠରେ ଏକ ବ୍ୟଙ୍ଗ ହସ ନାଚିଉଠିଲା ।

କହିଲେ- "କୁମାରଙ୍କ ନେତୃତ୍ୱରେ ସୈନିକଙ୍କୁ ପଠାଇ ଆମେ ଶକମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଦେଲେ ହେବ ନାହିଁ ଅମାତ୍ୟ ? ଏହାଦ୍ୱାରା କୁମାର ଶକମାନଙ୍କର ପ୍ରଚଣ୍ଡ ଆକ୍ରମଣରେ ମୃତ୍ୟୁବରଣ କରିବେ ଓ ମୋର ଚିନ୍ତା ଚିରଦିନ ପାଇଁ ଚାଲିଯିବ ।"

ଅମାତ୍ୟ ରାମଗୁପ୍ତଙ୍କର ଏଭଳି ଯୁକ୍ତିରେ ଅତ୍ୟନ୍ତ କ୍ଷୁବ୍ଧ ହୋଇପଡ଼ିଲେ । କହିଲେ- "ଆଉ ଯଦି କୌଣସି ଶକବୀରଙ୍କର ଖଣ୍ଡା ଆପଣଙ୍କ ଉପରକୁ ଉଠିଆସେ ତେବେ କ'ଣ କରାଯିବ ମହାରାଜ ?"

ରାମଗୁପ୍ତ କହିଲେ– ‘‘ଅହୋ । ଏକଥା ତ ମୁଁ ଆଦୌ ଭାବିନାହିଁ । ବାସ୍ତବରେ ଏହା ଭାବିବା କଥା ଥିଲା । ତା’ହେଲେ ..... ତା’ହେଲେ କ’ଣ ହେବ ଅମାତ୍ୟ ? କ’ଣ ଏହି ପର୍ବତମାଳାରେ ଆମର ଜୀବନଦୀପ ସମାଧିରେ ପରିଣତ ହେବ ?’’

ଅମାତ୍ୟଙ୍କର ଚେହେରା ଉଦାସ ହୋଇଗଲା ।

ଥକି ଯାଇଥିବା ପଥିକ ଭଳି ସେ କହିଲେ– ‘‘କ’ଣ କୁହାଯାଇପାରିବ ? ବର୍ତ୍ତମାନ ତ କେବଳ ନିୟତି ହିଁ ଆମର ଭରସା ମହାରାଜ । ଆମେ ଅବଶ ହୋଇ ପଡ଼ିଲୁଣି । ବରଂ କୁମାରଙ୍କ ସହିତ ମୁଁ ଏ ସମ୍ପର୍କରେ କିଛି ମନ୍ତ୍ରଣା କଲେ ଭଲ ହୁଅନ୍ତା ।’’

ଅମାତ୍ୟଙ୍କ କଥାରେ ରାମଗୁପ୍ତ ଦବି ଯାଇ କହିଲେ– ‘‘କରିବା ଉଚିତ । କିନ୍ତୁ କୁମାର ଯଦି ଏଥିପାଇଁ ମୂଲ୍ୟ ମାଗନ୍ତି, ଦେବେ ?’’

ଅମାତ୍ୟ କହିଲେ – ‘‘ତା’ହେଲେ ଦେଇଦେବା ।’’

ରାମଗୁପ୍ତ କହିଲେ – ‘‘କେମିତି ଦେଇଦେବା ? ଆପଣ କ’ଣ ଜାଣି ନାହାନ୍ତି ଅମାତ୍ୟ ? ସେ ନିଶ୍ଚୟ ମହାଦେବୀଙ୍କୁ ସମର୍ପଣ କରିବା ପାଇଁ ଦାବି କରିପାରେ । ହଁ, ମୁଁ ନିଜେ ସ୍ୱୀକାର କରୁଛି ଯେ ମୁଁ ନପୁଂସକ । ହେଲେ ସେଥିପାଇଁ ଏତେ ପ୍ରଚାର କରାଯାଉଛି କାହିଁକି ?’’

ଅମାତ୍ୟ ରାମଗୁପ୍ତଙ୍କର ଏପରି ମନ୍ତବ୍ୟରେ ବିରକ୍ତ ହୋଇ କହିଲେ– ‘‘ଭଟ୍ଟାରକ । ଆପଣଙ୍କ ମନରେ କୁମାର ଓ ମହାଦେବୀଙ୍କ ବ୍ୟତୀତ ଅନ୍ୟ କୌଣସି ଚିନ୍ତା ଇ ନାହିଁ । ଆପଣ କ’ଣ କୁମାରଙ୍କୁ ଏତେ ଛୋଟ ଲୋକ ବୋଲି ଭାବୁଛନ୍ତି ?’’

–‘‘ତେବେ ମୁଁ କ’ଣ ମିଛ କଥା କହୁଛି ବୋଲି ଭାବୁଛ ?’’

ଅମାତ୍ୟ କହିଲେ– ‘‘ତାହା ନୁହେଁ ତ ଆଉ କ’ଣ କହୁନାହାନ୍ତି ? କୁମାର ଚନ୍ଦ୍ରଗୁପ୍ତ ଏତେଟା ନୀଚସ୍ତରର କାର୍ଯ୍ୟ ଅନ୍ତତଃ କରିବେ ନାହିଁ ବୋଲି ମୁଁ ଜାଣେ ?’’

ରାମଗୁପ୍ତ ସନ୍ତୁଷ୍ଟ ହୋଇ କହିଲେ– ‘‘ତା’ହେଲେ ଠିକ୍ ଅଛି । ଆପଣ ମନ୍ତ୍ରଣା କରନ୍ତୁ । କିନ୍ତୁ ମନେ ରଖନ୍ତୁ । ମୁଁ ଯେ ପର୍ଯ୍ୟନ୍ତ ଜୀବିତ ଅଛି ସେପର୍ଯ୍ୟନ୍ତ କୌଣସି ପରିସ୍ଥିତିରେ ଧ୍ରୁବଦେବୀଙ୍କୁ କାହାରି ହାତରେ ଦେଇପାରିବି ନାହିଁ ।’’

ଅମାତ୍ୟ ଶିଖରସେଣ ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ । ରାମଗୁପ୍ତଙ୍କର ଏପରି ଅକଥ୍ୟ ଶୁଣି ଶୁଣି ଘୃଣା କରିବାକୁ ଲାଗିଲେ । ପ୍ରତିହାରୀକୁ ସଙ୍କେତ ଦେଲେ କୁମାରଙ୍କୁ ଏଠିକି ନେଇ ଆସିବା ପାଇଁ ।

କିଛିକ୍ଷଣ ପରେ ଚନ୍ଦ୍ରଗୁପ୍ତ ସେଠାରେ ଆସି ପହଞ୍ଚିଲେ । ସଂଯୋଗବଶତଃ ତାଙ୍କ ପଛେ ପଛେ ଧ୍ରୁବଦେବୀ ମଧ୍ୟ ଆସି ପହଞ୍ଚିଗଲେ । କୌଣସି ବିଶେଷ କାରଣ ବଶତଃ ଧ୍ରୁବଦେବୀ ସମସ୍ତ ରାଜକୀୟ କଟକଣା ପଛରେ ପକାଇ ରାମଗୁପ୍ତଙ୍କ ସହିତ ସାକ୍ଷାତ କରିବା ପାଇଁ ରଙ୍ଗଶାଳାରେ ଆସି ପହଞ୍ଚିଗଲେ । ଅମାତ୍ୟ କୁମାରଙ୍କୁ ଅଭିବାଦନ ଜଣାଇଲେ ।

କୁମାର ପଚାରିଲେ– "ଅମାତ୍ୟ ! ମତେ ଏଠାକୁ ଡ଼କାଗଲା କାହିଁକି ?"

ଅମାତ୍ୟ ଛିଡ଼ା ହୋଇ କୁମାରଙ୍କ ନିକଟକୁ ଆସି କହିଲେ – "ହଁ କୁମାର । ବସନ୍ତୁ । ଆପଣଙ୍କ ସହିତ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ମନ୍ତ୍ରଣା କରିବାର ଅଛି ।"

କୁମାର ଚନ୍ଦ୍ରଗୁପ୍ତ ଏକ ଆସନ ଉପରେ ଉପବିଷ୍ଟ ହେଲେ ।

ଠିକ୍ ଏହି ସମୟରେ ଧ୍ରୁବଦେବୀଙ୍କୁ ସେଠାରେ ଦେଖି ରାମଗୁପ୍ତ ଚମକି ପଡ଼ିଲେ – "ଅମାତ୍ୟ । ଦେଖୁଛ ତ । ଶେଷରେ ସେଇ କଥା ହେଲା ଯାହାର ଡ଼ର ମତେ ସବୁବେଳେ ଡ଼ରାଉଛି । କୁମାରଙ୍କର ପଛେ ପଛେ ମହାଦେବୀଙ୍କର ଆସିବାଟା ବଡ଼ ଆଶ୍ଚର୍ଯ୍ୟ କଥା ନୁହେ ? "

ଅମାତ୍ୟ ରାମଗୁପ୍ତଙ୍କର ବକ୍ତବ୍ୟରେ ଚିଡ଼ିଗଲେ – "ଭଟ୍ଟାରକ । କେବେ ହେଲେ ତ ଅନ୍ତତଃ ଶାନ୍ତ ମନରେ, ନିର୍ମଳ ହୃଦୟରେ କଥା ପଦେ କୁହନ୍ତୁ ।"

ରାମଗୁପ୍ତ କ୍ରୋଧରେ ହାତ ମଳିବାକୁ ଲାଗିଲେ । ଏପଟ ସେପଟ ହେବାକୁ ଲାଗିଲେ । ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିଲେ ଓ କହିଲେ– "ଆପଣ ଏ କି କଥା କହୁଛନ୍ତି ଅମାତ୍ୟ ! ଶାନ୍ତି....ଶାନ୍ତି କେଉଁଠୁ ଆଣିବି କୁହ । କୁମାର ଓ ମହାଦେବୀ ମତେ ଅଶାନ୍ତ କରି ରଖିଛନ୍ତି । ମୋର ଅନ୍ତର ହାହାକାର କରି ଉଠୁଛି, ଆଉ ତୁମେ କହୁଛ ମୁଁ ଶାନ୍ତିରେ କଥାବାର୍ତ୍ତା ହେବି ? ପ୍ରେମର ଛଳନାର ଜ୍ୱାଳାରେ ନିଜେ ଜଳିଥିଲେ ସିନା ଜାଣିଥାନ୍ତ ଯେ ଏହାର ଯନ୍ତ୍ରଣା କେତେ ତୀବ୍ର ?"

ଅମାତ୍ୟ ରାମଗୁପ୍ତଙ୍କର ବାଚାଳ ଭଳି ବକ୍ତବ୍ୟପ୍ରତି କୌଣସି ଦୃଷ୍ଟି ନଦେଇ ଚନ୍ଦ୍ରଗୁପ୍ତଙ୍କୁ କହିଲେ–"କୁମାର । ସମସ୍ୟା ଆମର ଜଟିଳ ହୋଇଯାଇଛି, କାରଣ ଶକମାନେ ଆମ ଶିବିରକୁ ଚାରିଆଡୁ ଘେରିଦେଇ ଆମକୁ ଏକପ୍ରକାର ବନ୍ଦୀ କରିଦେଇଛନ୍ତି । ଦୁଇପଟର ପର୍ବତଶ୍ରେଣୀ ମଧ୍ୟ ଏହାକୁ ସୁହାଉଛି । ବାହାରକୁ ଯିବା ପାଇଁ ଥିବା ଏକମାତ୍ର ଗିରିପଥକୁ ମଧ୍ୟ ସେମାନେ ଅକ୍ତିୟାର କରିନେଇଛନ୍ତି । ତେଣୁ ବର୍ତ୍ତମାନ ପରିପ୍ରେକ୍ଷୀରେ ପଳାୟନର ସବୁ ପଥ ବନ୍ଦ ହୋଇଯାଇଛି । ତେଣୁ ପ୍ରଶ୍ନ ହେଉଛି ଏହି ବିକଟ ପରିସ୍ଥିତିରୁ କିପରି ଉଦ୍ଧାର ପାଇବା ?"

ଧ୍ରୁବଦେବୀ ଅନେକ ବେଳୁ ରାମଗୁପ୍ତଙ୍କର ବାଚାଳତା ଶୁଣୁଥିଲେ । ଘୃଣାଭରା ଦୃଷ୍ଟିରେ ତାଙ୍କୁ ଅନାଇ ଏକ ଆସନରେ ଉପବେଶନ କଲେ । କୁମାର ଅମାତ୍ୟଙ୍କର କଥାର ଉତ୍ତର ଦେବାକୁ ଯାଉଛନ୍ତି, ରାମଗୁପ୍ତ ପୁଣି ଥରେ ଚିତ୍କାର କରି ଉଠିଲେ – ''ମହାଦେବୀ ! ଆପଣ କାହିଁକି ଏଠାକୁ ଆସିଲେ ? ଯଦି କୁମାରଙ୍କ ପ୍ରତି ଆପଣଙ୍କର ଅପାର ପ୍ରେମ ଉଚ୍ଛୁଳୁଛି ତେବେ କୁମାରଙ୍କୁ କାହିଁକି  ନିଜ କକ୍ଷରୁ ବାହାରିବାକୁ ଦେଲେ ? ସର୍ବଦା କୁମାର ତୁମ ପାଖରେ ହିଁ ରହୁଛନ୍ତି ।''

ରାମଗୁପ୍ତଙ୍କର କଠୋର ନିଷ୍ଠୁର ବାଣୀରେ ଧ୍ରୁବଦେବୀଙ୍କର ହୃଦୟ ଖଣ୍ଡ ଖଣ୍ଡ ହୋଇଗଲା । ବଡ଼ ବିକଳ ହୋଇ କଣ୍ଠରୁଦ୍ଧ ଅବସ୍ଥାରେ କହିଲେ– ''ଆପଣଙ୍କ ମନରେ କାହିଁକି ଯେ ମୋ ପ୍ରତି ଏଭଳି କଳୁଷ ରହିଛି, ଯାହାକୁ ଶତଚେଷ୍ଟା କଲେ ବି ମୁଁ ଲିଭାଇପାରୁ ନାହିଁ ।''

ରାମଗୁପ୍ତ ଧ୍ରୁବଦେବୀଙ୍କ କଥାରେ ନିଆଁ ଲାଗିଲା ଭଳି ଜଳିଉଠିଲେ – ''କ'ଣ କହିଲ ? ମୋ ମନରେ ପୁଣି କଳୁଷ ଭରି ରହିଛି ? ମୋଭଳି ଜଣେ ସହୃଦୟ ବ୍ୟକ୍ତିର ଅନ୍ତରରେ କେବେ କାଳିମା ରହିପାରେ ? ଛି....ଛି.....କଳୁଷ ତ ତୁମର ଓ କୁମାରଙ୍କ ମନରେ ହିଁ ରହିଛି । ତୁମେ ତ ପ୍ରାର୍ଥନା କରୁଛ ଯେ ଏ ଯୁଦ୍ଧରେ ଯେମିତି ମୁଁ ମୃତ୍ୟୁବରଣ କରେ ଆଉ ତୁମେ କୁମାରଙ୍କ ସହିତ ବିବାହ କରି ସୁଖରେ ଜୀବନ ଯାପନ କରିବ ।''

ଧ୍ରୁବଦେବୀ ରାମଗୁପ୍ତଙ୍କର ଏ ପ୍ରକାର ନିଷ୍ଠୁର ଆକ୍ଷେପରେ ଅତ୍ୟନ୍ତ ଦୁଃଖିତ ହୋଇ ଉଠିଲେ ଓ କାନକୁ ହାତରେ ଚାପିଧରି ପାଟି କଲେ– ''ଈଶ୍ୱରଙ୍କ ଦ୍ୱାହି ଦେଇ କହୁଚି, ଆପଣ ଏମିତି କଥାବାର୍ତ୍ତା କରନ୍ତୁ ନାହିଁ । କୁମାରଙ୍କ ସମ୍ପର୍କରେ ଏଭଳି କଳ୍ପନା କରିବା ମଧ୍ୟ ମୋ ପାଇଁ ପାପ ସଦୃଶ, ମହାରାଜ ! ଆପଣ ଏଭଳି କଦର୍ଯ୍ୟ କଥା ତୁଣ୍ଡରେ ଧରନ୍ତୁ ନାହିଁ ।''

ରାମଗୁପ୍ତ କହିଲେ– ''ଠିକ୍ ଅଛି । କୁମାରଙ୍କ ବିଷୟରେ ନୁହେଁ କିନ୍ତୁ ତୁମ ସମ୍ପର୍କରେ ତ ଚିନ୍ତା କରାଯାଇପାରିବ । ତୁମର କଥାରୁ ସ୍ପଷ୍ଟ ହେଉଛି ଯେ ତୁମେ ଏବେ ମଧ୍ୟ କୁମାରଙ୍କ ପାଇଁ ନିଜ ହୃଦୟରେ ସ୍ଥାନ ସଜାଡ଼ି ରଖିଛ ।''

ଧ୍ରୁବଦେବୀ ଅଧୀର ହୋଇ କହିଲେ–''ଆପଣଙ୍କୁ ମୁଁ କିଭଳି ବିଶ୍ୱାସ ଜନ୍ମାଇବି ଯେ....''

ରାମଗୁପ୍ତ କହିଲେ– ''ଆଉ ଆଉ । ମତେ ବିଶ୍ୱାସ ଦେବା ପାଇଁ ବୃଥା ଚେଷ୍ଟା କର ନାହିଁ । ମୁଁ ଏତେଟା ବୋକା ନୁହେଁ ଯେ ମୋର ପତ୍ନୀ ମତେ ହାତଧରି ଚାଲିବା ଶିଖେଇବ ଆଉ ମୁଁ ତାହା ଗ୍ରହଣ କରିବି ।''

ଅମାତ୍ୟ ବୁଝିପାରିଲେ ନାହିଁ ଏ ପରିସ୍ଥିତିରେ ଚନ୍ଦ୍ରଗୁପ୍ତ ଓ ମହାଦେବୀଙ୍କର ସମ୍ପର୍କକୁ ନେଇ ରାମଗୁପ୍ତ ଯେପରି କଦର୍ଯ୍ୟ ମନୋଭାବ ପ୍ରକାଶ କରୁଛନ୍ତି ସେଥିରେ ଯଦି କୁମାର ରାଗିଯାଇ ଚାଲିଯାନ୍ତି ତେବେ ଘଟଣାଟା ଭିନ୍ନ ମୋଡ଼ ନେଇଯିବ । ବର୍ତ୍ତମାନ ଯେଉଁ ଯୁଦ୍ଧଜନିତ ବିକଟ ପରିସ୍ଥିତି ସୃଷ୍ଟି ହୋଇଛି ସେତିକି ବେଳେ ଚନ୍ଦ୍ରଗୁପ୍ତ ହିଁ କିଛି ଚମତ୍କାର କରି ଏଥିରୁ ଉଦ୍ଧାରର ବାଟ ବାହାର କରିପାରନ୍ତି । ତେଣୁ ସେ ରାମଗୁପ୍ତଙ୍କୁ ଶାନ୍ତ କରିବା ପାଇଁ କହିଲେ–"ଭଟ୍ଟାରକ । ପ୍ରତ୍ୟେକ ବିଷୟ ବା ଘଟଣାର ବିଚାର ପାଇଁ ଏକ ଉପଯୁକ୍ତ ସମୟ ଥାଏ । ଏହି ସମ୍ପର୍କରେ ପରବର୍ତ୍ତୀ କାଳରେ ମଧ୍ୟ ଆଲୋଚନା କରାଯାଇପାରେ । ଆପଣଙ୍କ ବ୍ୟକ୍ତିଗତ ସମସ୍ୟା ଠାରୁ ଆହୁରି ଅଧିକ ମହତ୍ତ୍ୱପୂର୍ଣ୍ଣ ସମସ୍ୟା ବର୍ତ୍ତମାନ ଆମ ସମ୍ମୁଖରେ ଆସି ଉପସ୍ଥିତ ହୋଇଛି ।"

ରାମଗୁପ୍ତ ଅମାତ୍ୟଙ୍କ କଥାରେ ସାମାନ୍ୟ ଥମିଗଲେ ଓ କହିଲେ– "ତା'ତ ଠିକ୍ କଥା ଅମାତ୍ୟ ! କିନ୍ତୁ ତୁମେ ମୋର ସମସ୍ୟାକୁ ଅତି ଗୋଟାଏ ଛୋଟ ସମସ୍ୟା ଭାବେ ଭାବୁଛ ବୋଲି ମୁଁ ଏପରି କହିବାକୁ ବାଧ୍ୟ ହେଉଛି ।"

– "ନା, ନା ମହାରାଜ ! ସେଇଆ ଆଦୌ ନୁହେଁ । ଛୋଟ ହେଉ ବା ବଡ଼ ହେଉ ବର୍ତ୍ତମାନ ଏହି ସମୟରେ ଏକଥା ଗୁଡ଼ିକ ଆଲୋଚନା କରିବା ଅସଙ୍ଗତ ମନେ ହେଉଛି ।"

ରାମଗୁପ୍ତ ପୁଣି ନିଜ ହାତ ଛିଞ୍ଚାଡ଼ି ଦେଇ କହିଲେ– "ତା'ହେଲେ ମୋ କଥାକୁ ଛାଡ଼ିଦିଅ । ଯେଉଁ କଥା ଅସଙ୍ଗତ ନୁହେଁ ସେହି ସମସ୍ୟାର ସମାଧାନ କର ।"

ଅମାତ୍ୟ ଚନ୍ଦ୍ରଗୁପ୍ତଙ୍କ ଆଡ଼କୁ ଅନାଇ କହିଲେ– "କୁମାର । ଆପଣ ଏସବୁ ଘଟଣା ପ୍ରତି ଆଦୌ ଦୃଷ୍ଟି ଦିଅନ୍ତୁ ନାହିଁ । କାରଣ ବର୍ତ୍ତମାନର ବିକଟ ପରିସ୍ଥିତି ଆମ ପାଇଁ ଅତ୍ୟନ୍ତ ପ୍ରତିକୂଳ ଅବସ୍ଥା ସୃଷ୍ଟିକରିଛି ।"

କୁମାର ଚନ୍ଦ୍ରଗୁପ୍ତଙ୍କର ମୁଖମଣ୍ଡଳରେ ଦୃଢ଼ତାର ଆଭା ଚମକି ଉଠିଲା । ସେ ନିଜକୁ ଅତ୍ୟନ୍ତ ସଜାଗ କରି କହିଲେ– "ଅମାତ୍ୟ । ପରିସ୍ଥିତି ସର୍ବଦା ବ୍ୟକ୍ତି ପାଇଁ ପ୍ରତିକୂଳ ସ୍ଥିତି ସୃଷ୍ଟି କରିଥାଏ । ବ୍ୟକ୍ତିକୁ ନିଜର ବୁଦ୍ଧି ଓ ସାହାସକୁ ଅନୁକୂଳ କରେଇବାକୁ ପଡ଼େ । ସାହାସ ଓ ନିଜର ବାହୁବଳରେ ତେଜ ଦେଖାଇବାକୁ ପଡ଼ିବ ।"

ରାମଗୁପ୍ତ ମଝିରୁ ଉଠିପଡ଼ି କହିଲେ– "କିନ୍ତୁ କ'ଣ ହେବ ଏହି ଦୁଇ ବିଶିଷ୍ଟ ଗୁଣ ମୋ ପାଖରେ ନାହିଁ । ଏମିତି କିଛି ବିଶେଷତ୍ୱ ସମ୍ପର୍କରେ ଜଣାଅ ଯାହା ଅନ୍ତତଃ ମୋ ପାଖରେ ହେଲେ ଥିବ ।"

ରାମଗୁପ୍ତଙ୍କର କଥା ଶୁଣି ଧ୍ରୁବଦେବୀଙ୍କର ଏକ ବ୍ୟଙ୍ଗ ହସ ଲହରେଇଗଲା । – ''ଯଦି ଏମିତି ହେବାର ଥିଲା, ତେବେ ଦିଗ୍‌ବିଜୟ କରିବାର ଆବଶ୍ୟକତା କାହିଁକି ପଡ଼ିଲା ? ମୋଠାରୁ ଚୂଡ଼ି ନେଇ ହେଲେ ନିଜେ ପିନ୍ଧି ପକାଇଥାନ୍ତେ ଓ ଅନ୍ତଃପୁରରେ ଓଢ଼ଣା ପକାଇ ବସିଥାନ୍ତେ ।''

ଧ୍ରୁବଦେବୀଙ୍କର ଭୀଷଣ ଉପହାସରେ ରାମଗୁପ୍ତ ଠୋ ଠୋ କରି ହସି ଉଠିଲେ । ଆଖି ମଳି ମଳି କହିଲେ- ''ମୁଁ କ'ଣ ଜାଣିଥିଲି କି ଦିଗ୍‌ବିଜୟ କରିବା ଆଳରେ ଏମିତି ବିସ୍ଫୋରକ ସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିବ ? ମୁଁ ଯଦି ଜାଣିଥାନ୍ତି ଦିଗ୍‌ବିଜୟ ସମୟରେ ଏମିତି ଭୟାନକ ପରିସ୍ଥିତି ଉତ୍ପନ୍ନ ହେବ, ତେବେ ସତ କହୁଛି ମହାଦେବୀ ! ମୁଁ ଅନ୍ତଃପୁରରେ ତୁମ ପଣତ ତଳେ ହିଁ ରହିଯାଇଥାନ୍ତି । ଜାଣିଶୁଣି କ'ଣ କେହି କେବେ ମୃତ୍ୟୁକୁ ନିମନ୍ତ୍ରଣ ଦିଏକି ? ଛାଡ଼ ! ଯାହା ହେବା କଥା ହେଲା । ବର୍ତ୍ତମାନ ତ ବୁଝିଲି ।''

ଚନ୍ଦ୍ରଗୁପ୍ତ ରାମଗୁପ୍ତଙ୍କର ଏପରି ବାଚଳାମି ପ୍ରତି ଦୃଷ୍ଟି ନଦେଇ ଅମାତ୍ୟଙ୍କୁ କହିଲେ- ''ଏବେ ଏହି ବିକଟ ପରିସ୍ଥିତିକୁ ସାମ୍ନା କରିବାକୁ ହେଲେ ଏକମାତ୍ର ଉପାୟକୁ ଆପଣେଇବାକୁ ପଡ଼ିବ ।''

ଅମାତ୍ୟ କ'ଣ କହିବା ପୂର୍ବରୁ ରାମଗୁପ୍ତ ଚିଲ୍ଲେଇଲେ- ''କେଉଁ ପ୍ରକାର ବିକଳ୍ପ ବ୍ୟବସ୍ଥା କୁମାର ? ଜଲଦି କହିଲ ମୁଁ ଯେତେଶୀଘ୍ର ହେବ ନିଜର ପ୍ରାଣରକ୍ଷା ପାଇଁ ତତ୍ପର ହେବି । ତୁମମାନଙ୍କ ପାଇଁ ମଧ୍ୟ ଭାବିବି ।''

ରାମଗୁପ୍ତଙ୍କର ଏପରି ଅଦ୍ଭୁତ କାତରତା ଦେଖି ଧ୍ରୁବଦେବୀ ବିକୃତ କଣ୍ଠରେ କହିଲେ- ''ନିଜର ପ୍ରାଣ ରକ୍ଷା ପାଇଁ ଏତେ ବ୍ୟାକୁଳ କାହିଁକି ହେଉଛନ୍ତି ? କେବେକେବେ ଅନ୍ୟମାନଙ୍କର ବିଷୟରେ ମଧ୍ୟ ଆତୁରତା ପ୍ରକାଶ କରନ୍ତୁ ।''

ରାମଗୁପ୍ତ ନିର୍ଲଜ୍ଜ ଭାବରେ ଉତ୍ତର ଦେଲେ- ''ମହାଦେବୀ । ତୁମେ କଣ ଜାଣିନ, ମୋର ପ୍ରାଣର କି ମୂଲ୍ୟ ? କାରଣ ମୁଁ ଏହି ଗୁପ୍ତ ସାମ୍ରାଜ୍ୟ ମଗଧର ଏକଛତ୍ରପତି ସମ୍ରାଟ । ମୋ ବିନା ରାଜକାର୍ଯ୍ୟ କିପରି ଚାଲିବ ? ରାଜା ବିନା ପ୍ରଜାଙ୍କର ଜୀବନର କିଛି ମୂଲ୍ୟ ନାହିଁ ଯେ ।''

–''ହଁ, ହଁ ଠିକ୍ କଥା କହିଛନ୍ତି । ଏହି ମଗଧ ସାମ୍ରାଜ୍ୟରେ ଆପଣଙ୍କ ଠାରୁ ବଳି ଯୋଗ୍ୟ ବ୍ୟକ୍ତି କାହାନ୍ତି ଯେ ?''

ଅବଶ୍ୟ ଧ୍ରୁବଦେବୀଙ୍କର ଏହି କଟୂକ୍ତିରେ ରାମଗୁପ୍ତ କିଛି ଉତ୍ତର ଦେଲେ ନାହିଁ । ପୂର୍ବଭଳି ନିଜର ଅସଙ୍ଗତ ବ୍ୟବହାର ଜାରି ରଖିଥାନ୍ତି ।

କୁମାର ଚନ୍ଦ୍ରଗୁପ୍ତ ଅମାତ୍ୟଙ୍କୁ କହିଲେ- ''ଅମାତ୍ୟ ପଳାୟନର ପ୍ରୟାସ କରିବା ସର୍ବଥା ନିରର୍ଥକ ବୋଲି ପ୍ରମାଣିତ ହେବ । ଏହାଦ୍ୱାରା ଆମେ ସମସ୍ତେ ମରିବା ।''

ରାମଗୁପ୍ତ ପଚାରିଲେ- ''ଏମିତିରେ ତ ଆମେ ମରିଯିବାର ଅବସ୍ଥା ସୃଷ୍ଟି ହୋଇସାରିଲାଣି, କୁମାର ।''

ଚନ୍ଦ୍ରଗୁପ୍ତ କହିଲେ- ''ହଁ, ସତ କଥା । କିନ୍ତୁ ଯଦି ମୃତ୍ୟୁ ନିଶ୍ଚିତ, ତେବେ ଶକମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କାହିଁକି ନକରିବା ? ଲଢ଼େଇ କରି ମୃତ୍ୟୁବରଣ କରିବା ବରଂ ଶ୍ରେୟସ୍କର ହେଉ । ଅନ୍ତତଃ ଯୁଦ୍ଧରେ ଡ଼ରି ଆମେ ପଳାୟନ କଲୁ ବୋଲି ଅପକୀର୍ତ୍ତି ତ ଅର୍ଜନ କରିବା ନାହିଁ ।''

ଚନ୍ଦ୍ରଗୁପ୍ତ ଓ ଅମାତ୍ୟ ନୀରବରେ କିଛି ଚିନ୍ତା କରିବାକୁ ଲାଗିଲେ । ଏତେ ସମୟ ରାମଗୁପ୍ତ କ'ଣ ଚୁପ୍ ହୋଇ ବସିପାରିପାରିବେ । ସେ ପୁଣି ପଚାରିବାକୁ ଲାଗିଲେ- ''ଅମାତ୍ୟ । ଦେଖିଲ ତ କୁମାରଙ୍କ ମନରେ କେମିତି ପାପ ଲୁଚି ରହିଛି ? ମୋର ପ୍ରାଣ ହରଣ କରିବା ପାଇଁ କିଭଳି ଶସ୍ତା ଉପାୟ କୁମାର ଗ୍ରହଣ କରିଛନ୍ତି । ନା....ନା ଏମିତି କଦାପି ହୋଇପାରିବ ନାହିଁ । ଆମେ ଧବଳ ପତାକା ଲହରେଇ ଶକରାଜାଙ୍କ ଆଗରେ ଆତ୍ମସମର୍ପଣ କରିଦେବା । କିନ୍ତୁ ଯୁଦ୍ଧ କଥା ମତେ କହନ୍ତୁ ନାହିଁ । ବାପ୍‌ରେ । ତୁଚ୍ଛାଟାରେ ଯୁଦ୍ଧ ନାଁରେ କିଏ ନିଜର ପୈତୃକ ପ୍ରାଣଟାକୁ ବିସର୍ଜନ କରିବ ?''

କୁମାର ଚନ୍ଦ୍ରଗୁପ୍ତ ରାମଗୁପ୍ତଙ୍କ କଥାରେ ଭୀଷଣ ଚିଡ଼ିଗଲେ- ''ଏହା ସମ୍ଭବ ନୁହେଁ, ଭଟ୍ଟାରକ । ମୁଁ ମଧ୍ୟ ତୁମ ସହିତ ତରବାରୀ ଧରି ଆଗରେ ଯାଇ ଯୁଦ୍ଧ କରିବି । ସମ୍ରାଟ ସମୁଦ୍ରଗୁପ୍ତଙ୍କର ଆତ୍ମସମ୍ମାନ ମର୍ଯ୍ୟାଦା ଏତେ ଶସ୍ତା ନୁହେଁ ଯେ ବିପଣୀରେ ଶାଗମାଛ ଦରରେ ବିକ୍ରି ହେବ । ସମ୍ରାଟଙ୍କର ମର୍ଯ୍ୟାଦାର ମୂଲ୍ୟ ତରବାରୀରେ ହିଁ ଦିଆଯିବ, ଭ୍ରାତା ! ତେଣୁ ଯୁଦ୍ଧ ହେବ, ନିଶ୍ଚୟ ହେବ । ତୁମେ ତୁମର ସୁରକ୍ଷାର ପୂର୍ଣ୍ଣ ବନ୍ଦୋବସ୍ତ କର । ଯୁଦ୍ଧର ନେତୃତ୍ୱ ମୁଁ ସ୍ୱୟଂ ଗ୍ରହଣ କରୁଛି ।''

ଧ୍ରୁବଦେବୀ କୁମାରଙ୍କ କଥାରେ ଖୁସି ହୋଇ କହିଲେ- ''କୁମାର । ମୁଁ ତୁମ ସହିତ ନିଜର କୃପାଣ ନେଇ ଯୁଦ୍ଧରେ ଅବତୀର୍ଣ୍ଣ ହେବି । ଏହି କପଟୀ ଛଳନାପୂର୍ଣ୍ଣ ବାତାବରଣରେ ରହି ରହି ମୋର ନିଶ୍ୱାସ ରୁଦ୍ଧ ହୋଇଗଲାଣି । ବରଂ ଯୁଦ୍ଧରେ ରଣଚଣ୍ଡୀଙ୍କ ଆଗରେ ଯୁଦ୍ଧ କରୁ କରୁ ମୁଁ ମୋର ପ୍ରାଣ ବିସର୍ଜନ କରିଦେଲେ ଅତି ଉତ୍ତମ ଉଦାହରଣ ହେବ ।''

ରାମଗୁପ୍ତ ପୁଣି ଉପରେ ପଡ଼ି କହିଲେ- ''ଦେଖ.......ଦେଖ ଅମାତ୍ୟ ।

ମୋର ପ୍ରାଣ ନେବା ପାଇଁ କେମିତି ଭିନ୍ନ ଭିନ୍ନ ଷଡ଼ଯନ୍ତ୍ରମାନ ରଚନା କରାଯାଉଛି । ହେଲେ ମୁଁ କ'ଣ ଗୋଟେ କ୍ଷୀର ପିଆ ଛୁଆ ହୋଇଛି ଯେ ଏସବୁ ବୁଝିପାରିବିନି ? ନିଜର ଜୀବନର ସୁରକ୍ଷାକୁ ଆଖି ଆଗରେ ରଖି ଯାହା ଚାଲିଛି । ଯିଏ ଯାହା ହେବା କଥା ହୁଅନ୍ତୁ କିନ୍ତୁ ମୁଁ ମୋର ସ୍ଥାନରୁ ଟିକିଏ ହେଲେ ଘୁଞ୍ଚିବି ନାହିଁ । ଯାହାର ଲଢ଼ିବାର ଅଛି ସେ ଯୁଦ୍ଧକୁ ଯାଉ । ମହାଦେବୀ, ଠିକ୍ ଅଛି । ତୁମେ ଯିବାକୁ ଚାହୁଁଛ ତ ଚାଲିଯାଅ । କିନ୍ତୁ ମୁଁ କାହିଁକି ମୋ ଜୀବନକୁ ବିପଦାପନ୍ନ କରିବି । ଜୀବନ ରହିଲେ ତ ଏମିତି କେତେ ମହାଦେବୀ ଜୀବନକାଳ ମଧ୍ୟରେ ମିଳିବେ ।''

ଏହିସବୁ କଥାବାର୍ତ୍ତା ମଧ୍ୟରେ ଅମାତ୍ୟ ସେମିତି ନୀରବ ରହିଥାନ୍ତି । କୁମାର ଚନ୍ଦ୍ରଗୁପ୍ତ ଓ ଧ୍ରୁବଦେବୀ ମଧ୍ୟ ଚୁପ୍ ହୋଇ ରହିଥାନ୍ତି । କିଛିକ୍ଷଣ ପର୍ଯ୍ୟନ୍ତ ବାତାବରଣଟା ମୃତ୍ୟୁକାଳୀନ ଶୂନ୍ୟତାରେ ସ୍ତବ୍ଧ ହୋଇଗଲା । ଅମାତ୍ୟ କ'ଣ କହିବାକୁ ଯାଉଥିଲେ ଏହି ସମୟରେ ପ୍ରତିହାରୀର ଧ୍ୱନି ଗୁଞ୍ଜରି ଉଠିଲା ।

–''ପରମ ଭଟ୍ଟାରକଙ୍କର ଜୟ ହେଉ । ମହାରାଜ ରାମଗୁପ୍ତଙ୍କର ଜୟ ହେଉ ।''

ରାମଗୁପ୍ତ ଚିତ୍କାର କରି ଉଠିଲେ – ''କହ ପ୍ରତିହାରୀ କି ସମ୍ବାଦ ଆଣିଛୁ ? ପଳାୟନ କରବା ପାଇଁ କୌଣସି ମାର୍ଗ ମିଳିଲା କି ? ଏଠାରେ ତ ମୃତ୍ୟୁ ପାଇଁ ଯୋଜନା ତିଆରି ହେଉଛି ।''

–''ହେ ମହାରାଜ । ଶକରାଜଙ୍କର ଦୂତ ଆସିଛି ।''

ରାମଗୁପ୍ତ ଶଙ୍କିତ କଣ୍ଠରେ ପଚାରିଲେ – ''କଣ ଶକରାଜ କିଛି ସନ୍ଧି ପ୍ରସ୍ତାବ ଦେଇଛନ୍ତି କି ?

– ''ନାହିଁ, ମହାରାଜ । ସେମିତି କିଛି ସନ୍ଦେଶ ନାହିଁ ।''

–''ସନ୍ଦେଶ ? କି ପ୍ରକାର ସନ୍ଦେଶ ? କ'ଣ ମୁଁ ତାଙ୍କ ଉପରେ ଆକ୍ରମଣ ଆଗ କରିବି ? ଯାଅ କହିଦିଅ ମୁଁ ଆକ୍ରମଣ କରିବି ନାହିଁ । ଏହିସବୁ ଯୁଦ୍ଧଫୁଦ୍ଧ କିଛି ଭଲ କଥା ନୁହେଁ । ଅଯଥାରେ ହଜାର ସଂଖ୍ୟକ ନାରୀ ବିଧବା ହୋଇଯିବେ । ଯାଅ, କହିଦିଅ ଶକରାଜଙ୍କର ଦୂତକୁ ଯେ ତାଙ୍କର ପ୍ରସ୍ତାବକୁ ମୁଁ ସ୍ୱୀକାର କରୁଛି । ଯଦି ସେ ଚାହୁଁଛନ୍ତି ମୁଁ ତାଙ୍କ ଉପରେ ଆକ୍ରମଣ କରିବି ନାହିଁ ତେବେ ତାହା ହିଁ ହେବ ।''

କ୍ଷୋଭର ସହିତ ପ୍ରତିହାରୀ କହିଲା– ''ସେଭଳି କିଛି ଘଟିନାହିଁ ମହାରାଜ ।''

– ''ତା'ହେଲେ କ'ଣ ସେ ଉପହାର ଆମ ଠାରୁ ଚାହୁଁଛି ।''

– ''ନା' ମହାରାଜ । ସେ ଆପଣଙ୍କ ସହିତ ସନ୍ଧି କରିବାକୁ ଚାହୁଁଛନ୍ତି ।''

ରାମଗୁପ୍ତ ଖୁବ୍ ଜୋରରେ ହସି ଉଠିଲେ- "ଠିକ୍ ଅଛି । ସନ୍ଧି କରିବେ ତ କରନ୍ତୁ । ଆମର ଲଢ଼ିବାର ସାମର୍ଥ୍ୟ କାହିଁ ଯେ, ସେ ଯାହା ହେଉ ପ୍ରାଣତ ବଞ୍ଚିଯିବ ।"

ପ୍ରତିହାରୀ କହିଲା- "ମହାରାଜ । ଶକରାଜ ସନ୍ଧି ପାଇଁ ଯେଉଁ ସର୍ତ୍ତ କଥା ଉଲ୍ଲେଖ କରିଛନ୍ତି ତାହା ବଡ଼ ଅନ୍ୟାୟ ଓ ଅସଙ୍ଗତ ଜଣାପଡୁଛି ।"

ରାମଗୁପ୍ତ ପଚାରିଲେ- "ଅବଶ୍ୟ ସର୍ତ୍ତ ବିନା ସନ୍ଧି ତ ଅସମ୍ଭବ । କ'ଣ ଧନ ମାଗିଛନ୍ତି ?"

ପ୍ରତିହାରୀ କହିଲା - "ଧନ ତ ମାଗିଛନ୍ତି, ତା ସହିତ କେତେକ ଅତ୍ୟନ୍ତ ଅସଙ୍ଗତ ପ୍ରସ୍ତାବ ଦେଇଛନ୍ତି ତାହା ବର୍ଣ୍ଣନା କରିବାକୁ ମୋର ଜିଭ କମ୍ପୁଛି ।"

ରାମଗୁପ୍ତ ପ୍ରତିହାରୀର ଏଭଳି କଥାବାର୍ତ୍ତାରେ ବିରକ୍ତ ହୋଇଗଲେ । କହିଲେ- "ଜିଭ କମ୍ପୁଛି । ଆଶ୍ଚର୍ଯ୍ୟ କଥା । ଏମିତି କି ପ୍ରକାର ଦାବୀ ଶକରାଜ ରୁଦ୍ରସିଂହ କରିଛି ଯେ ତାହାର ଚିନ୍ତନରେ ତୁମକୁ ଏତେ କଷ୍ଟ ହେଉଛି ? ଶୀଘ୍ର କହ । ଶକମାନେ କ'ଣ ଚାହାନ୍ତି ? ମଗଧ ସାମ୍ରାଜ୍ୟକୁ ମଧ ମୁଁ ଦାନ କରିଦେଇପାରେ । ଶକରାଜ ଜାଣିନି ମୁଁ କେତେ ଦାନୀ, ଗୁଣୀ ସହୃଦୟ ବ୍ୟକ୍ତି ।"

ତଥାପି ପ୍ରତିହାରୀ ମୁଣ୍ଡ ତଳକୁ କରି ବଡ଼ ବିନମ୍ରତାର ସହିତ କହିଲା- "ମହାରାଜ । ତାଙ୍କର ଦାବୀ ଅତ୍ୟନ୍ତ ଅଶିଷ୍ଟ ଓ କଦର୍ଯ୍ୟ । ଆପଣ ସହିପାରିବେ ନାହିଁ ।"

ରାମଗୁପ୍ତ ରାଗିଯାଇ କହିଲେ- "କାହିଁକି ଏମିତି ଅନର୍ଗଳ ଗପି ଚାଲିଛୁ ଆଉ ମୋର ସମୟ ନଷ୍ଟ କରୁଛୁ ? ମୋର ସହ୍ୟଶକ୍ତି ସମ୍ପର୍କରେ ତୁମେ ଜାଣିନ ? ଦେଖୁନ ତୁମର ମହାରାଣୀଙ୍କର ମୋ ପ୍ରତି ଉପେକ୍ଷାକୁ କେମିତି ମୁଁ ସହି ଆସୁଛି । ମୁଁ ଥିବା ସତ୍ତ୍ୱେ କୁମାରଙ୍କୁ ସେ ପ୍ରେମ କରୁଛନ୍ତି । ଏଇଟା କ'ଣ ମୋର ସହନଶୀଳତାର ପରାକାଷ୍ଠା ନୁହେଁ ?"

ପ୍ରତିହାରୀ ଅତ୍ୟନ୍ତ ଧୀର ସ୍ୱରରେ କହିଲା- " ମହାରାଜ ଏହି ବର୍ବର ଶକରାଜ ନିଜର ସାମନ୍ତ ମାନଙ୍କ ପାଇଁ ମଗଧ ସାମ୍ରାଜ୍ୟର ସାମନ୍ତମାନଙ୍କର ସ୍ତ୍ରୀ ମାନଙ୍କୁ ଦେବା ପାଇଁ ଏଭଳି ଅସହ୍ୟ ଅଶ୍ଳୀଳ ଦାବୀ ସନ୍ଧି ପ୍ରସ୍ତାବରେ ଦେଇଛି ।"

ପ୍ରତିହାରୀ ମୁଖରୁ ଏଭଳି ଅନୈତିକ କଥା ଶୁଣି କୁମାର ଚନ୍ଦ୍ରଗୁପ୍ତ ଦାନ୍ତ କଡ଼ମଡ଼ କରିବାକୁ ଲାଗିଲେ । ଧ୍ରୁବଦେବୀ ମନେ ମନେ ରକ୍ତ ଚାଉଳ ଚୋବାଇବାକୁ ଲାଗିଲେ । ଅମାତ୍ୟ ଏକବାରେ ସହମିଗଲେ । କିନ୍ତୁ ରାମଗୁପ୍ତ ? ସେ ହୋ ହୋ ହୋଇ ଅଟ୍ଟହାସ କଲେ । ହସି ହସି ତାଙ୍କ ଆଖିରୁ ଲୁହ ବୋହି ଆସିଲା, ବଡ଼ କଷ୍ଟରେ ନିଜର ହସକୁ

ନିୟନ୍ତ୍ରଣ କରି କହିଲେ– ''ବାସ୍ ! ଶକରାଜ କେବଳ ସାମନ୍ତ ସ୍ତ୍ରୀମାନଙ୍କୁ ଦେବାକୁ ମାଗିଛି ? ତା'ର ଏହି ଦାବୀ ଅନୁଚିତ ମଧ୍ୟ ନୁହେଁ, ଠିକ୍ କଥା ତ । ଏଇଠି ତା'ର ସାମନ୍ତମାନେ ଯୁଦ୍ଧ ପାଇଁ ଯେତେବେଳେ ଏକ ହୋଇଛନ୍ତି ସେତେବେଳେ ସାମନ୍ତନାରୀ ସେମାନଙ୍କୁ ନିହାତି ଆବଶ୍ୟକ । ନାରୀ ବିନା ପୁରୁଷର ବ୍ୟକ୍ତିତ୍ୱ ବିକଶିତ ହୁଏ ନାହିଁ । ତେଣୁ ତାର ସାମନ୍ତମାନଙ୍କର ମନୋରଞ୍ଜନ ପାଇଁ ଆମ ଦେଶର ସାମନ୍ତମାନଙ୍କର ସ୍ତ୍ରୀମାନେ ଯିବା ନିତାନ୍ତ ଜରୁରୀ । ଏକଥା ମଧ୍ୟ ସତ ଯେ ଜଣେ ସାମନ୍ତଙ୍କୁ କିପରି ଜଣେ ସାଧାରଣ ପ୍ରଜାର ପତ୍ନୀକୁ ଅର୍ପଣ କରାଯିବ? ପ୍ରତିହାରୀ ତୁମେ ଯେଉଳି ବିବ୍ରତ ହେଉଛି ସେମିତି କିଛି ଅଘଟଣ ତ ଘଟିନାହିଁ । ଶକରାଜ ରୁଦ୍ରସିଂହର ଦାବୀ ଆଦୌ ଅଯୌକ୍ତିକ ନୁହେଁ । ଅମାତ୍ୟ ! ରୁଦ୍ରସିଂହର ଦାବୀକୁ ଆମେ ବର୍ତ୍ତମାନ ପୂରଣ କରିବା ସମ୍ଭବ ନୁହେଁ । କାରଣ ଏଠି ଆମ ନିକଟରେ ସମସ୍ତ ସାମନ୍ତମାନଙ୍କର ସ୍ତ୍ରୀମାନେ ନାହାନ୍ତି । ଏମିତି କଲେ ହେବ ଶକରାଜକୁ ପଚାରିଦିଅ ଯେ ଏଠି ମଗଧର ଯେଉଁ ସାମନ୍ତମାନଙ୍କର ସ୍ତ୍ରୀ, ଝିଅ, କି ବୋହୂ ମାନେ ଅଛନ୍ତି ସେମାନଙ୍କୁ ନେଇ କାମ ଚଳାଇ ଦେଉ । ଦେଖିବା କ'ଣ ଆଉ କରାଯିବ ?''

ଅମାତ୍ୟ ଶିଖରସେଣଙ୍କର ରାମଗୁପ୍ତଙ୍କର ଏଭଳି ନିର୍ଲଜ ଅଦ୍ଭୁତ ବିଚାରରେ ପୂରା ମୁଣ୍ଡଟା ଘୂରିଗଲା । ସେ କଳ୍ପନା ମଧ୍ୟ କରିପାରୁନଥିଲେ ପ୍ରକୃତରେ ରାମଗୁପ୍ତ କେଉଁ ଧାତୁରେ ଗଢ଼ା ହୋଇଛନ୍ତି । ଜଣେ ରାଜା, ଜଣେ ବ୍ୟକ୍ତି ନୀଚତାର ଏତେ ତଳକୁ ଯାଇପାରେ ଓ ଏଭଳି ବୀଭତ୍ସ ଚିନ୍ତା ମନକୁ ଆଣିପାରେ ? ଓଃ । ଅମାତ୍ୟ ରାଗ ଘୃଣା, ଦୁଃଖରେ ନିଜର ମୁଣ୍ଡକୁ ଚାପିଧରି ପାଟି କରି ଉଠିଲେ– ''ଏ ପ୍ରତିହାରୀ । ତୁମେ ଯାଅ ଏଠାରୁ ।''

କିନ୍ତୁ ପ୍ରତିହାରୀ କିଂକର୍ତ୍ତବ୍ୟବିମୂଢ଼ ଭାବରେ କହିଲା– ''କିନ୍ତୁ ଅମାତ୍ୟେ ମହୋଦୟ ! ଶକରାଜ ରୁଦ୍ରସିଂହ ଆଉ ଗୋଟିଏ ଦାବୀ ସମ୍ପର୍କରେ ମଧ୍ୟ ଜଣାଇଛନ୍ତି ।''

ରାମଗୁପ୍ତ ହଠାତ୍ ବୁଲିପଡ଼ି ପଚାରିଲେ– ''ଓଃ ! ରୁଦ୍ରସିଂହ ନିଜ ପାଇଁ କ'ଣ ମାଗୁଛି ?''

ପ୍ରତିହାରୀ ଭୟଭୀତ ହୋଇ କହିଲା– ''ହଁ, ମହାରାଜ !''

...ଧ୍ରୁବଦେବୀଙ୍କ ଆଡ଼କୁ ଚାହିଁ ଆଖିରେ ଯେମିତି କିଛି ସଙ୍କେତ ଦେଲା, ଧ୍ରୁବଦେବୀ ପ୍ରତିହାରୀର ଉଦ୍ଦେଶ୍ୟ ବୁଝି ପାରିଲେ ଓ କହିବା ପାଇଁ ଇଙ୍ଗିତ ଦେଲେ । ଏସବୁ କଦର୍ଯ୍ୟ କଥାବାର୍ତ୍ତା ଚାଲିଥିଲାବେଳେ କୁମାର ଚନ୍ଦ୍ରଗପ୍ତ ଅତ୍ୟନ୍ତ ଗମ୍ଭୀର ମୁଦ୍ରାରେ ନୀରବ ହୋଇ ବସିଥାନ୍ତି । ଯେମିତି ତାଙ୍କ ଅନ୍ତର ଭିତରେ ଆଉ ଏକ ଭୟଙ୍କର ଯୁଦ୍ଧ ଆରମ୍ଭ ହୋଇଯାଇଛି ।

ପ୍ରତିହାରୀ କହିଲା– ''ମହାରାଜ ଶକରାଜ ରୁଦ୍ରସିଂହ ବହୁ ଦିନରୁ ମହାରାଣୀ ଧ୍ରୁବଦେବୀଙ୍କୁ ଚାହୁଁଛନ୍ତି । ସେ ତାଙ୍କୁ ବିବାହ କରିବ ବୋଲି ମନସ୍ଥ କରିଛି । କିନ୍ତୁ ମଝିରେ କୁମାର ଚନ୍ଦ୍ରଗୁପ୍ତ ମହାରାଣୀଙ୍କର ପିତାଙ୍କୁ ଯୁଦ୍ଧରେ ପରାଜିତ କରିଦେବାରୁ ମହାରାଜ ନାଗସେନ ମହାଦେବୀଙ୍କୁ କୁମାରଙ୍କୁ ଅର୍ପଣ କରିଥିଲେ । ନହେଲେ ରୁଦ୍ରସିଂହ ମହାଦେବୀଙ୍କୁ ହିଁ ବିବାହ କରିଥାନ୍ତା .........।''

– ''କ'ଣ ହେଲା ? ରୁଦ୍ରସିଂହ ମହାଦେବୀଙ୍କୁ ମଧ୍ୟ ମାଗୁଛି ?'' ଅତ୍ୟନ୍ତ ଭୟଭୀତ ହୋଇ ରାମଗୁପ୍ତ ପାଟିକରି ଉଠିଲେ ।

ପ୍ରତିହାରୀ କହିଲା – '' ହଁ ମହାରାଜ ।''

ରୁଦ୍ରସିଂହର ଏ ପ୍ରସ୍ତାବରେ ରାମଗୁପ୍ତ ବାସ୍ତବରେ ଭୟଭୀତ ହୋଇ ଯାଇ ବିକଳ ହୋଇ କହିଲେ– ''ଅମାତ୍ୟ ! ଶକରାଜ ରୁଦ୍ରସିଂହ ମହାଦେବୀଙ୍କୁ ବିବାହ ପାଇଁ ଯେ ଇଚ୍ଛୁକ, ଏହା କେତେଦୂର ଯଥାର୍ଥ, କହିଲ ?''

ଅମାତ୍ୟ କହିଲେ – ''ଏହି ବିଷୟରେ ମତେ କିଛି ଜଣାନାହିଁ, ମହାରାଜ ।''

– ''ଠିକ୍ ଅଛି । ଜାଣିନ ? ହେଲେ କ'ଣ ହେଲା ? ରୁଦ୍ରସିଂହ କେବେହେଲେ ମିଛ କହିବ ନାହିଁ । କିନ୍ତୁ ମହାଦେବୀଙ୍କର ପିତାର ଏହି ଭୂଲ୍ ହେଲା ଯେ ସେ ଶକରାଜ ରୁଦ୍ରସିଂହର ଆକାଂକ୍ଷିତ ବସ୍ତୁକୁ ଚନ୍ଦ୍ରଗୁପ୍ତକୁ ଉପହାର ଭାବରେ ଦେଇଦେଲା । ଯେତେବେଳେ ରୁଦ୍ରସିଂହ ଏଭଳି ଚାହୁଁଥିଲା ସେତେବେଳେ ନାଗସେନକୁ ଏମିତି କରିବାର ନଥିଲା ।''

ଧ୍ରୁବଦେବୀଙ୍କ ଆଡ଼କୁ ପୁଣି ଦେଖି ରାମଗୁପ୍ତ କହିଲେ – ''କ'ଣ ମହାଦେବୀ । ତୁମେ –''ଏ କଥା ଜାଣିଥିଲ ଯେ ରୁଦ୍ରସିଂହ ତମକୁ ପ୍ରେମ କରୁଛି । ତେବେ ଏକଥା କାହିଁକି ନିଜ ବାପକୁ କହିଲ ନାହିଁ ?''

କ୍ରୋଧରେ ଧ୍ରୁବଦେବୀ ଥରୁଥାନ୍ତି– ''ଆପଣ କ'ଣ ବୋଲି ମତେ ଭାବିଛନ୍ତି ! ଗୋଟେ ବସ୍ତୁ, ଜିନିଷ ? ଖେଳଣା ? ଯାହାର ଯାହା ଇଚ୍ଛା ହେବ ସେଥିପାଇଁ ମୁଁ ତାକୁ ପୂରଣ କରିବା ପାଇଁ ବଳିପଡ଼ିବି ? ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ! ଆପଣଙ୍କର ଏହି ବିଶାଳ ଗୁପ୍ତ ସାମ୍ରାଜ୍ୟ କ'ଣ ନାରୀମାନଙ୍କୁ ଦାନ କରି ହିଁ ଏତେ ବିସ୍ତୃତ ହୋଇଛି ? ମଗଧର ନାରୀମାନେ କ'ଣ ଖାଲି ରାଜ ପରିବାର ଓ ସାମନ୍ତମାନଙ୍କର ଭୋଗ୍ୟ ହେବା ପାଇଁ ଜନ୍ମ ନେଇଛନ୍ତି ?''

ଲଜ୍ଜାହୀନତାର ଚରମ ନିଦର୍ଶନ ପ୍ରଦର୍ଶିତ କରୁ କରୁ ରାମଗୁପ୍ତ ବୀଭତ୍ସ ଭାବରେ ହି.....ହି ହୋଇ ହସି ଉଠିଲେ । –''ମୁଁ ଜାଣିଛି କି ନାହିଁ କହିପାରିବି ନାହିଁ । କିନ୍ତୁ ଆମର

ଅମାତ୍ୟଙ୍କୁ ନିଶ୍ଚୟ ଜଣାଥିବ । କ'ଣ ଅମାତ୍ୟ ମହୋଦୟ ! ତମେ ଜାଣିଛ ନା ଗୁପ୍ତ ସାମ୍ରାଜ୍ୟ କେମିତି ବିସ୍ତୃତ ହୋଇଛି ? କହୁନ । ଟିକେ ମହାଦେବୀଙ୍କୁ ବୁଝାଇ ଦେଉନ ।''

ଅମାତ୍ୟ ଶିଖରଶେଣ ରାମଗୁପ୍ତଙ୍କର ଏଭଳି ଅନୈତିକ ଅଶ୍ଳୀଳ ବ୍ୟଙ୍ଗରେ ଅତ୍ୟନ୍ତ କାତର ହୋଇ କହିଲେ- ''ମୁଁ କିଛି କହିପାରିବି ନାହିଁ ।''

ରାମଗୁପ୍ତ ଆହୁରି ଚିହାଇଲା ଭଳି କହିଲେ- ''କାହିଁକି କହି ପାରିବ ନାହିଁ ? ତମେ ମୋର ପିତା ସମୁଦ୍ରଗୁପ୍ତଙ୍କ ସମୟରୁ ହିଁ ଅମାତ୍ୟ ରହି ଆସିଛ । ଗୁପ୍ତ ସାମ୍ରାଜ୍ୟ ଉନ୍ନତିର ଶିଖର ଦେଶରେ କେମିତି ପହଞ୍ଚିଲା ତାହା ତମକୁ ଭଲଭାବରେ ଅବଗତ ଥିବା କଥା । ଯଦି ଜାଣିନ ତେବେ ବଡ଼ ଗୋଟେ ଅପରାଧ କରିଛ ।''

ଅମାତ୍ୟ ରାମଗୁପ୍ତଙ୍କର କଥାର ଧକ୍କାରେ ଛିଟିକି ପଡ଼ିଲେ- ''ମୁଁ ଜାଣିଛି ମହାରାଜା । କିନ୍ତୁ ଅତୀତର ମୃତ କଥା ଗୁଡ଼ିକୁ ମନେ ପକାଇ ଏବେ ଲାଭ କଣ ? ବର୍ତ୍ତମାନର ସମସ୍ୟା ଅଲଗା ପ୍ରକାର ମୋଡ଼ ନେଇସାରିଛି । ତେଣୁ ଏଠାରେ ପ୍ରଶ୍ନ ଉଠୁଛି ଯେ ଶକରାଜ ରୁଦ୍ରସିଂହଙ୍କର ଦାବୀକୁ ସ୍ୱୀକାର କରାଯିବ ନା ଯୁଦ୍ଧ କରାଯିବ ? ତୃତୀୟ ବିକଳ୍ପ ଆମ ପାଖରେ କିଛି ନାହିଁ । ଶକରାଜ ରୁଦ୍ରସିଂହର ନିର୍ଲ୍ଲଜ ସନ୍ଧି ପ୍ରସ୍ତାବକୁ ସ୍ୱୀକାର କରି ଆତ୍ମରକ୍ଷାକରିବା ନା ନିଜର ପ୍ରାଣର ବଳିଦେଇ କୁଳ ମର୍ଯ୍ୟାଦାକୁ ରକ୍ଷା କରିବା । ସେ ବିଷୟ ଉପରେ ଗୁରୁତ୍ୱ ଦେଇ ବିଚାର କରନ୍ତୁ ମହାରାଜ ।''

ରାମଗୁପ୍ତ ଉତ୍ତର ଦେଲେ- ''କୁଳ ମର୍ଯ୍ୟାଦା ଭଳି ସମ୍ମାନବୋଧ ପାଇଁ ନିଜର ଜୀବନକୁ ବିପନ୍ନ କରିବା ଠିକ୍ ହେବ ନାହିଁ, ଅମାତ୍ୟ ।'' ଜୀବନ ରହିଲେ ତ କୁଳର ସମ୍ମାନକୁ ପୁନର୍ବାର ସୃଷ୍ଟି କରାଯାଇପାରିବ । ଠିକ୍ ଅଛି, ମହାଦେବୀଙ୍କୁ ପଚାରି ଦିଅ, ସେ କ'ଣ ଚାହୁଁଛନ୍ତି ? ମୁଁ ବାରମ୍ୱାର ଏହି କଥାଟି କହୁଛି ଯେ ନିଜର ପ୍ରାଣ ବିନିମୟରେ ବଂଶର ମର୍ଯ୍ୟାଦା ପଛରେ ଦୌଡ଼ିବା ଆଦୌ ବୁଦ୍ଧିମାନର କାର୍ଯ୍ୟ ହେବ ନାହିଁ ।''

ସ୍ୱାଭିମାନ....ଆତ୍ମ ସମ୍ମାନକୁ ଜଳାଞ୍ଜଳି ଦେଇ ଆତ୍ମରକ୍ଷା ପାଇଁ ବ୍ୟାକୁଳ ଗୋଟେ କ୍ଲିବ ପୁରୁଷର ଏପରି ନିର୍ଲଜ୍ଜ କଥା ଶୁଣି ମହାଦେବୀଙ୍କ ସମଗ୍ର ଅଙ୍ଗଲତା କ୍ରୋଧ ଓ ଅସହାୟତାରେ ଯେମିତି ଥରି ଉଠିଲା । ସେ ଚିତ୍କାର କରି ଉଠିଲେ – ''ବନ୍ଦ କର ଏପରି ନିର୍ଲଜ୍ଜ ଅନର୍ଗଳ ଭାଷଣ । ଏପରି ନିର୍ଲଜ ପ୍ରସ୍ତାବ ମୋର ସହ୍ୟଶକ୍ତିର ଯେ ବାହାରେ ଏକଥା ବୁଝିପାରୁଛନ୍ତି ଦିଗବିଜୟୀ, ଅପରାଜେୟ ମଗଧ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଜ୍ୟେଷ୍ଠପୁତ୍ର ରାମଗୁପ୍ତ ମହୋଦୟ !!''

ରାମଗୁପ୍ତ ମଥାନତ କରି କହିଲେ – ''ମହାଦେବୀ ! ମୋର ଏପରି ପ୍ରସ୍ତାବରେ

କେଉଁଠି ତ୍ରୁଟି ରହିଗଲା ଯେ ତୁମେ ଏପରି କ୍ରୋଧାନ୍ୱିତ ହୋଇଉଠୁଛ ? ମୋ କଥା ଯଦି ତମର ପସନ୍ଦ ହେଉନାହିଁ, ତେବେ ଶୁଣିନପାର । ଯଥାସ୍ଥିତିକୁ ଦୃଷ୍ଟିରେ ରଖି ମୁଁ ଯାହା କହିଲି, ତାହା ବିଚାର କରିବା ଉଚିତ । ନା, ତାହା ବି ସମ୍ଭବ ନୁହେଁ ?''

ମଗଧର ମହାରାଣୀ ଧ୍ରୁବଦେବୀଙ୍କ ଆଖିରେ ଅଶ୍ରୁଧାରା ଝଲସି ଉଠିଲା । ଆଖି ଆଗରେ ଠିଆ ହୋଇଥିବା ଘାତକର ମୁହଁକୁ ଅସହାୟ ନିରୀହ ଦୃଷ୍ଟିରେ ହରିଣୀଟିଏ ଚାହିଁଲା ଭଳି ଦୃଷ୍ଟି ତୋଳି ସେ କହିଲେ- ''ମୁଁ ଏହିକଥା ମୋର ପତିଙ୍କ ମୁହଁରୁ ଶୁଣୁଛି ତ ?''

''ହଁ- ସେୟା ତ । ଏପର୍ଯ୍ୟନ୍ତ ତୁମେ ମୋତେ ଆଉ କିଏ ଜଣେ ବୋଲି ଭାବୁଥିଲ ନା କଣ ?''

- ''ନା । କିନ୍ତୁ ମୁଁ ଆପଣଙ୍କୁ ପଚାରିପାରେ କି ବିବାହବେଦୀରେ ଅଗ୍ନିକୁ ସାକ୍ଷୀରଖି ଜୀବନର ସୁଖଦୁଃଖ, ମାନଅପମାନ, ହାନିଲାଭ ତଥା ଯେକୌଣସି ବିକଟ ପରିସ୍ଥିତି ଉପୁଜୁ ନା କାହିଁକି ମୋର ହାତ ଧରି ମତେ ସଖ୍ୟ ଦେବା ପାଇଁ ମନ୍ତ୍ର ଉଚ୍ଚାରଣ ସହିତ ପ୍ରତିଜ୍ଞା କରିଥିଲେ ? ସେ ସବୁ ଆଜି ଆପଣଙ୍କର ସ୍ମରଣ ଅଛି ତ ?''

ରାମଗୁପ୍ତ ଧ୍ରୁବଦେବୀଙ୍କ କଥାରେ ଆଶ୍ଚର୍ଯ୍ୟ ହୋଇ ଚାରିଆଡ଼କୁ ଚାହିଁ କହିଲେ- ''ଆରେ ! ଏଠାରେ ସମସ୍ତେ କ'ଣ ଚୁପ୍ ଚାପ ହୋଇ ବସିଛନ୍ତି ? କିଛି କହୁନାହାନ୍ତି । ଆରେ କହୁନ କାହିଁକି ? କିଏ ମହାଦେବୀଙ୍କର ହାତ ଧରି ଏଭଳି ଅଦ୍ଭୁତ ପ୍ରତିଜ୍ଞା କରିଥିଲା ?''

ଧ୍ରୁବଦେବୀ ରାମଗୁପ୍ତଙ୍କର ଏଭଳି ନିଷ୍ଠୁର ବ୍ୟବହାରରେ ଆହତ ହୋଇଉଠିଲେ । କାନ୍ଦ କାନ୍ଦ ହୋଇ କହିଲେ- ''ତା ହେଲେ ମୁଁ କ'ଣ ଭଟ୍ଟାରକଙ୍କର ମହାଦେବୀ ନୁହେଁ ?''

ରାମଗୁପ୍ତ କହିଲେ- ''କିଏ କହିଲା ତୁମେ ମୋର ମହାଦେବୀ ନୁହଁ ବୋଲି ? ମୋର ଅର୍ଦ୍ଧାଙ୍ଗିନୀ ଏକଥା ତ ସତ । କିନ୍ତୁ ତୁମର ହୃଦୟରେ କୁମାର ହିଁ ବାସ କରନ୍ତି ।''

ମହାଦେବୀ ନିଜକୁ ଅତ୍ୟନ୍ତ ଅସହାୟ ମନେକରି ଅମାତ୍ୟଙ୍କ ଆଡ଼କୁ ଚାହିଁ କହିଲେ- ''ଅମାତ୍ୟ ମହୋଦୟ ! ଆପଣ ନିଜେ ବିବାହ ମଣ୍ଡପରେ ଉପସ୍ଥିତ ଥିଲେ ନା ? ମହାରାଜାଙ୍କୁ ଟିକିଏ ବୁଝାଇ ଦିଅନ୍ତୁ, କିଏ ମୋର ସହିତ ସାତଜନ୍ମର ସାଥୀହୋଇ ରହିବାର ପ୍ରତିଜ୍ଞା କରିଥିଲେ ?''

ଅମାତ୍ୟ ଶିଖରସେଣ ଧ୍ରୁବଦେବୀଙ୍କ କଥା ଶୁଣି ରାମଗୁପ୍ତଙ୍କ ଆଡ଼କୁ ଅନାଇ କହିଲେ- ''ମହାରାଜ । କାହିଁକି ଆପଣ ନିଜେ ସ୍ୱୀକାର କରୁ ନାହାନ୍ତି ଯେ ବିବାହ ବେଦୀରେ ଆପଣ ହିଁ ପ୍ରତିଜ୍ଞା କରିଥିଲେ ?''

ରାମଗୁପ୍ତ ଯେମିତି ଆକାଶରୁ ଖସି ପଡ଼ିଗଲା ଭଳି ହେଲେ – "ମୁଁ ? ନା....ନା କେବେନୁହେଁ ଅମାତ୍ୟ ? ତୁମେ ଭୁଲ ବୁଝିଛ । ମୁଁ କଦାପି ଏଭଳି ନିରର୍ଥକ ପ୍ରତିଜ୍ଞା କରିପାରିବି ନାହିଁ ।"

ଧ୍ରୁବଦେବୀ କହିଲେ- "ତା'ହେଲେ ପୁରୋହିତଙ୍କୁ ଡ଼କାନ୍ତୁ । ସେ କହିବେ କିଏ ପ୍ରକୃତ ପ୍ରତିଜ୍ଞା କରିଥିଲା ।"

ଏସବୁ ଭିତରେ ପ୍ରତିହାରୀ ପୁରୋହିତକୁ ଡ଼ାକିବାକୁ ଚାଲିଗଲା ।

ରାମଗୁପ୍ତ ବିଡ଼ ବିଡ଼ ହୋଇ କହିଲେ- "ବଡ଼ ଆଶ୍ଚର୍ଯ୍ୟ କଥା ତ । ଏତେ ଛୋଟ କଥାଟାକୁ ଏତେ ଗୁରୁତ୍ୱ ଦିଆଯାଉଛି କାହିଁକି ? ହେଲେ ହୋଇଥିବ, କିଏ ଜଣେ ପ୍ରତିଜ୍ଞା କରିଥିବ । ଏଠାରେ ସେହି ପ୍ରତିଜ୍ଞାର କି ଆବଶ୍ୟକତା ଅଛି ? ଯାହା ଜଣାପଡୁଛି ମହାଦେବୀ ଶକରାଜ ରୁଦ୍ରସିଂହଙ୍କ ନିକଟକୁ ଯିବାକୁ ଚାହୁଁନାହାନ୍ତି ।"

ଏହି ସମୟରେ ପୁରୋହିତ ଆସି ସେଠାରେ ପହଞ୍ଚିଲେ । କହିଲେ- "ମତେ ମହାଦେବୀ ଡ଼କାଇଛନ୍ତି ? କ'ଣ ଆଜ୍ଞା ଦେବା ହୁଅନ୍ତୁ ।"

ମହାଦେବୀ କହିଲେ- "ହଁ, ପୁରୋହିତ ମହାଶୟ । ମୁଁ ପଚାରିବାକୁ ଚାହୁଁଛି ଯେ ମୋର ଓ ମହାରାଜଙ୍କ ବିବାହ ହେବା ସମୟରେ ତୁମେ ବିବାହ ମଣ୍ଡପରେ କାହାକୁ ମୋ ସହିତ ସାଥୀ ହୋଇ ରହିବା ପାଇଁ ପ୍ରତିଜ୍ଞା କରାଇଥିଲ ?"

ଅତ୍ୟନ୍ତ ସହଜ ଭାବରେ ହସି ହସି ପୁରୋହିତ ଉତ୍ତର ଦେଲେ- "ମହାରାଜଙ୍କୁ ହିଁ ମୁଁ କୁହାଇଥିଲି ।"

ପୁରୋହିତ କଥାରେ ମହାରାଜ ରାମଗୁପ୍ତ ଏମିତି ହସିବାକୁ ଲାଗିଲେ ଯେମିତି ସେ କେଉଁ ଏକ ଦୁର୍ଗ ଜିତି ଯାଇଛନ୍ତି – "ଆଚ୍ଛା ! ଏଇକଥା ? ମୁଁ ବାସ୍ତବରେ ପ୍ରତିଜ୍ଞା କରିନଥିଲି । ତୁମଦ୍ୱାରା ମତେ ପ୍ରତିଜ୍ଞା କର ବୋଲି କୁହାଯାଇଥିଲା । ପଣ୍ଡିତ ମହୋଦୟ ! ଯେଉଁ ପ୍ରତିଜ୍ଞା ମୁଁ ନିଜେ ସ୍ୱଇଚ୍ଛାରେ କରି ନାହିଁ ତାହାର ବୋଝ ମୋ ଉପରେ କାହିଁକି ଲଦା ହେବ ? ବଚନର ଓଜନ ଓ ମାନ୍ୟତା ରହିବ ଯଦି ବ୍ୟକ୍ତି ସ୍ୱୟଂ ତାହାକୁ କହିଥାଏ । କାହାକୁ କ'ଣ ଗୋଟେ ମନ୍ତ୍ର ଫନ୍ଦ ପଢ଼ାଇ ପ୍ରତିଜ୍ଞା କରାଇବା ଓ ସେହି ପ୍ରତିଜ୍ଞାର ବୋଝ ସେହି ଅସହାୟ ବ୍ୟକ୍ତି ଉପରେ ଲଦିଦେବା କଦାପି ନ୍ୟାୟ ସଙ୍ଗତ ନୁହେଁ ।"

ରାମଗୁପ୍ତଙ୍କ କଥା ଶୁଣି ପୁରୋହିତଙ୍କ ଚେତା ହଜିଗଲା । ସେ ଅସନ୍ତୁଷ୍ଟ ହୋଇ କ୍ଷୁଣ୍ଣ କଣ୍ଠରେ କହିଲେ – "ଏଭଳି କଥାବାର୍ତ୍ତା କରି ବିବାହ ମନ୍ତ୍ରର ଉପହାସ ଉଡ଼େଇବା ଆପଣଙ୍କୁ ଶୋଭା ଦେଉନାହିଁ ।"

ରାମଗୁପ୍ତ ଚିଡ଼ିଯାଇ କହିଲେ – ''ତାହେଲେ କେଉଁ କଥା ସବୁ ମତେ ଶୋଭା ଦେବ ? ମତେ ବୁଝାଇ କହ । କେଉଁ ପ୍ରକାର କଥାବାର୍ତ୍ତା ମୁଁ କରିବି ଯାହା ମତେ ଶୋଭା ଦେବ ।''

ପୁରୋହିତ କହିଲେ– ''ଆପଣ ନିଜର ପ୍ରତିଜ୍ଞା ଅନୁସାରେ ଯେ କୌଣସି ପରିସ୍ଥିତିରେ ମହାଦେବୀଙ୍କୁ ସୁରକ୍ଷା ପ୍ରଦାନ କରିବା ଆବଶ୍ୟକ । ଏହାହିଁ ବେଦ, ପୁରାଣ ଓ ଆମର ଧର୍ମଶାସ୍ତ୍ରମାନଙ୍କରେ ସ୍ପଷ୍ଟ ଭାବରେ ଉଲ୍ଲେଖ ଅଛି ।''

– ''ଚୁଲିକୁ ଯାଉ ତୁମର ସେଇ ବେଦ, ପୁରାଣ ଆଉ ଧର୍ମ ଶାସ୍ତ୍ର ସବୁ । ଅମାତ୍ୟ ! ଦେଖୁଛୁ ତ । ଜଣାନାହିଁ ଏ ବୁଢ଼ାଟା ବିବାହ ବେଦୀରେ ମତେ ପ୍ରତିଜ୍ଞା ଆଳରେ କ'ଣ ସବୁ ଯାତୁସ୍ୟାତୁ କୁହାଇଦେଲା । ଆଉ ଏବେ ସେସବୁ ବାଜେ କଥାର ବୋଝ ମୋ ମୁଣ୍ଡରେ ଲଦି ଦେଉଛି ।''

ରାମଗୁପ୍ତ ଏଭଳି ବିରକ୍ତ ପ୍ରକାଶ କରିବାରୁ ପୁରୋହିତ ତାଙ୍କୁ ବୁଝାଇବା ଢ଼ଙ୍ଗରେ କହିଲେ– ''ମହାରାଜ ! ଆପଣ ଶାନ୍ତ ହୁଅନ୍ତୁ । ବୀର ପୁରୁଷମାନେ ନିଜ ପ୍ରତିଜ୍ଞାର ସମ୍ମାନ ରଖିବାକୁ ଯାଇ ଆବଶ୍ୟକ ପଡ଼ିଲେ ନିଜର ଜୀବନକୁ ମଧ୍ୟ ବାଜି ଲଗେଇ ଦେଇଥାନ୍ତି । ତେଣୁ ବିବାହ ସମୟରେ ଆପଣ କରିଥିବା ପ୍ରତିଜ୍ଞାକୁ ଏପରି ଭାଙ୍ଗି ଦିଅନ୍ତୁ ନାହିଁ । ଏହାଦ୍ୱାରା ଆପଣଙ୍କର ମର୍ଯ୍ୟାଦା କ୍ଷୁଣ୍ଣ ହେବ ।''

କିନ୍ତୁ ରାମଗୁପ୍ତ କୌଣସି କଥା ଶୁଣିବା ଅବସ୍ଥାରେ ନଥିଲେ । ଜୋରରେ ଚିତ୍କାର କଲେ – ''ହେ ବୁଢ଼ା ପଣ୍ଡିତ । ମୁଁ ବୀରପୁରୁଷ ନୁହେଁ କି କୌଣସି ପ୍ରକାର ପ୍ରତିଜ୍ଞା ମଧ୍ୟ କରିନାହିଁ । ସେଦିନ ମୁଁ ସୁରା ସାଗରରେ ବୁଡ଼୍‌କି ଲଗାଇ ବଡ଼ ଆନନ୍ଦରେ ଝୁମୁଥିଲି । କ'ଣ ହେଲା କେଜାଣି ତୁମେ ସବୁ କ'ଣ ପାଠ ପଢ଼ାଇଲ ସେ କଥା ମୁଁ ଆଦୌ ଜାଣିନାହିଁ । ଏସବୁ ଅର୍ଥହୀନ ପ୍ରତିଜ୍ଞା ପାଇଁ ମୁଁ ଆଦୌ ଦାୟୀ ନୁହେଁ ! ମତେ ସେଗୁଡ଼ାକ ଶୁଣାଅନା । କ'ଣ ବୁଝିଲ ତ ?''

ମହାଦେବୀ, ମହାରାଜଙ୍କ ଏହିଭଳି ବକ୍ତବ୍ୟ ଓ ବ୍ୟବହାରରେ ବଡ଼ ଉଦାସ ହୋଇଗଲେ ଓ ଅମାତ୍ୟଙ୍କ ଆଡ଼କୁ ଚାହିଁ କହିଲେ– ''ମହାମାତ୍ୟ, ଆପଣ କ'ଣ କହୁଥିଲେ ମତେ ? ଏଇଆ ତେବେ ଗୁପ୍ତକୁଳର ବୋହୂ ପ୍ରତି ସମ୍ମାନ ପ୍ରଦର୍ଶନ ?''

ଅମାତ୍ୟ ଶିଖରସେଣ ନିଜେ ମଧ୍ୟ ଅତ୍ୟନ୍ତ ସଂଶୟଗ୍ରସ୍ତ ହୋଇ କହିଲେ– ''ମହାଦେବୀ ! ରାଜ୍ୟ ହିଁ ବ୍ୟକ୍ତିକୁ ଜନ୍ମଦିଏ । ବ୍ୟକ୍ତିରୁ ରାଜ୍ୟ ସୃଷ୍ଟି ହୁଏନାହିଁ । ରାଜ୍ୟ ରକ୍ଷା, ରାଜସମ୍ମାନ ରକ୍ଷା ଠାରୁ ବଡ଼ କାମ ଆଉ କିଛି ନାହିଁ ।''

ମହାଦେବୀ ଆକୁଳ ହୋଇ ପଚାରିଲେ– ''କୁଳ ମର୍ଯ୍ୟାଦା ମଧ୍ୟ ନୁହେଁ, ଅମାତ୍ୟ ମହୋଦୟ ?''

ଅମାତ୍ୟ ଅପରାଧି ଭଳି ମୁଣ୍ଡ ନୁଆଇଁ କହିଲେ,–'' ଦେବୀ ! ରାଜ୍ୟ ରକ୍ଷା ଓ କୁଳ ମର୍ଯ୍ୟାଦା ରକ୍ଷା ଦୁଇଟା ଅଲଗା ଅଲଗା ସମସ୍ୟା । ରାଜ୍ୟ ବା ଦେଶର ରକ୍ଷା ପାଇଁ ରାଜା, ପ୍ରଜା, ଅମାତ୍ୟ, ସାମନ୍ତ ସମସ୍ତଙ୍କୁ ପରିତ୍ୟାଗ କରାଯାଇପାରେ । ନୀତିଶାସ୍ତ୍ର ମଧ୍ୟ ଏହି ବିଷୟ ଉପରେ ଗୁରୁତ୍ୱ ଆରୋପ କରିଛି ।''

ମହାଦେବୀ ଅମାତ୍ୟଙ୍କର ଏଭଳି ଦୁଇ ପ୍ରକାର ଦ୍ୱିଧାମୂଳକ ବ୍ୟାଖ୍ୟା ଶୁଣି ଭୟଙ୍କର ରାଗିଯାଇ କହିଲେ,–''ଠକ କପଟୀ ବିଶ୍ୱାସଘାତକ । ନିଜକୁ ନୀତିଶାସ୍ତ୍ର ବ୍ୟାଖ୍ୟାକାର ଭାବୁଥିବା ମୂର୍ଖ ! ଯାହା ଜଣାପଡୁଛି ସମ୍ରାଟ ସମୁଦ୍ରଗୁପ୍ତଙ୍କର ପୁତ୍ରଙ୍କ ସ୍ଥାନରେ ତୁ କେଉଁ କାପୁରୁଷ କ୍ଲୀବର ସନ୍ତାନକୁ ରାଜସିଂହାସନ ଉପରେ ବସାଇ ଦେଇନୁ ତ ?''

ଅମାତ୍ୟଙ୍କର ମୁହଁ ଲଜ୍ଜାରେ ଆହୁରି ରକ୍ତିମ ହୋଇଉଠିଲା । କିନ୍ତୁ ରାମଗୁପ୍ତ କେଉଁ ଛାଡ଼ିବା ଜନ୍ତୁ ଯେ ଚୁପ୍ ହେବେ । ସେ ସେମିତି ଚିତ୍କାର କରିଉଠିଲେ– 'ଅମାତ୍ୟ ! ସତ୍ୟ ଯାହା ହେଉନା କାହିଁକି ମହାଦେବୀଙ୍କୁ ବୁଝାଇଦିଅ ଯେ ମୁଁ ତାଙ୍କର ଏସବୁ ବାଜେକଥା ଶୁଣିବାକୁ ପ୍ରସ୍ତୁତ ନୁହେଁ ।''

ଧ୍ରୁବଦେବୀ ମଧ୍ୟ ସେତିକି ଜୋର୍‌ରେ ଚିତ୍କାର କରିଉଠିଲେ–'' ଯଦି ଆପଣ ମୋ କଥା ଶୁଣିପାରିବେ ନାହିଁ ତେବେ ମତେ କାହା ହାତରେ ହସ୍ତାନ୍ତର କରିପାରିବେ ନାହିଁ ।

–''ହସ୍ତାନ୍ତରର ପ୍ରଶ୍ନ କେଉଁଠୁ ଆସୁଛି ? ତୁମକୁ ଆମେ ଉପହାରରେ ପାଇଛୁ । ପୁଣି ଏବେ ଉପହାର ଭାବରେ ଦେଉଛୁ । ବିକ୍ରି ତ କରୁନୁ !''

ଧ୍ରୁବଦେବୀ ରାମଗୁପ୍ତଙ୍କର ଏସବୁ ନିର୍ଲ୍ଲଜ କଥା ଶୁଣି କାନ୍ଦି ପକାଇଲେ–''ମୁଁ ଏସବୁ ବାଜେ କଥା ଶୁଣିପାରିବି ନାହିଁ । ଏଠାରୁ କୁଆଡ଼େ ଚାଲିଯିବି ।''

ରାମଗୁପ୍ତ ମୁହଁ ଫୁଲାଇ କହିଲେ–'' ଉହୁଁ ! ତୁମେ ଚାଲିଯିବ ? କେମିତି ପଳାଇବ ? ତୁମ ପାଖରେ ଲାଜର ଚିହ୍ନବର୍ଣ୍ଣ ମଧ୍ୟ ନାହିଁ ? ଯାହା ଦେଖୁଛି ତୁମେ ଆମକୁ ବୁଡ଼ାଇ ମାରିବ ଏଠି । ତୁମେ ପଳାଇଲେ ଶକରାଜ ସହିତ ସନ୍ଧି କେମିତି ହେବ ? ସର୍ତ୍ତକୁ ପୂରଣ ନ କଲେ ତାହା ସନ୍ଧି ପଦବାଚ୍ୟ ହେବନାହିଁ, କ'ଣ ମୁଁ ଠିକ୍ କହୁଚି ତ ଅମାତ୍ୟ ?''

ଅମାତ୍ୟ କହିଲେ –''ଭଟ୍ଟାରକ ଠିକ୍ କହୁଛନ୍ତି ?''

–"ମୁଁ ସବୁବେଳେ ଠିକ୍‌କଥା ହିଁ କହିଥାଏ । କିନ୍ତୁ କେହି କ'ଣ ମୋ କଥା ଶୁଣୁଛି କି ? ଏବେ ଦେଖୁନ ଛୋଟକଥାରେ ଆମର ମହାଦେବୀ କିପରି ହୋ'ହଲ୍ଲା କରୁଛନ୍ତି, ଯେମିତି ତାଙ୍କୁ ବଳିବେଦୀ ଉପରେ ଚଢ଼ାଯାଉଛି । ହଉ, ଛାଡ଼ ମୋର ନହେଲା କିନ୍ତୁ ଶକରାଜଙ୍କର ମହାରାଣୀ ହୋଇ ରହିବାରେ କେଉଁ ପାହାଡ଼ଟା ଛିଣ୍ଡିପଡ଼ିବ ଯେ ?"

–"ଓଃ କି ସ୍ଥାନରେ ! କି ଅପଦାର୍ଥ ଲୋକମାନଙ୍କ ପାଖରେ ମୁଁ ଆସିପଡ଼ିଲି ?" ଧ୍ରୁବଦେବୀଙ୍କ ଆଖିରୁ ଧାରଧାର ଅଶ୍ରୁ ବୋହିଗଲା । ..."ଯାହା ଜଣାପଡୁଛି ଏହି ପାପିଷ୍ଠମାନଙ୍କ କବଳରୁ ପ୍ରାଣରକ୍ଷା ପାଇଁ ମୋତେ ମୋର ସତୀତ୍ୱକୁ ହିଁ ବଳି ଦେବାକୁ ପଡ଼ିବ ।"

ରାମଗୁପ୍ତ ଏସବୁ ଶୁଣି ଉତ୍ତର ଦେଲେ–"ଏହା ବ୍ୟତୀତ ତୁମ ନିକଟରେ ଆଉ କୌଣସି ବିକଳ୍ପ ଉପାୟ ନାହିଁ ।"

ଧ୍ରୁବଦେବ ୀଙ୍କର କ୍ରୋଧ ଆହୁରି ଦ୍ୱିଗୁଣିତ ହୋଇଉଠିଲା –"ନିର୍ଲ୍ଲଜ କ୍ଲୀବ ! ଯାଅ, ପଳାଇଯାଅ ମୋ ମୁହଁ ଆଗରୁ । ମୁଁ କାହାର ମୁହଁ ଦେଖିବାକୁ ଚାହେଁନାହିଁ ।"

ମହାରାଣୀଙ୍କର ଏମିତି ଆଗ୍ନେୟରୂପ ଦେଖି ଅମାତ୍ୟ ସେଠାରୁ ଧୀର ପଦରେ ଖସିଗଲେ । ଚନ୍ଦ୍ରଗୁପ୍ତ ମଧ୍ୟ ରଙ୍ଗଶାଳା ବାହାରକୁ ଚାଲିଆସିଲେ । କେବଳ ସେଠାରେ ବାମନ, ରାମଗୁପ୍ତ ଓ ମହାଦେବୀ ରହିଗଲେ ।

ରାମଗୁପ୍ତ କହିଲେ– "ବାପ୍‌ରେ ! ଏତେ ଟିକିଏ ଛୋଟ କଥାରେ ଏତେବଡ଼ ହାଙ୍ଗାମା ସୃଷ୍ଟି କରୁଛ ? ମୋର ତ ଯେମିତି କଣ୍ଠ ଶୁଖିଗଲା ।" ଚଷକ ପାତ୍ରରୁ ପାନୀୟ ଢକଢ଼କ କରି ପିଇଦେଲେ । ବାମନ ରଙ୍ଗଶାଳାରୁ ବାହାରିବାକୁ ଗଲାବେଳେ ରାମଗୁପ୍ତ ତା'ର ହାତକୁ ଧରିପକାଇଲେ– "ରୁହ ! ମୁଁ ତୁମ ସାଙ୍ଗରେ ଯିବି ।"

କିନ୍ତୁ ମହାଦେବୀ ଧ୍ରୁବଦେବୀ ରାମଗୁପ୍ତଙ୍କ ହାତକୁ ଟାଣି ଆଣି ରୋକିଦେଲେ– "ଆପଣ ରୁହନ୍ତୁ ।"

ରାମଗୁପ୍ତ ପଚାରିଲେ– "ମତେ କାହିଁକି ଅଟକାଉଚ ?"

ଧ୍ରୁବଦେବୀ କହିଲେ–"ଆପଣଙ୍କ ସହିତ କିଛି ଗୁରୁତ୍ୱପୂର୍ଣ୍ଣ କଥାବାର୍ତ୍ତା ଅଛି ।"

ରାମଗୁପ୍ତ କହିଲେ–"କଥାବାର୍ତ୍ତା ତ ଆରମ୍ଭରୁ ଚାଲିଛି । ଆଉ ଅଧିକା କ'ଣ କହିବ ?"

ଧ୍ରୁବଦେବୀ ଆଖିରୁ ବୋହି ଆସୁଥିବା ଲୁହକୁ ପୋଛିଦେଇ କହିଲେ–"ଏହି କଥାବାର୍ତ୍ତା ମଗଧ ସାମ୍ରାଜ୍ୟର ମହାରାଜଙ୍କ ସହିତ ନୁହେଁ, ମୁଁ ବର୍ତ୍ତମାନ ମୋର ସ୍ୱାମୀଙ୍କୁ କହିବା ପାଇଁ ଚାହୁଁଛି ।"

ରାମଗୁପ୍ତ ଚମକିପଡ଼ି କହିଲେ- "ପତି ! କି ପତି ? ମୁଁ ଏ ପର୍ଯ୍ୟନ୍ତ ତୁମର ଶରୀରକୁ ସୁଦ୍ଧା ସ୍ପର୍ଶ କରିନାହିଁ । ମୋର ସାରା ଶରୀର ଖାଲି ଜଳୁଛି, ଆଉ ଜଳୁଛି ।"

ଧ୍ରୁବଦେବୀ କହିଲେ-" ସେଥିରେ କ'ଣ ଅଛି, ବିବାହ ବେଦୀରେ ଆପଣଙ୍କୁ ହିଁ ମୋର ବର ବୋଲି ଘୋଷଣା କରାଯାଇଥିଲା । ମୁଁ ଏବେ ପଚାରୁଛି ଆପଣ କ'ଣ ଆପଣଙ୍କର ପତ୍ନୀକୁ ଶକରାଜ ହାତରେ ଉପହାର ଭାବରେ ଦେଇଦେବେ !"

ରାମଗୁପ୍ତ ଅଟ୍ଟହାସ କଣ୍ଠରେ କହିଲେ, -"ଏହା ବ୍ୟତୀତ ନିଜର ପ୍ରାଣରକ୍ଷାର କୌଣସି ମାର୍ଗ ମଧ୍ୟ ମୋତେ ଦେଖାଯାଉନାହିଁ, ମହାଦେବୀ ! ମତେ ତେଣୁ ତୁମକୁ ଉପହାରରେ ଦେବାକୁ ହିଁ ହେବ ।"

ଧ୍ରୁବଦେବୀ ବଡ଼ ଦୁଃଖରେ ଚଟାଣ ଉପରେ ନତଜାନୁ ହୋଇ ବସିପଡ଼ିଲେ ଓ ରାମଗୁପ୍ତଙ୍କର ଗୋଡ଼କୁ ଧରି ଭୋ ଭୋ ହୋଇ କାନ୍ଦିବାକୁ ଲାଗିଲେ-" କ'ଣ ମୁଁ ଏତେ ହତଭାଗିନୀ ଯେ ମୋର ପତି ମୋର ସତୀତ୍ୱକୁ ରକ୍ଷା କରିବା ବଦଳରେ ଲୁଚିକରି ପଳାଇବେ ? ପତ୍ନୀର ମୁଖ୍ୟ ସୁରକ୍ଷାକାରୀ ତା'ର ସ୍ୱାମୀ ଅଥଚ ମୋ ସ୍ୱାମୀ ସେତିକି ମଧ୍ୟ କରିବାକୁ ଅସମର୍ଥ ! ମୁଁ କେମିତି ଏଥିରୁ ବଞ୍ଚିବି ପ୍ରଭୁ ! ମତେ ଶକ୍ତି ଦିଅ ।"

ରାମଗୁପ୍ତ ମହାଦେବୀଙ୍କୁ ସାନ୍ତ୍ୱନା କ'ଣ ଦେବେ, ରୁକ୍ଷ କଣ୍ଠରେ କହିଲେ-"ମୁଁ ଏପରି ଆଦୌ କହିନାହିଁ । କିନ୍ତୁ ନାରୀ ଭଳି ଏକ ତୁଚ୍ଛ ବଳକାଟେ ପାଇଁ ନିଜର ପ୍ରାଣକୁ ବିପନ୍ନ କରିପାରିବି ନାହିଁ । ସେ ଯାହା ବି ହେଉ ତୁମକୁ ଶକରାଜ ରୁଦ୍ର ସିଂହଙ୍କ ନିକଟକୁ ଯିବାକୁ ହେବ । ଯେତେବେଳେ ହୀରାର ସୌନ୍ଦର୍ଯ୍ୟ ଉପରେ ଶତ୍ରୁର ଦୃଷ୍ଟି ପଡ଼ିଯାଏ, ସେତେବେଳେ ବିଳମ୍ବ ନକରି ତା'କୁ ଶତ୍ରୁହାତରେ ସମର୍ପଣ କରିଦେବା ଉଚିତ । ତା'କୁ ପାଖରେ ଲୁଚାଇ ରଖି ନିଜର ଜୀବନକୁ ବିପଦାପନ୍ନ କରିବା କୌଣସି ବୁଦ୍ଧିମାନର କାର୍ଯ୍ୟ ନୁହେଁ ।"

ଏଭଳି ଗୋଟେ ଜଘନ୍ୟ ମାନସିକତାର ବ୍ୟକ୍ତିକୁ ନେଇ କ'ଣ କରାଯିବ ଯେ ? ତଥାପି ମହାରାଣୀଙ୍କର ଆଖିର ଅଶ୍ରୁଧାରା ବନ୍ଦ ହେଉନଥାଏ- "ହେ ମୋର ପତିଦେବ ! ମୁଁ ମାନୁଛି ତୁମର ପ୍ରାଣ ଅମୂଲ୍ୟ କିନ୍ତୁ ତୁମ ପତ୍ନୀ ଆଉ ତା'ର ନାରୀତ୍ୱର ମୂଲ୍ୟ କିଛି କମ୍ ମୂଲ୍ୟବାନ ନୁହେଁ । ତେଣୁ ତୁମେ ବୀରତ୍ୱପୂର୍ଣ୍ଣ ଭାବରେ ଶକରାଜ ରୁଦ୍ର ସିଂହଙ୍କର ସହିତ ଯୁଦ୍ଧକର ଓ ମୋ ନାରୀତ୍ୱକୁ ରକ୍ଷାକର । ଯଦି ତୁମେ ଯୁଦ୍ଧ କରୁ କରୁ ବୀରଗତିକୁ ପ୍ରାପ୍ତ ହୋଇଯିବ ତେବେ ତୁମର ଚିତାରେ ମୁଁ ନିଜେ ପ୍ରବେଶ କରି ସତୀ ହୋଇଯିବି । ଅନ୍ତତଃ ଏତିକି ହେଲେ ମୋର ସମ୍ମାନ, ମୋର ନାରୀତ୍ୱର ମର୍ଯ୍ୟାଦା ରକ୍ଷାହେବ ମହାରାଜ ! କିନ୍ତୁ

ମତେ ଶକରାଜଙ୍କୁ ଅର୍ପଣ କରିଦେବ ? ସେଠାରେ ଯେଉଁ ଅପମାନପୂର୍ଣ୍ଣ ଦାସୀର ଜୀବନ ମତେ ବିତାଇବାକୁ ପଡ଼ିବ ସେକଥା ଭାବିଲେ ମୋର ଆତ୍ମା କମ୍ପିଯାଉଛି । ଥରେ ମଣିଷ ଜନ୍ମ ହୁଏ ଆଉ ମୃତ୍ୟୁବରଣ କରେ, କିନ୍ତୁ ଯେଉଁଠି ମଣିଷର ସମ୍ମାନ ନଷ୍ଟ ହୋଇଯାଏ ସେ ପ୍ରତିଦିନ, ପ୍ରତି ମୁହୂର୍ତ୍ତରେ ମରିବାର ଅସୀମ ଯନ୍ତ୍ରଣା ଭୋଗକରେ ମହାରାଜ ! ମୋ ପ୍ରତି ଟିକେ ଦୟା କରନ୍ତୁ ଭଟ୍ଟାରକ !''

ରାମଗୁପ୍ତ ଧ୍ରୁବଦେବୀଙ୍କର ଏତେ ଅଧୀରତା, ବ୍ୟାକୁଳତା ଓ ଆବେଗକୁ ସାମାନ୍ୟତମ ଭ୍ରୂକ୍ଷେପ ନକରି କହିଲେ, ''ମାନ-ଅପମାନ, ସତୀତ୍ୱ ନାରୀତ୍ୱ ଏସବୁ ବାଜେ କଥାର କିଛି ମୂଲ୍ୟ ନାହିଁ । ତୁମର ନାରୀତ୍ୱ ତୁମପାଇଁ ଅମୂଲ୍ୟ ହୋଇପାରେ। ମୁଁ ମୋ ପାଇଁ କେତେ ଆପଣାର ତାହା ଚିନ୍ତା କରିବା ମୋର ପ୍ରଥମ ପ୍ରାଥମିକତା ହେବ । ସେସବୁ ତୁମକୁ ବୁଝାଇ ଲାଭ କ'ଣ ? ତୁମକୁ ଶକରାଜ ରୁଦ୍ର ସିଂହ ନିକଟକୁ ନିରାପଦରେ ପହଞ୍ଚାଇବା ହିଁ ମୋର ମୁଖ୍ୟକଥା। ଏହା ବ୍ୟତୀତ ମୁଁ ତୁମ ପାଇଁ କିଛି କରିପାରିବି ନାହିଁ ।''

ଧ୍ରୁବଦେବୀ ରାମଗୁପ୍ତଙ୍କର ଏଭଳି ନିର୍ମମ ନିଷ୍ଠୁର ବାକ୍ୟରେ ଲହୁ ଲୁହାଣ ହୋଇଗଲେ । ଦୃଢ଼ତାର ସହିତ ନିଷ୍ପତ୍ତି ନେଲେ ଏବଂ କହିଲେ- ''ତୁମେ ଯାହା କହୁଛ ବା କରିବାକୁ ଯାଉଛ, ତା'କୁ ମୁଁ କୌଣସି ପରିସ୍ଥିତିରେ ମଧ୍ୟ କାର୍ଯ୍ୟକାରୀ ହେବାକୁ ଦେବିନାହିଁ । ମୋର ଶରୀର, ମୋର ନାରୀତ୍ୱକୁ ମୁଁ ଏଭଳି ଭାବରେ କଳଙ୍କିତ ହେବାକୁ ଦେଇପାରିବି ନାହିଁ । ମୋ ନିଜକୁ ମୁଁ ନିଜେ ହିଁ ରକ୍ଷା କରିବି । ତୁମର ପୌରୁଷ, ତୁମର ରକ୍ତ, ନାରୀର ଭୂଲୁଣ୍ଠନରେ ଶିଥିଳ ହୋଇଯାଇପାରେ କିନ୍ତୁ ମୁଁ ଆଦୌ ଚୁପ୍ ହୋଇ ରହିବିନାହିଁ । ମୁଁ ଏହାର ପ୍ରତିଶୋଧ ନେବି ।''

କାଳିସୀ ଲାଗିଲା ଭଳି ଉତ୍ତେଜିତ ହୋଇ ଧ୍ରୁବଦେବୀ ରାମଗୁପ୍ତଙ୍କର କଟିଦେଶରୁ ତରବାରୀଟି ଟାଣି ଆଣିଲେ । ଧ୍ରୁବଦେବୀଙ୍କ ଏପରି ଅକସ୍ମାତ ଆଚରଣରେ ରାମଗୁପ୍ତ ଡରିଗଲେ । ଟିକିଏ ପଛକୁ ଘୁଞ୍ଚିଯାଇ କହିଲେ-''କ'ଣ ହେଲା ତୁମେ ମତେ ହତ୍ୟା କରିବ ?''

ଘୃଣାରେ ମୁଖ ବିକୃତକରି ଧ୍ରୁବଦେବୀ କହିଲେ-''ନା ! ତୁମଭଳି ତୁଚ୍ଛ ଏକ ଗନ୍ଧର୍ବର ଜୀବନକୁ ଶେଷକଲେ ମତେ କେବଳ ଲଜ୍ଜା ହିଁ ମିଳିବ । ମୁଁ ତୁମର ନୁହେଁ ନିଜର ଜୀବନକୁ ହିଁ ସମାପ୍ତ କରିଦେବି ।''

ରାମଗୁପ୍ତ ଚିନ୍ତିତ ହୋଇ କହିଲେ -'' ହଁ ଏସବୁ ତ ଠିକ୍ ଅଛି । କିନ୍ତୁ ତୁମେ ମରିଗଲାପରେ ତମକୁ କେମିତି ଶକରାଜଙ୍କୁ ନିକଟକୁ ପଠାଇବି ? ସନ୍ଧିତ ହୋଇପାରିବ

ନାହିଁ । ତୁମେ ଏମିତି କରନି, ଆରେ କିଏ କୁଆଡ଼େ ଅଛ, ବଞ୍ଚାଅ.... ବଞ୍ଚାଅ...ବଞ୍ଚାଅ । ମହାଦେବୀ ମତେ ହତ୍ୟା କରିବାକୁ ବସିଛି ।'' ଏମିତି ପାଟି କରୁ କରୁ ରାମଗୁପ୍ତ ଚାଲିଗଲେ ।

ରାମଗୁପ୍ତ ଏତେ ଜୋର୍‌ରେ ଚିତ୍କାର କଲେ ଯେ ତାଙ୍କର ସ୍ୱର ବହୁତ ଦୂର ପର୍ଯ୍ୟନ୍ତ ଶୁଣାଗଲା । କ'ଣ ହୋଇଗଲା ବୋଲି ଆଶଙ୍କା କରି ସୈନ୍ୟମାନେ ଦୌଡ଼ି ଆସିଲେ । ସେମାନଙ୍କ ମଧ୍ୟରେ ଥିଲେ କୁମାର ଚନ୍ଦ୍ରଗୁପ୍ତ, ଅମାତ୍ୟ, ସାମନ୍ତ ଇନ୍ଦ୍ରଦେବ, ବୀରସେନ ଓ ସ୍ୱାମୀ ଦାସ ।

ମହାରାଣୀ ଧ୍ରୁବଦେବୀ ପାଗଳିନୀ ପ୍ରାୟ ବେଶରେ କୃପାଣ ଧରିଥିବା ହାତକୁ ଉପରକୁ ଟେକି ତଡ଼ିତ୍ ବେଗରେ ସେଇଟାକୁ ନିଜ ଛାତି ନିକଟକୁ ଆଣିଲା ବେଳକୁ କୁମାର ଚନ୍ଦ୍ରଗୁପ୍ତ ଝପଟିଯାଇ ତାଙ୍କର ହାତର କଚିଟିକୁ ଧରିପକାଇଲେ –''ଦେବୀ ! ଏ କ'ଣ ତୁମେ କରିବାକୁ ଯାଉଛ ? ଗୁପ୍ତକୁଳର ମହାରାଣୀ, ବୀରାଙ୍ଗନା, କୁଳବଧୂ ଏଭଳି ହୀନତା ପ୍ରଦର୍ଶନ କରିବାକୁ ଯାଉଛନ୍ତି ? ଛିଃ.. ଛିଃ.. ଏସବୁ ତ୍ୟାଗ କର ମହାରାଣୀ !''

କୁମାର ଚନ୍ଦ୍ରଗୁପ୍ତଙ୍କ କଥାରେ ଯେମିତି ପଥରଖଣ୍ଡ ଭଳି ଧ୍ରୁବଦେବୀଙ୍କର ଅଭିମାନର ପାହାଡ଼ ଧସିଗଲା । ସେ କଇଁ କଇଁ ହୋଇ କାନ୍ଦିଲେ–''କୁମାର ! ତୁମକୁ କ'ଣ ଏହିକ୍ଷଣି ହିଁ ଆସିବାକୁ ଥିଲା ? ଆଉ କିଛି ସମୟ ପରେ ଆସିଥିଲେ ତୁମର କ'ଣ ବିଗିଡ଼ି ଯାଇଥା'ନ୍ତା ଯେ । ଅନ୍ତତଃ ମତେ ଅପମାନିତ ହେବାପାଇଁ ପଡ଼ିନଥାନ୍ତା । ମୁଁ ସମ୍ପୂର୍ଣ୍ଣ ଭାବରେ ଅସହାୟ ହୋଇପଡ଼ିଛି କୁମାର ! ବର୍ତ୍ତମାନ ମୋ ନିକଟରେ କିଛି ହେଲେ ଅବଲମ୍ବନ ନାହିଁ । ଆତ୍ମହତ୍ୟା କରିବା ଛଡ଼ା ମୁଁ ଆଉ କ'ଣ କରିବି ଯେ ?''

ଚନ୍ଦ୍ରଗୁପ୍ତ ଅତ୍ୟନ୍ତ ସ୍ନେହରେ ଆକୁଳ ହୋଇ କହିଲେ–''ହେ ମହାଦେବୀ ! ତୁମଭଳି ଜଣେ ସାହାସୀ ଶକ୍ତିମୟୀ ନାରୀ ପୁଣି ବୀରାଙ୍ଗନା, ନାରୀର ମୁହଁରେ ଆତ୍ମହତ୍ୟା ଭଳି ଭୀରୁପଣର କଳ୍ପନା ଶୁଣିବା ବାସ୍ତବିକ୍ ବଡ଼ ଦୁଃଖର କଥା । ତୁମେ ଅଧୈର୍ଯ୍ୟ ହୁଅନା । ସବୁ ଧୀରେ ଧୀରେ ଠିକ୍ ହୋଇଯିବ ।''

–''ମୁଁ କ'ଣ କରିବି କୁମାର ? କୁହ ! ମତେ ବାଟ ଦେଖାଅ ! ସତକୁ ସତ କ'ଣ ମୁଁ ସେହି ନରାଧମ ଶକରାଜ ପାଖକୁ ଚାଲିଯିବି ? ଆଉ କିଛି ଉପାୟ ନାହିଁ ?''

ଚନ୍ଦ୍ରଗୁପ୍ତ ଏସବୁ ଶୁଣି ଆହୁରି ରାଗିଗଲେ ଓ କହିଲେ–''ନା, ଦେବୀ ! ଏପରି ଅଘଟଣ ହେବାକୁ ମୁଁ ଦେବିନାହିଁ ।''

–''କିନ୍ତୁ ଭଟ୍ଟାରଙ୍କର ଏହାହିଁ ଆଦେଶ ।''

–''ମୁଁ ଶୁଣିସାରିଛି ମହାରାଣୀ ! କିନ୍ତୁ ମୁଁ ବଞ୍ଚି ଥାଉ ଥାଉ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଦ୍ୱାରା ସ୍ଥାପିତ କୀର୍ତ୍ତିମାନ ସ୍ତମ୍ଭକୁ କୌଣସି ପରିସ୍ଥିତିରେ ଭୂଲୁଣ୍ଠିତ ହେବାକୁ ଦେବି ନାହିଁ । ଯେଉଁ ଗୌରବ ରକ୍ଷା ପାଇଁ ମୁଁ ନିଜର ସର୍ବସ୍ୱ ତ୍ୟାଗ କରିଦେଇଛି, ଏପରିକି ମୋର ଅପ୍ରତିମ ପ୍ରେମର ଆଲୋକକୁ ନିର୍ବାପିତ କରିବାକୁ ବାଧ ହୋଇଛି, ସେହି ଅସୀମ କଷ୍ଟଲବ୍ଧ ସମ୍ମାନର କୀର୍ତ୍ତିରାଜିକୁ ଏତେ ସହଜରେ ପଦଲୁଣ୍ଠିତ କରିବାକୁ ଦିଆଯାଇପାରିବ ନାହିଁ । ଅନ୍ତତଃ ମୋ ଉପରେ ଏତିକି ବିଶ୍ୱାସ ରଖିପାର । ତେଣୁ ଆତ୍ମହତ୍ୟା କରିବା କଥା ମୁଣ୍ଡରୁ ବାହାର କରିଦିଅ ।'

ଅବଶ୍ୟ ଚନ୍ଦ୍ରଗୁପ୍ତଙ୍କର ଏହି ଆଶ୍ୱାସନାମୂଳକ କଥାରେ ମହାରାଣୀ ଧ୍ରୁବଦେବୀଙ୍କୁ କିଛିଟା ସାନ୍ତ୍ୱନା ମିଳିଲା । ସେ ନିଜକୁ ଟିକେ ଆଶ୍ୱସ୍ତ ମନେକଲେ –''ହଁ, କୁମାର ! କେବଳ ତୁମେ ହିଁ ତ ମୋର ଏକମାତ୍ର ଆଶ୍ରୟ ଓ ଭରସା । ଯେଭଳି ଘଟଣା ସବୁ ମୋ ଜୀବନରେ ଘଟିଯାଉଛି, ସେସବୁ ଭୋଗିସାରିଲା ପରେ ମୁଁ ଆଉ କାହାକୁ ବିଶ୍ୱାସ କରିପାରୁନାହିଁ । ସେଇ ଟିକକ କଅଁଳ ସ୍ମୃତିପାଇଁ ତ ମୁଁ ତାରାଭର୍ତ୍ତି ଆକାଶର ମୌନତା ଭିତରେ ବାରମ୍ୱାର ହଜିଯିବାକୁ ଚାହେଁ, କୁମାର ।''

କୁମାର ଚନ୍ଦ୍ରଗୁପ୍ତ ମହାଦେବୀଙ୍କର ଆବେଗଭରା କଥାରେ ଉଲ୍ଲସିତ ହୋଇଉଠିଲେ । ରାମଗୁପ୍ତଙ୍କର ସମସ୍ତ ନିର୍ଲ୍ଲଜତା, ନିଷ୍ଠୁରତାକୁ ନିଜ ମନରୁ ପୋଛିଦେଇ ମହାଦେବୀଙ୍କ ପ୍ରତି ନିଜର ଐକାନ୍ତିକ ପ୍ରେମକୁ ଗୁଞ୍ଜରିତ କରିବାକୁ ମନସ୍ଥ କଲେ ।

ରାମଗୁପ୍ତଙ୍କ ଆଡ଼କୁ ଚାହିଁ କୁମାର କହିଲେ – ''ତୁମେ ତ ସେତିକି ମଧ କରିପାରିବ ନାହିଁ । ତୁମେ ଏତେ ନିର୍ଲ୍ଲଜ ଯେ ନିଜର ପତ୍ନୀକୁ ଆକ୍ରମଣକାରୀ ହାତରେ ଟେକି ଦେବାକୁ ପଶ୍ଚାଦପଦ ହେଉନାହଁ । ସେଥିରେ ପୁଣି ନିଜର ପ୍ରାଣରକ୍ଷା ତୁମ ପାଇଁ ସର୍ବାଧିକ ଆବଶ୍ୟକ !''

କୁମାର ଚନ୍ଦ୍ରଗୁପ୍ତଙ୍କର ଏଭଳି ତୀବ୍ର ଆଘାତରେ ରାମଗୁପ୍ତ ସ୍ତବ୍ଧ ହୋଇଗଲେ । ଅମାତ୍ୟଙ୍କୁ ଉଦ୍ଦେଶ୍ୟ କରି କହିଲେ–''ଦେଖିଲ ତ ଅମାତ୍ୟ ! କୁମାରଙ୍କ ମନରେ କି ଭୟଙ୍କର ଚକ୍ରାନ୍ତ ସବୁ ରୂପନେଇଛି । ମୋର ପ୍ରାଣ ହରଣ କରିବାପାଇଁ କି ସାଂଘାତିକ ଷଡ଼ଯନ୍ତ୍ର ସବୁ ଚାଲିଛି । ମହାରାଣୀ ମତେ ଓଲଟି ଗାଳି ଦେଇ ଆତ୍ମହତ୍ୟା କରିବାକୁ ଧମକ୍ ଦେଉଛନ୍ତି । ଓଃ ! କି ଭୟଙ୍କର ଅବସ୍ଥା ସତେ ।''

ନିଜର କପାଳକୁ ଦୁଇ ହାତରେ ଚାପିଧରି ରାମଗୁପ୍ତ ବସିପଡ଼ିଲେ ।

ଅମାତ୍ୟ ଶିଖରସେଣ ଚନ୍ଦ୍ରଗୁପ୍ତଙ୍କୁ ବୁଝାଇଲା ଭଳି କହିଲେ–''କୁମାର ! ଭଟ୍ଟାରକ

ଆପଣଙ୍କର ଅଗ୍ରଜ ହେବା ସହିତ ଗୁପ୍ତକୁଳର ସମ୍ରାଟ ମଧ୍ୟ । ସମ୍ରାଟଙ୍କ ପ୍ରତି ମର୍ଯ୍ୟାଦା ଓ ବଡ଼ଭାଇଙ୍କ ପ୍ରତି ନମ୍ରତା ପୂର୍ବକ ବ୍ୟବହାର କରିବା ଆପଣ ଭୁଲିବା କଥା ନୁହେଁ ।''

-ଅମାତ୍ୟଙ୍କୁ ଉଦ୍ଦେଶ୍ୟକରି ବ୍ୟଙ୍ଗଭରା କଣ୍ଠରେ କୁମାର ଚନ୍ଦ୍ରଗୁପ୍ତ କହିଲେ- ''ଓଃ ! ସେଥିପାଇଁ ଆପଣ ଗୁପ୍ତକୁଳର ମର୍ଯ୍ୟାଦାକୁ ଶକରାଜାଙ୍କୁ ଉପହାର ସଦୃଶ ଅର୍ପଣ ପାଇଁ ସନ୍ଧି ପ୍ରସ୍ତାବ ଦେଇଛନ୍ତି ? ରାଜା ଓ ରାଜସିଂହାସନ ପ୍ରତି ଏହା ହିଁ ଆପଣଙ୍କର ଚରମ ଆନୁଗତ୍ୟ ଓ ଅସୀମ ନମ୍ରତା ନିଦର୍ଶନ, ନୁହେଁ ଅମାତ୍ୟ? କାପୁରୁଷ ! ଚୁପ୍ କର । ମୁଁ ଯେତେବେଳେ ପର୍ଯ୍ୟନ୍ତ ଜୀବିତ ଅଛି, ଗୁପ୍ତକୁଳ, ଗୁପ୍ତ ସାମ୍ରାଜ୍ୟ ପ୍ରତି ଯିଏ ଆଖି ଉଠାଇ ଦେଖିବ ତା'ର ଆଖି ତାଡ଼ିଦେବି ।''

ଚନ୍ଦ୍ରଗୁପ୍ତଙ୍କର ଦୃଢ଼ତାରେ ଅମାତ୍ୟ ଡରିଗଲେ । ସେ ଭାବିନଥିଲେ ଯେ ଚନ୍ଦ୍ରଗୁପ୍ତ ଟକ୍‌କର ଦେଲାଭଳି ଉତ୍ତର ଦେବେ । ତେଣୁ ନିଜକୁ ବହୁତ ବୁଦ୍ଧିଆ ବୋଲି ପ୍ରମାଣିତ କରିବାକୁ କହିଲେ -''କୁମାର ! ଯଦି ମୋର ପରାମର୍ଶ ନୀତିଶାସ୍ତ୍ରର ବିରୋଧ କରୁଛି ବୋଲି ଆପଣ ଭାବୁଛନ୍ତି ତେବେ ମୁଁ ହସି ହସି ମୃତ୍ୟୁଦଣ୍ଡ ମଧ୍ୟ ବରଣ କରିନେବି । କିନ୍ତୁ ଯାହା ହେଉନା କାହିଁକି ରାଷ୍ଟ୍ର ଓ ରାଜା ଏ ଦୁଇଜଣଙ୍କର ରକ୍ଷା କରିବା ଆମର ଦାୟିତ୍ୱ । ସେଥିପାଇଁ ଯାହା କିଛି ସ୍ୱାର୍ଥତ୍ୟାଗ କରିବା କଥା ଓ ମୁଁ ତାହା ପାଳନ କରିବାକୁ ପ୍ରସ୍ତୁତ ମଧ୍ୟ ।''

ସେନାପତି ଇନ୍ଦ୍ରଦେବ ଅନେକବେଳୁ ଚୁପ୍‌ଚାପ ହୋଇ ସବୁକଥା ଶୁଣୁଥିଲେ । ତାଙ୍କର ହାତର ମୁଠି ଖଣ୍ଡାର ମୁଣ୍ଡକୁ ଦୃଢ଼ ଭାବରେ ମୁଠାଇ ଧରିଲେ, ମୁଖର ଭାବ କଠୋର ହୋଇଗଲା । ଆଖିରୁ କ୍ରୋଧାଗ୍ନି ଉପୁଚି ଉଠିଲା । ଦାନ୍ତ କଡ଼ମଡ଼ କରି କହି ଉଠିଲେ ସେ- ''ଥାଉ..ଥାଉ ! ଆଉ କିଛି କୁହ ନାହିଁ, ଅମାତ୍ୟ ! ଆଉ ସହିହେବ ନାହିଁ । ରାଜା କାପୁରୁଷ ହେଲେ ମଧ୍ୟ ତାଙ୍କର ପ୍ରାଣରକ୍ଷା କରିବା ଆମର ପ୍ରଧାନ କର୍ତ୍ତବ୍ୟ ! ନୀତିଶାସ୍ତ୍ରର ବ୍ୟାଖ୍ୟା କରୁଥିବା ଏଇ ଠକ ଅମାତ୍ୟ ଗୁପ୍ତ ସାମ୍ରାଜ୍ୟର ମର୍ଯ୍ୟାଦାକୁ ବିକ୍ରିକରି ମୃତ୍ୟୁଦଣ୍ଡ କଥା କହୁଛି । ଅପଗଣ୍ଡ କାପୁରୁଷଗଣ ଶୁଣ ! ମୁଁ ଏସବୁ କଦାପି କରାଇ ଦେବିନାହିଁ । ମୋର ପୂର୍ବପୁରୁଷ ଏହି ବଂଶର ତଥା ରାଜ୍ୟର ଅନ୍ନ ଖାଇଛନ୍ତି ଓ ମତେ ଖୁଆଇ ଏଭଳି ଯୋଗ୍ୟ କରିଛନ୍ତି । ଆମର ସମସ୍ତ ସୈନ୍ୟବାହିନୀ ସେହି ଅନ୍ନ ଓ ମାନର ମର୍ଯ୍ୟାଦା ରଖିବୁ । ଖୁବ୍ ଭଲଭାବରେ ଆକ୍ରମଣର ଉତ୍ତର ଆକ୍ରମଣରେ ହିଁ ଦିଆଯିବ । ଯୁଦ୍ଧରେ ପରାଜୟ କିମ୍ବା ପଳାୟନର ପ୍ରଶ୍ନ ହିଁ ଉଠୁନାହିଁ । ବିଜୟ ନହେଲେ କେବଳ ମୃତ୍ୟୁ । ମୃତ୍ୟୁରେ ବୀରଗତିକୁ ପ୍ରାପ୍ତ ହେବୁ । ବଞ୍ଚିଲେ, ବିଜୟ ହେଲେ ରାଷ୍ଟ୍ରର ସମ୍ମାନ

ରକ୍ଷା କରିବୁ । ଯଦି ସର୍ବନାଶ ଘଟିବାକୁ ଯାଉଛି ତେବେ ପଛଘୁଞ୍ଚା କାହିଁକି ? ବରଂ ଶତ୍ରୁକୁ ମଧ ଦୁଇହାତରେ ପାନେ ଚଖାଇ ପଛେ ଧ୍ୱଂସ ହୋଇଯିବୁ ସିନା ହଟିବୁ ନାହିଁ । କ'ଣ କୁମାର ମୁଁ ଠିକ୍ କହୁନି ?''

ଚନ୍ଦ୍ରଗୁପ୍ତ ହସିକରି କହିଲେ–''ତୁମ ସହିତ ମୁଁ ଏକମତ ସେନାପତି ।'' ଅନ୍ୟମାନେ ସମସ୍ତେ ସମର୍ଥନ କଲେ । କିନ୍ତୁ ରାମଗୁପ୍ତ ହାତ ମଳିମଳି ଏପଟ ସେପଟ ହୋଇ ବଡ଼ ଚିନ୍ତିତ ଭାବରେ କହିଲେ –'' ମୋ ବିରୁଦ୍ଧରେ କେମିତି ଛଳନା କରାଯାଉଛି ଦେଖିଲ ତ ମହାମାତ୍ୟ ! ମତେ ମାରିବାକୁ ଯେତେ ସବୁ ଷଡ଼ଯନ୍ତ୍ର କରାଯାଉଛି । କିନ୍ତୁ ଯାହାହେଲେ ମୁଁ ରାଜା । ମୋର ଆଦେଶ ହିଁ ପ୍ରତିପାଳିତ ହେବ । ଯୁଦ୍ଧ....ଯୁଦ୍ଧ କଦାପି ହେବାକୁ ମୁଁ ଦେବିନାହିଁ । ମହାଦେବୀଙ୍କୁ ଶକରାଜା ରୁଦ୍ରସିଂହଙ୍କ ନିକଟକୁ ନିଶ୍ଚୟ ପଠାଇବି ।''

ଚନ୍ଦ୍ରଗୁପ୍ତ ପ୍ରତିବାଦ ପୂର୍ବକ କହିଲେ– ''ଯୁଦ୍ଧ କରିବାକୁ ଯଦି ଏତେ ଡ଼ର ଲାଗୁଛି ତେବେ ଶାଢ଼ୀ ପିନ୍ଧି ଶିବିର ଭିତରେ ଲୁଚିକରି ବସୁନା ?''

ନିର୍ଲ୍ଲଜ ଭାବରେ ରାମଗୁପ୍ତ କହିଲେ–''ମହାଦେବୀ ଶକରାଜଙ୍କ ପାଖକୁ ଚାଲିଗଲେ ତୁମ ପ୍ରସ୍ତାବକୁ ମଧ ମୁଁ ସ୍ୱୀକାର କରିବି ।''

ଚନ୍ଦ୍ରଗୁପ୍ତଙ୍କର ଦୁଇବାହୁ ଅପମାନରେ ଫୁଲିଉଠିଲା । କହିଲେ– ''ଭଟ୍ଟାରକ ! ଏହା ହୋଇପାରିବ ନାହିଁ । କେବେ ନୁହେଁ । ମହାଦେବୀ ସେଠାକୁ ଯିବେନାହିଁ ।''

–''ତା'ହେଲେ କିଏ ଯିବ କୁମାର ?''

ଚନ୍ଦ୍ରଗୁପ୍ତ କହିଲେ–''ମୁଁ ଯିବି ।''

–''ତୁମେ ଯିବ ?'' ରାମଗୁପ୍ତଙ୍କର ନୟନ ବିସ୍ମୟରେ ବିସ୍ଫାରିତ ହୋଇଗଲା ।

–''ହଁ, ମୁଁ ! ଶକରାଜ ରୁଦ୍ର ସିଂହଙ୍କ ନିକଟକୁ ମତେ ପଠାଇବାପାଇଁ ବ୍ୟବସ୍ଥା କରନ୍ତୁ, ମହାରାଜ ।''

ରାମଗୁପ୍ତ ଉପହାସଭରା ସ୍ୱରରେ କହିଲେ–''କିନ୍ତୁ ତୁମଠାରେ ମହାଦେବୀଙ୍କ ଭଳି ସୌନ୍ଦର୍ଯ୍ୟ କାହିଁ, ଶୃଙ୍ଗାରରସର ମାଦକତା କାହିଁ ଯେ ? ଶକରାଜର ତୃଷା କ'ଣ ଏଥିରେ ମେଣ୍ଟିବ ?''

ଓଃ କି ବୀଭତ୍ସ ମାନସିକତାର ଅଧିକାରୀ ଏ ମଣିଷଟା ! ଏତେ ସବୁ ହେଲାଣି ହେଲେ ଟିକିଏ ହେଲେ ଫରକ ପଡୁନି ରାମଗୁପ୍ତଙ୍କୁ । ଭୀଷଣ ରାଗିଯାଇ ଚନ୍ଦ୍ରଗୁପ୍ତ କହିଲେ– ''ଭଟ୍ଟାରକ ! ଶକରାଜଙ୍କୁ ସ୍ନେହ ପ୍ରଦର୍ଶନ କରିବା ପାଇଁ କି ପ୍ରେମ କରିବା

ପାଇଁ ମୁଁ ଯାଉନାହିଁ । ତା'ର ଖଣ୍ଡାକୁ ଦ୍ୱିଖଣ୍ଡିତ କରି ତା'କୁ ପାନେ ଭଲକରି ମଜା ଚଖାଇବାକୁ ଯାଉଛି । ମହାଦେବୀଙ୍କ ପ୍ରତି ସେ ଯେଉଁ ଅସମ୍ମାନ ପ୍ରଦର୍ଶନ କରିଛି ଓ ଯେଉଁ କୁତ୍ସିତ ସନ୍ଧି ପ୍ରସ୍ତାବ ଦେଇଛି ତା'ର ଉପଯୁକ୍ତ ଉତ୍ତର ଦେବାକୁ ମୁଁ ଯାଉଛି । ସମସ୍ତେ ଏଠାରେ ରହିବେ । ମୋ ସାଙ୍ଗରେ କେହି ଯିବେନାହିଁ । ନିର୍ଣ୍ଣୟ ଶକରାଜ ଓ ମୋ ମଧ୍ୟରେ ହିଁ ହେବ । ସେଠାରେ କାହାରି ହସ୍ତକ୍ଷେପ ରହିବ ନାହିଁ ।''

ଧ୍ରୁବଦେବୀଙ୍କ ମନଟା କେମିତି ହୋଇଗଲା । କୁମାରଙ୍କୁ ଏଭଳି ଏକୁଟିଆ ଛାଡ଼ିବାକୁ ସେ ଆଦୌ ଚାହୁଁନଥିଲେ । ଅତ୍ୟନ୍ତ ସ୍ନେହାର୍ଦ୍ର କଣ୍ଠରେ କହିଲେ-''ନା' କୁମାର ! ନା ! ଏପରି ହୋଇପାରିବ ନାହିଁ । ସାମାନ୍ୟ ଗୋଟେ ତୁଚ୍ଛ ନାରୀକୁ ରକ୍ଷା କରିବାକୁ ଯାଇ ତୁମେ ଏତେ ବଡ଼ ଆତ୍ମ ବଳିଦାନ ଦେବା ଆବଶ୍ୟକ ନାହିଁ । ତୁମର ଜୀବନ ମୋର ପାଇଁ ଅମୂଲ୍ୟନିଧି । ତୁମକୁ ମୁଁ କଦାପି ଏ ବିପର୍ଯ୍ୟୟକୁ ଜାଣିଶୁଣି ଠେଲି ଦେଇପାରିବି ନାହିଁ । ବରଂ ମୁଁ ଶକରାଜ ରୁଦ୍ରସିଂହଙ୍କ ପ୍ରାସାଦକୁ ଚାଲିଯାଉଛି, କୁମାର ! ତୁମର ଟିକିଏ ବି ଅନିଷ୍ଟ ହେବାକୁ ଦେବି ନାହିଁ ।'' କଇଁ କଇଁ ହୋଇ କାନ୍ଦିଉଠିଲେ ମହାଦେବୀ । ଉପସ୍ଥିତ ସମସ୍ତଙ୍କ ଆଖିରେ ଅଶ୍ରୁ ଜକେଇ ଆସିଲା ।

ଚନ୍ଦ୍ରଗୁପ୍ତ ସାନ୍ତ୍ୱନା ଦେଇ କହିଲେ-''ନା, ମହାଦେବୀ ! ମୋର ପ୍ରାଣରକ୍ଷା, ମୋ ପ୍ରତି ମୋହ ପାଇଁ ତୁମେ ନିଜର ନାରୀତ୍ୱକୁ ବଳିଦେଇପାରିବ ନାହିଁ । ଯଦି ଏଭଳି ହୁଏ, ତେବେ ମହାନ୍ ସମ୍ରାଟ ସମୁଦ୍ରଗୁପ୍ତଙ୍କର ଆତ୍ମା କେବେହେଲେ ଶାନ୍ତି ପାଇପାରିବ ନାହିଁ । ମୁଁ ନିଜକୁ କେବେ କ୍ଷମା କରିପାରିବି ନାହିଁ । ତୁମେ ଏପରି ନିଷ୍ପତ୍ତି ନିଅ ନାହିଁ । ମୋ କଥା ମାନ ।''

ଧ୍ରୁବଦେବୀ ଆଉ ସହିପାରିଲେ ନାହିଁ । କୁମାରଙ୍କୁ ଯାଇ କୁଣ୍ଢାଇ ପକାଇଲେ ଓ କାନ୍ଦି କାନ୍ଦି କହିଲେ, ''ନା... କୁମାର ନା । ମୁଁ ତୁମକୁ ଏଭଳି ଭାବରେ ଛାଡ଼ିପାରିବି ନାହିଁ ।''

ଧ୍ରୁବଦେବୀ ଓ ଚନ୍ଦ୍ରଗୁପ୍ତ ପରସ୍ପରକୁ କୋଳାକୋଳି କରୁଥିବା ଦେଖି ରାମଗୁପ୍ତ ଅବାକ୍ ହୋଇପଡ଼ିଲେ ଏବଂ କ୍ରୋଧାନ୍ୱିତ ହୋଇ କହିଲେ-''ଛିଃ..ଛିଃ.. ଏହା କି ପ୍ରକାର ନିର୍ଲ୍ଲଜତା । ଅମାତ୍ୟ ଦେଖିପାରୁଛନା ନାହିଁ ? ସମସ୍ତଙ୍କ ସମ୍ମୁଖରେ ମଗଧ ସାମ୍ରାଜ୍ୟର ମହାରାଣୀ ମହାଦେବୀ କିପରି ପରପୁରୁଷକୁ ଆଲିଙ୍ଗନ କରୁଛନ୍ତି । ଓଃ ! କି ଭୟଙ୍କର ସର୍ବନାଶ ହେବାକୁ ଯାଉଛି ।''

ଧ୍ରୁବଦେବୀ ରାମଗୁପ୍ତଙ୍କର ତାଚ୍ଛଲ୍ୟରେ ଟିକିଏ ହେଲେ ବିଚଳିତ ନହୋଇ ନାଗୁଣୀ

ପରି ଚିତ୍କାର କରି ଉଠିଲେ- "ବାଃ ବାଃରେ ମୋର ଲଜ୍ଜାବନ୍ତ ପୁରୁଷ ଶ୍ରେଷ୍ଠ ! ମୁଁ ମୋର ଦିଅରଙ୍କୁ ଆଲିଙ୍ଗନ କରିଛି ବୋଲି ମତେ ଲାଜ ଲାଗିବା କଥା । କି ଆଶ୍ଚର୍ଯ୍ୟ । ଅଥଚ ଶକରାଜ ରୁଦ୍ରସିଂହଙ୍କର କାମନାର ଅଗ୍ନିରେ ଜଳିହେବା ପାଇଁ ମତେ କେମିତି ପଠାଉଛ, ସେଥିରେ ଲାଜଲାଗୁନି । ଛି...ଛି.. ଆହୁରି ମତେ ମାନ ସମ୍ମାନ ଶିଖାଉଛ ?"

ରାମଗୁପ୍ତ ଧ୍ରୁବଦେବୀଙ୍କର କଠୋର ବିଦ୍ରୂପରେ ସହମିଗଲେ ।

ଚନ୍ଦ୍ରଗୁପ୍ତ ପୁଣିଥରେ ରାମଗୁପ୍ତଙ୍କୁ ଜଣାଇଦେଲେ- "ଭଟ୍ଟାରକ ! ମହାଦେବୀ କୁଆଡ଼େ ଯିବେ ନାହିଁ । ମୁଁ ଏକାକୀ ଶକରାଜ ନିକଟକୁ ଯିବି ।"

ଧ୍ରୁବଦେବୀ ଆଖିର ଲୁହ ପୋଛି କହିଲେ- "କୁମାର ! ତୁମେ ଯାଅନାହିଁ । ଯଦି ଯିବ, ମୁଁ ମଧ ତୁମ ସାଙ୍ଗରେ ଯିବି । ତୁମ ସାଙ୍ଗରେ ମରିବି, ତୁମ ସାଙ୍ଗରେ ବଞ୍ଚିବି । ମତେ ତୁମେ ସାଙ୍ଗରେ ନେଇଚାଲ ।"

ରାମଗୁପ୍ତ କ'ଣ ଉତ୍ତର ଦେବାକୁ ପ୍ରୟାସ କଲାବେଳେ ଅମାତ୍ୟ ତାଙ୍କ ହାତଧରି ଅନ୍ୟପଟକୁ ଟାଣି ନେଇଗଲେ । ଏକାନ୍ତରେ ବସି ଧୀର ସ୍ୱରରେ କହିଲେ-" ଭଟ୍ଟାରକ ! କୁମାର ଯାହା କରିବାକୁ ଚାହୁଁଛନ୍ତି ତାଙ୍କୁ ତାହା କରିବାକୁ ଦିଅନ୍ତୁ । ଶକରାଜ ନିକଟକୁ ଯାଇ ସେ ପ୍ରାଣ ନେଇ ପୁଣି ଫେରିବେ ନାହିଁ । ଅପାଣଙ୍କ ମାର୍ଗର କଣ୍ଟା ଏମିତିରେ ସବୁଦିନ ପାଇଁ ସଫା ହୋଇଯିବ । ତେଣୁ ନୀରବତା ରକ୍ଷା କରନ୍ତୁ । କୁମାର ଯାହା କହୁଛନ୍ତି ସେଥିରେ ରାଜିହୁଅନ୍ତୁ ।"

ରାମଗୁପ୍ତ ଅମାତ୍ୟଙ୍କ କଥାରେ ଖୁସିହୋଇ କହିଲେ-"ତୁମକଥା ତ ଏକଦମ୍ ଠିକ୍ ଅମାତ୍ୟ ! କିନ୍ତୁ ମହାଦେବୀଙ୍କୁ ଶକରାଜ ନିକଟକୁ ନ ପଠାଇଲେ ସେ ଆମ ଉପରେ ରାଗିଯାଇ ଆକ୍ରମଣ ନିଶ୍ଚୟ କରିଦେବ । ସେଥିପାଇଁ ଏହି ଦୃଷ୍ଟିରୁ ଆମର ସ୍ଥିତି ଆହୁରି ଦୟନୀୟ ହୋଇପଡ଼ିବ ।"

ଅମାତ୍ୟ କହିଲେ- "କିନ୍ତୁ ମହାରାଜ୍ ! ତାଙ୍କୁ ଯଦି ଯିବାକୁ ଦେବେନାହିଁ, ତାହାହେଲେ ଏହି କ୍ଷେତ୍ରରେ ମୁଁ ଆପଣଙ୍କର କିଛି ହେଲେ ସହାୟତା କରିପାରିବିନାହଁ । ଯଦି କିଛି କରିବା କଥା ତା'ହେଲେ ଆପଣ ହିଁ କରନ୍ତୁ ।"

ରାମଗୁପ୍ତ ସେଠାରୁ ସିଧା ଆସି ମହାଦେବୀଙ୍କ ନିକଟରେ ପହଞ୍ଚି ଆରମ୍ଭ କଲେ- "ମହାଦେବୀ ! ଶୀଘ୍ର ପ୍ରସ୍ତୁତ ହୁଅ । କାଲିରାତି ସୁଦ୍ଧା ତମକୁ ଶକରାଜ ନିକଟକୁ ପଠାଇଦେବି ।"

ଚନ୍ଦ୍ରଗୁପ୍ତ ରାମଗୁପ୍ତଙ୍କ ସମ୍ମୁଖକୁ ଆସି କହିଲେ- ''ଭଟ୍ଟାରକ ! ମୁଁ ବାରମ୍ବାର କହୁଛି ଯେ, ମହାଦେବୀ ଯିବେ ନାହିଁ । କିନ୍ତୁ ତୁମେ କାହିଁକି ସେ କଥା ବାରମ୍ବାର ଦୋହରାଉଛ !''

କ୍ରୋଧଭରା ସ୍ୱରରେ ରାମଗୁପ୍ତ କହିଲେ- ''କୁମାର ! ମୁଁ ରାଜା ! ଏହା ମୋର ଆଦେଶ । ରାଜାଜ୍ଞାକୁ ଯିଏ ବିରୋଧ କରେ ସେ ଯେତେ ନିଜର କି ଅନ୍ତର ହେଉନା କାହିଁକି, ତା'କୁ ଦଣ୍ଡ ଭୋଗିବାକୁ ପଡ଼ିବ ।''

କୁମାରଙ୍କ ଆଖିରୁ ତ ଯେମିତି ଅଗ୍ନିପିଣ୍ଡୁଳା ଖସିଆସିଲା, ସେ ଦାନ୍ତ କଡ଼ମଡ଼ କରି କହିଲେ- ''ଇନ୍ଦ୍ରଦେବ ! ବୀର ସେନ !'' ଦୁହେଁ ଦୌଡ଼ି ଆସିଲେ ।

''ଆଜ୍ଞା ! କୁମାର !''

ଚନ୍ଦ୍ରଗୁପ୍ତ ଆଦେଶ ଦେଲେ- ''ଅମାତ୍ୟ ଓ ଭଟ୍ଟାରକଙ୍କୁ ତୁରନ୍ତ ବନ୍ଦୀ କରାଯାଉ । ତତ୍‌କ୍ଷଣାତ୍ ଆଦେଶ ପାଳନ କରାଯାଉ ।''

ରାମଗୁପ୍ତ ହତବାକ୍ ହୋଇ କୁମାରଙ୍କୁ ଦେଖୁଥା'ନ୍ତି । ସେ କିଛି କହିବା ପୂର୍ବରୁ ଇନ୍ଦ୍ରଦେବ ଓ ବୀରସେନ ଅମାତ୍ୟ ଓ ରାମଗୁପ୍ତଙ୍କୁ ଘେରିଯାଇ ବନ୍ଦୀ କରିନେଲେ ।

ଏହାପରେ ଚନ୍ଦ୍ରଗୁପ୍ତ କହିଲେ- ''ବୀରସେନ !''

-''ଆଜ୍ଞା କୁମାର !''

ଶକରାଜଙ୍କ ପ୍ରାସାଦକୁ ଯିବା ପାଇଁ ଗୋଟିଏ ପାଲିଙ୍କି ମହାଦେବୀଙ୍କ ପାଇଁ ଓ ଏକହଜାର ସାମନ୍ତ ପତ୍ନୀମାନଙ୍କ ପାଇଁ ପାଲିଙ୍କି ବ୍ୟବସ୍ଥା ତୁରନ୍ତ କରାଯାଉ । ପ୍ରତ୍ୟେକ ପାଲିଙ୍କିରେ ଜଣେ ଲେଖାଏଁ ସୈନ୍ୟ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ବସି ରହିବେ । ପାଲିଙ୍କିର ବୁହାଳି ମଧ୍ୟ ଆମର ସୈନ୍ୟମାନେ ହିଁ ରହିବେ । ସେମାନଙ୍କର ଅସ୍ତ୍ରଶସ୍ତ୍ର ପାଲିଙ୍କିରେ ରହିବ । ମହାଦେବୀଙ୍କ ପାଲିଙ୍କିର ଅଗ୍ରଭାଗରେ ମୁଁ ବସିବି । ତେଣୁ ଏହି କାର୍ଯ୍ୟ ଯଥାଶୀଘ୍ର ସମ୍ପନ୍ନ କର ।''

ଇନ୍ଦ୍ରଦେବ ପଚାରିଲେ -''ମତେ କ'ଣ ଆଦେଶ ଅଛି କୁମାର !''

-''ହଁ ! କାଲି ସକାଳେ ଭଟ୍ଟାରକଙ୍କୁ ସ୍ୱତନ୍ତ୍ର କରିଦେବେ । ତାଙ୍କୁ ବୁଝାଇଦେବେ ଯେ ମୋର କୌଣସି ରାଜ୍ୟ ଓ ରାଜସିଂହାସନ କାମନା ନାହିଁ । ଗୁପ୍ତ ବଂଶର ମର୍ଯ୍ୟାଦା, ମଗଧ ସାମ୍ରାଜ୍ୟର ସମ୍ମାନ ରକ୍ଷା ହିଁ ମୋର ଏକମାତ୍ର ଲକ୍ଷ୍ୟ । ସେଥିପାଇଁ ମତେ ଏହି ନିଷ୍ପତ୍ତି ନେବାକୁ ପଡୁଛି । ରାଜସିଂହାସନ ତାଙ୍କର ହିଁ ହେବ ।''

-''ଯାହା ଆଜ୍ଞା !'' କହି ବୀରସେନ ଓ ଇନ୍ଦ୍ରଦେବ ଚାଲିଗଲେ । ରାମଗୁପ୍ତ ଓ ଅମାତ୍ୟଙ୍କୁ ବନ୍ଦୀ କରାଯାଇ ସେନାଛାଉଣୀ କାରାଗାରରେ ରଖିଦିଆଗଲା ।

ପଶ୍ଚିମ ଆକାଶର ଦୂର ଦିଗ୍‌ବଳୟରେ ସୂର୍ଯ୍ୟ କେତେବେଳୁ ବୁଡ଼ିସାରିଲେଣି । କୋମଳ ସନ୍ଧ୍ୟାର ପତଳା ଅନ୍ଧକାର ଧୀରେଧୀରେ ଗଭୀର ହେବାପାଇଁ ତା'ର ଗାଢ଼ କଳା ପଣତକୁ ପୃଥିବୀ ଉପରେ ଘୋଡ଼ାଇ ଆଣିଲାଣି । ଆକାଶରେ ତାରାମାନେ ଦିକ୍ ଦିକ୍ ହୋଇ କେତେବେଳୁ ଜଳିଲେଣି । ଚନ୍ଦ୍ର ମୁରୁକି ହସ ହସି ଆକାଶରେ ତାରା ନକ୍ଷତ୍ରମାନଙ୍କ ସହିତ ମେଘଖଣ୍ଡ ଭିତର ଦେଇ ଲୁଚକାଳି ଖେଳ ଖେଳୁଛି । ତଳେ ଧରଣୀ ଉପରକୁ ଚାହିଁ ପ୍ରକୃତିର ଏ ଅପୂର୍ବ ଚମକରେ ଚମକିତ ହେଉଛି । ଅଥଚ ଶିବିର ମଧ୍ୟରେ ବସି ଶକରାଜ ବଡ଼ ଚିନ୍ତିତ ହୋଇପଡ଼ିଥା'ନ୍ତି ।...''ଏ ପର୍ଯ୍ୟନ୍ତ ଦୂତ ଫେରି ଆସିଲା ନାହିଁ । ତା'ହେଲେ କ'ଣ ତା'କୁ ସେମାନେ ବନ୍ଦୀ କରିଦେଲେ କି ? ସତରେ କ'ଣ ରାମଗୁପ୍ତ ମୋର ଦୂତକୁ ବନ୍ଦୀ କରିପାରିବ ? ବର୍ତ୍ତମାନ ଯେଉଁ ପରିସ୍ଥିତିରେ ସେମାନେ ଅଛନ୍ତି ଏଭଳି ସାହାସ ତ କରିବା କଥାନୁହେଁ, ଯାହାହେଲେ ବି ମୋର ପ୍ରସ୍ତାବକୁ ସ୍ୱୀକାର କରିବା ଛଡ଼ା ସେମାନଙ୍କ ନିକଟରେ ବିକଳ୍ପ ବୋଲି କିଛି ନାହିଁ । ଏହା ବ୍ୟତୀତ ପ୍ରାଣରକ୍ଷା ପାଇଁ ଅନ୍ୟ କିଛି ସାଧନ ତ ସେମାନଙ୍କ ନିକଟରେ ନାହିଁ ।''

ଏହି ସମୟରେ ଦ୍ୱାର ନିକଟରେ କିଛି ଶବ୍ଦ ହେଲା ଭଳି ଶୁଭିଲା । ଶକରାଜ ଆଖି ଉଠାଇ ଆଗକୁ ଚାହିଁଲେ, ଦୂତକୁ ଆସୁଥିବାର ଦେଖିଲେ । ଆରେ ଏ କ'ଣ ? ଦୂତ ଆଖିରେ ପରମ ଉଲ୍ଲାସର ଭାବ ଖେଳିଯାଉଛି । ତଥାପି ରୁଦ୍ରସିଂହ ଗମ୍ଭୀର ଭାବରେ ପଚାରିଲେ-''କ'ଣ ହେଲା ? କି ସମାଚାର ନେଇ ଆସିଛ ?''

ଦୂତ ହସି ହସି କହିଲା,-''ମହାରାଜାଙ୍କ ଜୟ ହେଉ ! ପ୍ରଣାମ ମଣିମା ! ମୁଁ ସେମାନଙ୍କୁ ଭଲଭାବରେ ବୁଝାଇ ଦେଇଛି ଯେ ଆମେ ଯେଉଁ ପ୍ରସ୍ତାବ ଦେଇଛୁ ତା'ଉପରେ ଦୃଢ଼ ହୋଇ ରହିବୁ, ରହିବୁ । ଯଦି ଆମ ପ୍ରସ୍ତାବରେ ସମ୍ମତ ତେବେ ତାହା ଅବିଳମ୍ବେ ପାଳନ କରନ୍ତୁ । ଆମର ସନ୍ଧିପ୍ରସ୍ତାବରେ ରାଜିହୁଅନ୍ତୁ ନତୁବା ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତୁ ।''

ଶକରାଜ ଦୂତମୁହଁରୁ ଏତେ ସବୁ ସୁସମ୍ବାଦ ଶୁଣି ଉତ୍ସୁକ ହୋଇଉଠିଲେ - ''ତା'ହେଲେ ରାମଗୁପ୍ତ, ଚନ୍ଦ୍ରଗୁପ୍ତ ଏସବୁ ସର୍ତ୍ତ ମାନିଗଲେ ?''

–"ସେମାନଙ୍କ ସମ୍ମୁଖରେ ଅନ୍ୟ କୌଣସି ମାର୍ଗ ଯେ ବଞ୍ଚିନାହିଁ ମହାରାଜ ! ପରିସ୍ଥିତିର ଭୟାଭହତା ସମ୍ପର୍କରେ ଭଲଭାବରେ ସେମାନେ ଅବହିତ ଅଛନ୍ତି । ତେଣୁ ଆମର ପ୍ରସ୍ତାବକୁ ଆନନ୍ଦର ସହିତ ଗ୍ରହଣ କରିନେଲେ ।"

ଶକରାଜ ଦୂତ ମୁହଁରୁ ସବିଶେଷ ବୃତ୍ତାନ୍ତ ଶୁଣିବାପରେ ଖୁସିହୋଇ ଛିଡ଼ା ହୋଇଗଲେ । ଦୂତର ଏକଦମ୍ ନିକଟବର୍ତ୍ତୀ ହୋଇକହିଲେ, –'କ'ଣ ତୁମେ ସତ୍ୟ କହୁଛ ? ସତରେ ସେମାନେ ଆମର ସର୍ତ୍ତ ମାନିନେଲେ ?"

ଦୂତ ମୁଣ୍ଡହଲାଇ ହଁ କଲା ।

–"ମୋର ଦ୍ୱିତୀୟ ପ୍ରସ୍ତାବ ମଧ୍ୟ ସ୍ୱୀକାର କଲେ ?"

–"ହଁ, ମହାରାଜ !"

–"ଆଉ, ମୁଁ ମୋର ସାମନ୍ତମାନଙ୍କ ପାଇଁ ମଧ କିଛି ମାଗିଥିଲି ସେଇଟା ମଧ ସ୍ୱୀକାର କଲେ ?"

–"ହଁ, ଆଜ୍ଞା ମହାରାଜ ! ସେକଥା ମଧ ସ୍ୱୀକାର କରିଛନ୍ତି । ସମସ୍ତ ପାଲିଙ୍କି ମହାଦେବୀଙ୍କ ପାଲିଙ୍କି ସହିତ ଆସିବ ।"

ଶକରାଜ ଆନନ୍ଦରେ ଗଦ୍‌ଗଦ୍ ହୋଇଉଠିଲେ । –"ଅହୋ ! ଏବେ ପାଇବେ ସେମାନେ ମଜା, ସମ୍ରାଟ ସମୁଦ୍ରଗୁପ୍ତ ଆମର ପୂର୍ବପୁରୁଷଙ୍କ ଉପରେ ଯେଉଁ ଜଘନ୍ୟ ଅତ୍ୟାଚାର ଚଳାଇଥିଲେ ଆଜି ସେହି ଅତ୍ୟାଚାରର ପ୍ରତିଶୋଧ ପୂରଣ ହେବ । ଗୁପ୍ତକୁଳର କୁଳବଧୂ ମହାରାଣୀ ଧ୍ରୁବଦେବୀ ମୋର ଅଙ୍କଶାୟିନୀ ହେବେ । ହାଃ..ହାଃ..ହାଃ..ହାଃ । ସମ୍ରାଟ ସମୁଦ୍ରଗୁପ୍ତଙ୍କର ଆତ୍ମା ସ୍ୱର୍ଗରୁ ଏହି ଦୃଶ୍ୟ ଦେଖିବ । ହାଃ..ହାଃ.. ।" ଏଭଳି ଉନ୍ମତ୍ତ ଭାବରେ ହସି ଚାଲିଥା'ନ୍ତି ରୁଦ୍ରସିଂହ । ସେହି ସ୍ଥାନକୁ ହଠାତ୍ ଆସି ପହଞ୍ଚିଗଲା କ୍ଷୀପ୍ରା । ରୁଦ୍ରସିଂହ ହସ ବନ୍ଦ କରି ପଚାରିଲେ,–'କ୍ଷୀପ୍ରା ! ତୁମେ ଏ ଅସମୟରେ ?" କିନ୍ତୁ କ୍ଷୀପ୍ରା ପ୍ରସନ୍ନ ଦେଖାଯାଉ ନଥିଲା । ଗମ୍ଭୀର ଭାବରେ କହିଲା–"ହଁ ମହାରାଜ ! ମୋର ଏଠାକୁ ଆସିବାଟା ହୁଏତ ଆପଣ ଚାହୁଁନଥିଲେ ? ତା'ହେଲେ ଯାଉଛି ।"

ରୁଦ୍ରସିଂହ କହିଲେ–"ନା..ନା କ୍ଷୀପ୍ରା ! ତୁମେ ଯାଅ ନାହିଁ । ମୋର ମନ ଅତ୍ୟନ୍ତ ଉଦ୍‌ବେଳିତ ହେଉଛି । ଚଞ୍ଚଳ ହେଉଛି । ମୋ ପାଖକୁ ଆସ ।"

କିନ୍ତୁ କ୍ଷୀପ୍ରା ରୁଦ୍ରସିଂହଙ୍କ କଥା ନଶୁଣିଲା ଭଳି ରହିଲା, ପାଖକୁ ଗଲାନାହିଁ । ସେମିତି ଛିଡ଼ା ହୋଇ ରହିଲା । କ୍ଷୀପାର ମୁହଁରେ ଏକ ବ୍ୟଙ୍ଗଭରା ହସ ଫୁଟିଉଠିଲା–

''ମହାରାଜଙ୍କର ନୂତନ ରାଣୀଙ୍କର ଆଗମନ ଜନିତ ଉଲ୍ଲାସ ଆପଣଙ୍କୁ ଏଭଳି ଅସ୍ଥିର କରିଦେଉଛି ନା । ଟିକେ ଧୈର୍ଯ୍ୟ ଧରନ୍ତୁ ।''

-''କ୍ଷୀପ୍ରା ! ନୂତନରାଣୀଙ୍କ ଆଗମନ ଶୁଣିବା ଦିନରୁ ତୁମେ ବହୁତ ଦୁଃଖୀ ଜଣାପଡୁଛ ?''

କ୍ଷୀପ୍ରା ଏକ ଫିକା ହସ ହସିଲା-''ମୋର ଖୁସି ଅଖୁସିର କ'ଣ ବା ମୂଲ୍ୟ ଅଛି ଯେ ? ଅନେକ ଗୁଡ଼ାଏ କଥା ଅନେକ ସମୟରେ ଭଲ ଲାଗେ ନାହିଁ, ତଥାପି ମଣିଷକୁ ବାସ୍ତବତା ପ୍ରତି ଦୃଷ୍ଟି ଦେଇ ସେସବୁ ଘଟଣା ଉପରେ ନିଜର ପ୍ରସନ୍ନତା ଦେଖାଇବାକୁ ବାଧ ହୁଏ । ମୁଁ ମଧ ବଡ଼ ଆନନ୍ଦ ଅନୁଭବ କରୁଛି ମହରାଜ ! ନୂତନ ମହାରାଣୀଙ୍କ ଆଗମନ ସୁଖମୟ ହେଉ । ଆପଣଙ୍କ ଜୀବନର ଏକ ନୂତନ ସମ୍ଭାବନାର ଅଧ୍ୟାୟ ଆରମ୍ଭ ହେଉ ।''

କ୍ଷୀପ୍ରା ମୁହଁ ଶୁଖାଇ ଛିଡ଼ାହେଲା ।

ଶକରାଜ କ୍ଷୀପ୍ରାର ଦୃଷ୍ଟିକୁ ସାମ୍ନା କରିବାକୁ ମଧ ଅସମର୍ଥ ମନେ କରୁଥିଲେ । ତା'ପରେ ପରିସ୍ଥିତିକୁ ଟିକିଏ ସହଜ କରିବା ପାଇଁ କହିଲେ- ''କ୍ଷୀପ୍ରା ! ତୁମେ ଜାଣିନ, ମୁଁ ତୁମକୁ ପ୍ରାଣଦେଇ କେତେ ଭଲପାଏ ।''

-''ମତେ ଆଉ ସେ ଭ୍ରମରେ ରଖନ୍ତୁ ନାହିଁ ମୋର ରାଜା ! ମୁଁ ଯେମିତି ବଞ୍ଚିଛି ସେମିତି ବଞ୍ଚିବାକୁ ମତେ ଦିଅନ୍ତୁ । ଆପଣଙ୍କ ଅଗାଧ ପ୍ରେମର ସାଗରରେ ମତେ ବୁଡ଼ିଯିବା ପାଇଁ ବାଧ କରନ୍ତୁ ନାହିଁ ।''

-''ନା, କ୍ଷୀପ୍ରା ! ନା । ମୁଁ ତୁମକୁ କୌଣସି ମିଥ୍ୟା ସ୍ୱପ୍ନ ଦେଖାଉନାହିଁ । ମୁଁ ପ୍ରକୃତରେ ତୁମକୁ ଅସୀମ ପ୍ରେମ କରୁଛି । ତୁମ ବିନା ମୋର ଅସ୍ତିତ୍ୱ ଯେ ନାହିଁ ।''

-''ପୁଣି ସେଇକଥା ଆଜି କହୁଛନ୍ତି ?'' କ୍ଷୀପ୍ରାର ସ୍ୱରରେ ରାଗମିଶା ଶୁଭୁଥିଲା- ''ମହାରାଜ ! ଗୋଟେ ନିରୀହ ନାରୀର ନାରୀତ୍ୱକୁ ପ୍ରେମ ନାମରେ ଛିନ୍ନଭିନ୍ନ କରି ଆପଣଙ୍କର ପ୍ରତିଶୋଧ କ'ଣ ପୂରଣ ହୋଇନି ଯେ ପୁଣି ସେଇ ଜ୍ୱାଳାରୁ ଶାନ୍ତି ପାଇବା ପାଇଁ ଏକ ନାରୀର ସତୀତ୍ୱକୁ ଆହୁତି ଦେବାକୁ ବସିଛନ୍ତି ?''

କ୍ଷୀପ୍ରାର ଏପ୍ରକାର ପ୍ରଚଣ୍ଡ ଅସନ୍ତୋଷକୁ ହସି ହସି ଉଡ଼ାଇବାକୁ ଚେଷ୍ଟାକଲେ ରୁଦ୍ରସିଂହ-'' ଏଇଟା ମୋର କୂଟନୀତି ଓ ରାଜନୀତିର କୌଶଳ ମାତ୍ର । ଯଦି ମୁଁ ଏହି କୂଟନୀତି ପ୍ରୟୋଗ କରିବି ନାହିଁ ତେବେ ଦୀର୍ଘଦିନରୁ ଜଳୁଥିବା ପ୍ରତିଶୋଧ ପୂରଣ ହୋଇପାରିବ ନାହିଁ କ୍ଷୀପ୍ରା !''

–''ଅହୋ !'' କ୍ଷୀପ୍ରାର ଆଖିରୁ ଧାର ଧାର ଲୁହ ବୋହିଗଲା, ବଡ଼ କୋହଭରା କଣ୍ଠରେ ସେ କହିଲା–''ମୁଁ ଆଜି ଏତେଦିନ ପରେ ଜାଣିବାକୁ ପାଇଲି ଯେ ନାରୀମାନଙ୍କର ସତୀତ୍ୱକୁ ଧର୍ଷଣ ନକଲେ ରାଜନୈତିକ ପ୍ରତିଶୋଧ ପୂର୍ଣ୍ଣ ହୁଏନାହିଁ । ତେଣୁ ମହାରାଜ୍ ! ଆପଣ ପ୍ରତିଶୋଧ ନିଅନ୍ତୁ, ମୁଁ ବିଦାୟ ନେଉଛି ।''

–''କୁଆଡ଼େ ଯିବ'' ?

–''ଯୁଆଡ଼େ ଇଚ୍ଛା ହେବ, ସେଆଡ଼େ ଯିବି, ସେଥିରେ ଆପଣଙ୍କର ଯାଏ ଆସେ କେତେ ?''

ଶକରାଜ କ୍ଷୀପ୍ରାର ଏଭଳି ଉଦାସ ଉତ୍ତର ଶୁଣି ଚୁପ୍ ହୋଇଗଲେ । ଏହି ସମୟରେ ପ୍ରତିହାରୀ ଆଚାର୍ଯ୍ୟ ବିଷ୍ଣୁଦତ୍ତଙ୍କର ଆଗମନର ସୂଚନା ଦେଲା । ଆଚାର୍ଯ୍ୟ ବିଷ୍ଣୁଦତ୍ତଙ୍କୁ ଦେଖି ଶକରାଜ ଯୋଡ଼ ହସ୍ତରେ ଅଭିବାଦନ ଜଣାଇଲେ । ଆଚାର୍ଯ୍ୟ ପ୍ରତି ନମସ୍କାର ଜଣାଇ ଶାନ୍ତ ଭାବରେ କ୍ଷୀପ୍ରା ଆଡ଼କୁ ଚାହିଁଲେ ଓ ଶକରାଜଙ୍କୁ ପଚାରିଲେ–'' ରୁଦ୍ରସିଂହ ଏହି କନ୍ୟା ଏଭଳି ଦୁଃଖି ଦେଖାଯାଉଛି କାହିଁକି ?''

ଶକରାଜ କହିଲେ–''ଆଚାର୍ଯ୍ୟ, ମୋର ପୂର୍ବଜଙ୍କ ପ୍ରତି ହୋଇଥିବା ଅପମାନର ପ୍ରତିଶୋଧ ନେବାପାଇଁ ମୁଁ ରାମଗୁପ୍ତକୁ ତା'ର ପତ୍ନୀ ମହାଦେବୀଙ୍କୁ ଭେଟି ଭାବରେ ଦିଅ ବୋଲି କହିଛି । ରାମଗୁପ୍ତ ମଧ ଆମର ଦାବୀକୁ ସ୍ୱୀକାର କରି । ବାସ୍ ! ସେତିକି ମାତ୍ର କଥାରେ କ୍ଷୀପ୍ରା ଉତ୍‌କ୍ଷିପ୍ତ ହୋଇଯାଇଛି ।''

ଶକରାଜଙ୍କର କଥା ଶୁଣି ଆଚାର୍ଯ୍ୟ ବିଷ୍ଣୁଗୁପ୍ତ ଚମକି ପଡ଼ିଲେ–''କ'ଣ କହିଲେ ମହାରାଜ ! ଶେଷରେ ଆପଣଙ୍କର କୁଦୃଷ୍ଟି ନାରୀମାନଙ୍କ ପ୍ରତି ପଡ଼ିଗଲା ? ମନେ ଅଛି ନା ସେଦିନ ମୁଁ ତୁମକୁ କ'ଣ କହିଥିଲି ? ପରନାରୀ ଓ ପରନାରୀ ମାନଙ୍କର କାମନାରୁ ବର୍ଷସାରା ଦୂରରେ ରହିବେ । ନହେଲେ ସମ୍ଭବତଃ ଏହି ସୌଭାଗ୍ୟ ଦୁର୍ଭାଗ୍ୟର ପ୍ରତୀକରେ ପରିଣତ ହୋଇଯିବ ।''

–''ମନେଅଛି ଆଚାର୍ଯ୍ୟ !'' ଶକରାଜ ଅନ୍ୟମନସ୍କ ହୋଇ କହିଲେ ।

ଆଚାର୍ଯ୍ୟ ବିଷ୍ଣୁଗୁପ୍ତ ବିରକ୍ତ ହୋଇ କହିଲେ– ''କିନ୍ତୁ କ'ଣ ହେବ ? ଆପଣ ପୁନର୍ବାର ସେହି ଓଲଟା କାମଗୁଡ଼ିକ କରୁଛନ୍ତି ।''

ଶକରାଜ ଆଚାର୍ଯ୍ୟଙ୍କ କଥାରେ ରାଗିଯାଇ କହିଲେ–'' ଏଇଟା ମୋର ରାଜନୀତି, ଆଚାର୍ଯ୍ୟ ! ଭଲହେବ, ଆପଣ ସେଥିରେ କୌଣସି ବିଘ୍ନ ସୃଷ୍ଟି କରନ୍ତୁ ନାହିଁ । ମୋ କାମ ମତେ କରିବାକୁ ଦିଅନ୍ତୁ ।''

ଆଚାର୍ଯ୍ୟ ବିଷ୍ଣୁଗୁପ୍ତ ହସଦେଲେ–"ଠିକ୍ ଅଛି ଶକରାଜ ! ମୁଁ ତୁମ କାର୍ଯ୍ୟରେ କଦାପି ପ୍ରତିବନ୍ଧକ ହେବିନାହିଁ ।" କ୍ଷୀପ୍ରାକୁ କହିଲେ– "ଚାଲ ଝିଅ ! ଆମେ ଏଠି ଏକକ୍ଷଣ ମଧ ରହିବା ଉଚିତ ନୁହେଁ । କାଳି ବିଲେଇକୁ ଦେଖୁଛୁ ତ । ସେ କେମିତି ବାଟରେ ଛକି ବସିଛି ।"

କ୍ଷୀପ୍ରା ସହିତ ଶକରାଜ ରୁଦ୍ରସିଂହ ମଧ ଦ୍ୱାର ଆଡ଼କୁ ଚାହିଁଲେ । ଗୋଟେ ମୋଟି କାଳି ବିଲେଇଟା ବସିଥିଲା । ସମସ୍ତଙ୍କର ଦୃଷ୍ଟି ବିଲେଇ ଉପରକୁ ଗଲାକ୍ଷଣି ସେ ମ୍ୟାଉଁ କହି ସେଠୁ ଚାଲିଗଲା ।

ଆଚାର୍ଯ୍ୟ ବିଷ୍ଣୁଗୁପ୍ତ କହିଲେ– "ଏହି କାଳି ବିଲେଇଟା ଗତ କେତେଦିନ ହେଲା ଶକଦୁର୍ଗର ଚାରିଆଡ଼େ ବୁଲୁଛି । ଏହି ବିଲେଇଟା କିଛି ଅଶୁଭ ସଙ୍କେତର ବାହକ ଭଳି ମତେ ଲାଗୁଛି । ଆଜି ପୂର୍ଣ୍ଣିମା । ଚନ୍ଦ୍ରଗ୍ରହଣ ସୂର୍ଯ୍ୟଗ୍ରହଣ ଏକାସଙ୍ଗରେ ଲାଗୁଛି । ଗୋଟିଏ ମାସରେ ଦୁଇଟି ଗ୍ରହଣ ଲାଗୁଥିବାରୁ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ପୃଥ୍ୱୀରେ ଏହା ଭୟଙ୍କର ବିପ୍ଳାତ ଘଟାଇବାକୁ ଯାଉଛି । ତା'ପରେ ଏହି ଦୁଇଗ୍ରହଣ ପୁଣି ଗୋଟିଏ ଦିନରେ ହିଁ ଲାଗୁଛି । ଭଗବାନ ଜାଣନ୍ତି କ'ଣ ହେବ କେଜାଣି । ନିଶ୍ଚୟ କିଛି ଅଘଟଣ ଘଟିବାକୁ ଯାଉଛି । ଗ୍ରହ ନକ୍ଷତ୍ର ଗୁଡ଼ିକର କ୍ରୁର ଦୃଷ୍ଟି ଭୟଙ୍କର ଭାବରେ ଶକଦୁର୍ଗ ଉପରେ ପଡୁଛି ବୋଲି ମୋର ଗଣନା କହୁଛି । ତେଣୁ ଏଠାରୁ ଶୀଘ୍ର ଚାଲିଯିବା ଉଚିତ । ଏଠି ରହିଲେ ଆମର ମଧ ଅମଙ୍ଗଳ ହେବ ।" କହି ଆଚାର୍ଯ୍ୟ ବିଷ୍ଣୁଗୁପ୍ତ କ୍ଷୀପ୍ରାର ହାତଧରି ବାହାରକୁ ଦ୍ରୁତଗତିରେ ଚାଲିଗଲେ ।

ଆଚାର୍ଯ୍ୟ ବିଷ୍ଣୁଗୁପ୍ତଙ୍କର ଏଭଳି ଭବିଷ୍ୟତ ବାଣୀ ଶୁଣି ଶକରାଜ ରୁଦ୍ରସିଂହ ଖୁବ୍ ଡରିଗଲେ । ଭୟଭୀତ ହୋଇ ମନକୁ ମନ ବିଡ଼ବିଡ଼େଇଲେ– "ଆଚାର୍ଯ୍ୟ ! ଆପଣ ଏଠାରୁ ଚାଲିଯାନ୍ତୁ ନାହିଁ । ମୁଁ ଆପଣଙ୍କୁ ଅନୁରୋଧ କରୁଛି । ଆପଣ ରୁହନ୍ତୁ । ମୋର ବାମ ଆଖି ମଧ ଜୋରରେ ଡ଼େଉଁଛି । ମୁଁ କ'ଣ କରିବି ?"

ଚାଲି ଯାଉ ଯାଉ ଶକରାଜଙ୍କର ଭୟଭୀତ ସ୍ୱର ଶୁଣି ଅତ୍ୟନ୍ତ ବିରକ୍ତହୋଇ କହିଲେ–"ମୁଁ କିପରି ତମକୁ ସାହାଯ୍ୟ ବା କରିପାରିବି ? ମୁଁ ପୂର୍ବରୁ ଏସବୁ ବୁଝାଇସାରିଛି । ସବୁ ଜାଣିଶୁଣି ଯଦି କୂଅ ଭିତରକୁ ଡେଇଁବେ ତା'ହେଲେ ମୁଁ କ'ଣ କରିବି କୁହନ୍ତୁ ! ତେଣୁ ଯେଉଁ ଘୋର ବିପତ୍ତି ବର୍ତ୍ତମାନ ମାଡ଼ିଆସୁଛି । ସେଥିରୁ ରକ୍ଷାକରିବା ମୋର ସାଧ ବାହାରେ ମହାରାଜ ! ତେଣୁ ଭାଗ୍ୟ ଉପରେ ଭରସା ରଖନ୍ତୁ, ସେ ତୁମର ମଙ୍ଗଳ କରିବେ । ଚାଲ ଝିଅ ଯିବା ।"

ଆଚାର୍ଯ୍ୟ ବିଷ୍ଣୁଗୁପ୍ତ ଓ କ୍ଷୀପ୍ରା ଦୁର୍ଗ ଦ୍ୱାରଆଡ଼କୁ ମୁହାଁଇଲେ । ଶକରାଜ ରୁଦ୍ରସିଂହ ଚିତ୍କାର କରିଉଠିଲେ- ''ଆଚାର୍ଯ୍ୟ ! ମତେ ଛାଡ଼ି ଚାଲିଯାନ୍ତୁନାହିଁ । ମତେ ରକ୍ଷା କରନ୍ତୁ । ମୋର ମନ ଅତ୍ୟନ୍ତ ବିଚଳିତ ହେଉଛି ।''

ଆଚାର୍ଯ୍ୟ କହିଲେ- ''ଶକରାଜ ! ନାରୀମାନଙ୍କର ବିଶ୍ୱାସକୁ ଭାଙ୍ଗିଦେବା, ସେମାନଙ୍କର ସ୍ନେହ, ପ୍ରେମକୁ ଆଡ଼େଇଦେବା କାଚ ଭାଙ୍ଗିବା ଭଳି ଅତ୍ୟନ୍ତ ସହଜ କାର୍ଯ୍ୟ ନିଶ୍ଚୟ । କିନ୍ତୁ ନାରୀର ନିଃଶ୍ୱାସ ପଡ଼ିଲେ, ଯନ୍ତ୍ରଣାର ଆହା ପଡ଼ିଲେ ସେହି ପୁରୁଷ କିମ୍ବା ଘର କି ରାଜ୍ୟର କେବେହେଲେ ମଙ୍ଗଳ ହୁଏନାହିଁ । ଆପଣ ବର୍ତ୍ତମାନ ସେହିଭଳି ପାପ କରିଛନ୍ତି । ବର୍ତ୍ତମାନ ସେହି ପାପର ପରିଣାମ ଆପଣଙ୍କୁ ହିଁ ଭୋଗ କରିବାକୁ ପଡ଼ିବ । ମୁଁ ଆପଣଙ୍କୁ ଏ କ୍ଷେତ୍ରରେ କୌଣସି ସହାୟତା ଦେଇପାରିବି ନାହିଁ । ମୁଁ ବଡ଼ ଅସମର୍ଥ ।'' ଆଚାର୍ଯ୍ୟ ଶକରାଜଙ୍କୁ ନକହି ଏକମୁହାଁ ହୋଇ ଦୁର୍ଗରୁ ବାହାରି ଚାଲିଗଲେ ।

ଶକରାଜ ରୁଦ୍ରସିଂହ ଭୟରେ କମ୍ପିବାକୁ ଲାଗିଲେ-''ବର୍ତ୍ତମାନ କ'ଣ ହେବ ?'' କହି ମୁଣ୍ଡ ଚାପିଧରିଲେ । ଚତୁର୍ଦ୍ଦିଗରେ କେମିତି ଏକ ଭୟର ବାତାବରଣ ସୃଷ୍ଟି ହୋଇଯାଇଥିଲା । ଏହି ସମୟରେ ଜଣେ ଦାସ ମଦିରାପାତ୍ର ଧରି ଶକରାଜ ରୁଦ୍ରସିଂହଙ୍କ ନିକଟରେ ପହଞ୍ଚିଲା । ମଦିରାକୁ ଦେଖି ଶକରାଜ ଟିକିଏ ଆଶ୍ୱସ୍ତ ହେଲେ । ଏକ ଶ୍ୱାସରେ ମଦିରା ଢ଼କଢ଼କ କରି ପିଇଦେଲେ । ପୁଣି ପିଇଲେ । ପୁଣି ମାଗିଲେ ଆକଣ୍ଠ ମଦିରା ପାନକଲାପରେ ଭୟ ଦୂର ହେଲା । ଏହି ସମୟରେ ଚାରି ଜଣ ସାମନ୍ତ କକ୍ଷ ମଧ୍ୟକୁ ପ୍ରବେଶ କଲେ ଓ ଅଭିବାଦନ ଜଣାଇ କହିଲେ- ''ମହାରାଜ ! ଏମିତି କ'ଣ ଏକଲା ଏକଲା ବିଜୟ ଉତ୍ସବ ପାଳନ କରୁଛନ୍ତି ।''

ସମସ୍ତଙ୍କୁ ଦେଖି ରୁଦ୍ରସିଂହଙ୍କ ମୁହଁରେ ଆଶ୍ୱସ୍ତିର ହସ ଫୁଟିଉଠିଲା -''ଆରେ ତୁମେମାନେ ଆସି ପହଞ୍ଚିଗଲଣି ଯେତେବେଳେ, ପିଅ ମନଇଚ୍ଛା ପିଅ । ମଦିରା ପାତ୍ର ସବୁ ତୁମ ଆଗରେ ଅଛି ।''

ଜଣେ ସାମନ୍ତ କହିଲେ- ''ମହରାଜ ! ଠିକ୍ ଅଛି ସବୁ । ହେଲେ ଖାଲି ସୁନ୍ଦରୀଙ୍କର ଅଭାବ ରହିଛି ।''

ଦୂତ କହିଲା- ''ଆପଣମାନେ ଆଉ ଅଳ୍ପ ସମୟ ପ୍ରତୀକ୍ଷା କରନ୍ତୁ । ସୁନ୍ଦରୀମାନେ ଆସି ପହଞ୍ଚିଯିବେ ।'' ସମସ୍ତେ ହୋ ହୋ ହୋଇ ହସିବାକୁ ଲାଗିଲେ । ସମାନ୍ତମାନେ ପାତ୍ରରେ ମଦିରା ଭର୍ତ୍ତିକରି ପିଇବାକୁ ଲାଗିଲେ । ପରିବେଶଟା ରଙ୍ଗୀନ ହୋଇ ଝୁମିଝୁମି ଆସିଲା । ମଦିରାର ମାତ୍ରା ଯେତିକି ବଢ଼ିଲା ନିଶାର ପ୍ରକୋପ ମଧ୍ୟ ଝରି ଆସିଲା ।

ଝୁମିଝୁମି ଜଣେ ସମାନ୍ତ କହିଲେ-''ମହାରାଜ ! ଆପଣଙ୍କର ଜୟ ହେଉ । ରାମଗୁପ୍ତ ବଡ଼ ବୁଦ୍ଧିମାନର କାର୍ଯ୍ୟ କରିଛନ୍ତି । ନହେଲେ ବର୍ତ୍ତମାନ ଆମ ଖଣ୍ଡାମାନଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ନ୍ତା । ଅନ୍ତତଃ ଆମକୁ ରକ୍ତନଦୀତ ବୁହାଇବାକୁ ପଡ଼ନ୍ତା ।''

ଚତୁର୍ଥ ସାମନ୍ତ ହସି ହସି କହିଲେ-'' ପରିଶ୍ରମ ବିନା ଆମକୁ ସଫଳତା ମିଳିଗଲା । ତେଣୁ ଚୁପ୍‌ଚାପ ଏହାର ଆନନ୍ଦ ନେବା ।''

ଆଉଜଣେ ସାମନ୍ତ କହିଲେ-'' ବାଜେ କଥା କୁହନା । ଲଢ଼ିବାକୁ ଏବେ ଯଦି ପଡ଼ିଥାନ୍ତାନା ଚୋପା ବାହାରି ଯାଇଥାନ୍ତା । ଖଣ୍ଡା ମୁନ ଘୋଷାଡ଼ି ହୋଇଯାଇଥାନ୍ତା ।''

ଅନ୍ୟ ଜଣେ ସାମନ୍ତ ମଦନିଶାରେ ଚୁର୍ ହୋଇ କହିଲେ- ''ଆମକୁ ଡରଉଛୁ ?''

-''ନା, ନା, ତୁମ ବାପାକୁ କହୁଛି ।''

ସାମନ୍ତ ଜଣକ ଲଡ଼ବଡ଼ ହୋଇଠିଆ ହେଲେ । ପୁଣି ପଡ଼ିଯାଉ ଯାଉ ଠିଆ ହେଲେ । ଖଣ୍ଡାକୁ ଟାଣିଆଣି କହିଲେ-''ଆସ...ଆସ.. ତୁମ ସହିତ ଦି'ହାତ ହୋଇଯିବା । ଦେଖିବା ଖଣ୍ଡା ତୁମର କେମିତି ଉଠୁଛି ।''

-''ହେ..ହେ ପଛକୁ କିଏ ହଟୁଛିରେ'' କହି ଚତୁର୍ଥ ସାମନ୍ତ ଛିଡ଼ା ହୋଇଗଲେ । ନିଜର ଖଣ୍ଡା ବାହାର କରିବାକୁ ଯାଉଛନ୍ତି ପ୍ରତିହାରୀର ସ୍ୱର ଶୁଭିଲା,-''ମହାରାଜଙ୍କର ଜୟ ହେଉ ।''

ଶକରାଜ ଧଡ଼ପଡ଼ ହୋଇ ପ୍ରକୃତିସ୍ଥ ହୋଇଗଲେ । ପ୍ରଶ୍ନସୂଚକ ଦୃଷ୍ଟିରେ ପ୍ରତିହାରୀକୁ ଦେଖିଲେ ।

-''ମହାରାଜ ! ପାଲିଙ୍କିଗୁଡ଼ିକ ଆସି ପହଞ୍ଚିଗଲା ।''

ଶକରାଜ ପଚାରିଲେ- ''ମହାଦେବୀ ଆସିଛନ୍ତି ?''

ପ୍ରତିହାରୀ କହିଲା-''ହଁ ମହାରାଜ !''

ଶକରାଜ କହିଲେ-''ତାଙ୍କୁ ଏଠାକୁ ନେଇ ଆସିଲନାହିଁ ?''

ପ୍ରତିହାରୀ କହିଲା-''ମହରାଜ ! ସେ ଏଠାକୁ ଆସିବାକୁ ଚାହୁଁନାହାନ୍ତି ।

ଶକରାଜ ପଚାରିଲେ-''କାହିଁକି ?''

ପ୍ରତିହାରୀ କହିଲା-''କହୁଛନ୍ତି, ସମସ୍ତଙ୍କ ସମ୍ମୁଖରେ ମୋର ମର୍ଯ୍ୟାଦା ହାନି ହେବ ।''

ସେଇ କଥା ଶୁଣି ଖୁବ୍ ଜୋର୍‌ରେ ଏକ ପୈଶାଚିକ ହସ ହସି ଉଠିଲେ ଶକରାଜ -''ହାଃ... ହାଃ... ହାଃ... ।'' ମାନ ମର୍ଯ୍ୟାଦା ? ଜଣେ ଦଳିତ ଦାସୀ ନାରୀର

ଯିଏ ମୋର ରାତିକୁ ରସମୟ କରିବ, ମୋ ଶଯ୍ୟାସଙ୍ଗିନୀ ହେବ ତା'ର ପୁଣି କ'ଣ ଗୋଟାଏ ମାନ ସମ୍ମାନ ? ତା'କୁ ଏଠାକୁ ଆସିବାକୁ ହେବ । ଯାଅ ପ୍ରତିହାରୀ ମଗଧର ମହାଦେବୀକୁ ଏଠିକି ନେଇ ଆସ ।''

ପ୍ରତିହାରା କହିଲା -''ମହାରାଜ ! ଆପଣ ଯାହା କହୁଛନ୍ତି ତାହା ସତ୍ୟ । କିନ୍ତୁ ଆପଣ ମହାଦେବୀଙ୍କ ସହିତ ଏକାନ୍ତରେ ସାକ୍ଷାତ କଲେ ବେଶି ଭଲ ହୋଇଥା'ନ୍ତା । ଯାହା ବି ହେଉ ସେ ଆପଣଙ୍କର ଅଙ୍କଶାୟିନୀ ହିଁ ହେବେ । ତାଙ୍କୁ ସମ୍ମାନ ଦେବା ମଧ ଆପଣଙ୍କର କର୍ତ୍ତବ୍ୟ ।''

ଶକରାଜ ପ୍ରତିହାରୀର କଥାର ଉଦ୍ଦେଶ୍ୟ ବୁଝିପାରିଲେ ଓ କହିଲେ-''କେବେ କେବେ ତୁମେ ଠିକ୍ କଥା କହିଥାଅ । ମହାଦେବୀଙ୍କର ପାଲିଙ୍କିକୁ ଅନ୍ତଃପୁରକୁ ପହଞ୍ଚାଇ ଦିଅ । ତାଙ୍କର ଭଲଭାବରେ ପରିଚର୍ଯ୍ୟା କର । ମୁଁ ଆସୁଛି ।''

-''ଯାହା ଆଜ୍ଞା !'' କହି ପ୍ରତିହାର ଚାଲିଗଲା ।

ଶକରାଜ ନିଜର ସାମନ୍ତଙ୍କୁ କହିଲେ-''ମୋର ପ୍ରିୟ ବୀର ସାମନ୍ତଗଣ ! ଆପଣମାନେ ନିଜ ନିଜ କକ୍ଷକୁ ଯା'ନ୍ତୁ । ଆପଣମାନଙ୍କ ପାଇଁ ପାଲିଙ୍କି ପଠାଇବାର ବ୍ୟବସ୍ଥା କରାଯାଉଛି ।''

ଜଣେ ସାମନ୍ତ କହିଲା- ''କିନ୍ତୁ ମହାରାଜ ! ଆମର କଥାର ନିର୍ଣ୍ଣୟ ଏ ପର୍ଯ୍ୟନ୍ତ ହୋଇନାହିଁ । ମୁଁ ମୋର ଖଣ୍ଡା ବାହାର କରିସାରିଲିଣି ଯେ ।''

-''ଆରେ, ଛାଡ଼ ସେସବୁ । କାଲି ସେ କଥାର ମୀମାଂସା କରିବା, ତୁମେମାନେ ଯାଅ ଶୀଘ୍ର ।''

-''ହଉ, ଠିକ୍ ଅଛି ମହାରାଜ ! ଆପଣଙ୍କର ଆଜ୍ଞା ଯଦି ଅଛି ତା'ହେଲେ କାଲି ହେଉ ।'' ସାମନ୍ତ ଜଣକ ନିଜର ଖଣ୍ଡାକୁ ଖୋପରେ ରଖିଦେଲେ ।

ଶକରାଜ ଲଡ଼ବଡ଼ ହୋଇ ଅନ୍ତଃପୁର ଆଡ଼କୁ ଚାଲିଲେ ।

ସାମନ୍ତମାନେ ନିଜ ନିଜ କକ୍ଷକୁ ଫେରିଗଲେ ।

ଶକରାଜ ରୁଦ୍ରସିଂହଙ୍କର ଅନ୍ତଃପୁର । ସୌନ୍ଦର୍ଯ୍ୟମୟୀ ପରିପୂର୍ଣ୍ଣ ନବଯୌବନବତୀଟିଏ ଭଳି ଝଲଝଲ କରୁଥିଲା । ଦୀପମାଳାର ଉଜ୍ଜ୍ୱଳ ଆଲୋକରେ ଅନୂଢ଼ା ନବ ଯୁବତୀଟିଏ ଭଳି ଅନ୍ତଃପୁରର ଏକ ପ୍ରକୋଷ୍ଠକୁ ସଜା ଯାଇଥିଲା । ଦୂରରୁ

ବଂଶୀର ସ୍ୱନରେ କେଉଁ ଅଜଣା ଗାୟକର ରାଗମହ୍ଲାର ତାନ ଯେମିତି ଚତୁର୍ଦ୍ଦିଗକୁ ଆହୁରି ଆହୁରି ମତୁଆଲା କରୁଥିଲା । ମିଠା ମିଠା କସ୍ତୁରୀର ମୋହମଗ୍ନ ସୁଗନ୍ଧରେ କକ୍ଷଟି ସୁଗନ୍ଧିତ ହୋଇଥାଏ । ସୁନା ଜରିର ଅପୂର୍ବ ହସ୍ତ କାରିଗରୀ ଲମ୍ବା ଓଢ଼ଣୀରେ ସମଗ୍ର ଅବୟବକୁ ଆବୃତ୍ତ କରି ଅବଗୁଣ୍ଠନବତୀ ନାରୀଟିଏ ଭଳି କକ୍ଷର ମଝିରେ ସୁସଜ୍ଜିତ ପଲଙ୍କ ଉପରେ ବସିଥା'ନ୍ତି ଧ୍ରୁବଦେବୀଙ୍କର ବେଶରେ କୁମାର ଚନ୍ଦ୍ରଗୁପ୍ତ । ଥୋଡ଼ିକୁ ଆଣ୍ଠୁ ଉପରେ ଭରି ନବବଧୂଟିଏ ପରି ବସିଥିଲେ । ହଠାତ୍ କକ୍ଷ ମଧ୍ୟକୁ ଶକରାଜ ରୁଦ୍ରସିଂହଙ୍କର ଆସିବାର ପାଦଶବ୍ଦ ଶୁଭିଲା । ନବବଧୂବେଶୀ କୁମାର ନିଜକୁ ଆହୁରି ଜଡ଼ାଇ ନେଲେ ।

ଶକରାଜ ରୁଦ୍ରସିଂହ ମହାଦେବୀ ଧ୍ରୁବଦେବୀଙ୍କର ଅନିନ୍ଦ୍ୟ ରୂପଲାବଣ୍ୟକୁ ଯେମିତି ଅଙ୍ଗେ ଅଙ୍ଗେ ଆଘ୍ରାଣ କରୁଥିଲେ । ମହାଦେବୀଙ୍କର ବିଭୋର ଆଖିର ବିମୁଗ୍ଧ ଚାହାଣୀର କଟାକ୍ଷରେ ଯେମିତି ଶକରାଜ ଲୋଟି ପଡୁଥିଲେ । ରାଣୀ ଅନ୍ତଃପୁରର ଛାଇ ଛାଇକା ଅଧା ଛାଇ ଅଧା ଆଲୁଅରେ ସୁସଜ୍ଜିତ କକ୍ଷରେ ଦେବୀଙ୍କର ଛଦ୍ମବେଶରେ ବସିଥିବା କୁମାର ଚନ୍ଦ୍ରଗୁପ୍ତ ଅନୂଢ଼ା ଅବୁଝା କିଶୋରୀଟିଏ ଭଳି ପ୍ରେମିକର ଆଗମନକୁ ଅପେକ୍ଷା କରିଛନ୍ତି । ଆଉ ଶକରାଜ ରୁଦ୍ରସିଂହ ଅପୂର୍ବ ଲାବଣ୍ୟମୟୀ ମୌନମୁଖି ଲାବଣ୍ୟ ପ୍ରତିମା ମହାଦେବୀଙ୍କୁ ଅନ୍ତରଙ୍ଗ ଭାବରେ ପାଇବା ପାଇଁ ବେଳକୁ ବେଳ ବ୍ୟାକୁଳ ହେଉଥା'ନ୍ତି । ଅପ୍ରତିମ ତୃଷ୍ଣାର କାମନାରେ ରୁଦ୍ରସିଂହଙ୍କର ହୃଦୟ ମନ୍ଥିହୋଇ ଯାଉଥିଲା । ମହାଦେବୀଙ୍କର ଦେହର ଭାସ୍କର୍ଯ୍ୟକୁ କଳ୍ପନାର ରୁଣୁଝୁଣୁ ଘୁଙ୍ଗୁରର ଝଙ୍କାରରେ ଝଙ୍କୃତ ହେଉଥିବା ସେ ଦେଖୁଥା'ନ୍ତି । ନା...ନା.. ଆଉ ସହିହେବନାହିଁ ଏ ଅଭାବିତ ବିରହର ଜ୍ୱାଳା !

ଆସ୍ତେ...ଆସ୍ତେ ଶକରାଜ ରୁଦ୍ରସିଂହ ଛଦ୍ମରୂପୀ ମହାଦେବୀଙ୍କ ଆଡ଼କୁ ଆସିଲେ । ଏପଟେ ମଦ୍ୟ ପାନର ନିଶାସକ୍ତ ଆବିଷ୍ଟତା ତାଙ୍କୁ ଘାରିଥାଏ । କାନ ପାଖରେ କହିଲେ– "ଦେବୀ !"

ପ୍ରତ୍ୟୁତ୍ତରରେ କୁମାର ଚୁପ୍ ରହିଲେ ।

ଶକରାଜ ଝୁମିଝୁମି କହିଲେ– "ହେ ସୁନ୍ଦରୀ । ମୁଁ ଶୁଣିଛି ତୁମେ କୁଆଡ଼େ ଅନନ୍ୟା, ମେଘବତୀ ଅନାବୃତ୍ତା ରସମୟୀ । ତୁମର ପ୍ରତି ଅଙ୍ଗରେ ରତି ରସୋଲ୍ଲାସର ମୂର୍ଚ୍ଛିତ ଆହ୍ଲାଦ ସୃଷ୍ଟିହୁଏ । ହେ କାମାଗ୍ନି ! ମଗ୍ନା ମନ୍ମୟୀ । ମତେ ସେହି ଅମୃତ ରସଧାରାରୁ ଟୋପେ ହେଲେ ବର୍ଷିଦିଅ । ମୋର ସାରା ଶରୀର, ଅସ୍ତିତ୍ୱର ଏ ଅନନ୍ତ ତୃଷ୍ଣାକୁ ନିଃଶେଷ କରିଦିଅନ୍ତି । ଆଚ୍ଛନ୍ନତାରେ ମତେ ତନ୍ଦ୍ରାଚ୍ଛନ୍ନ କରିଦିଅନ୍ତ । ଆସ...ଆସ...." ପାଖକୁ ଲାଗି ଆସିଲେ ।

ଲଜ୍ଜାର ଚୁମ୍‌କରେ ଯେମତି କିଶୋରୀଟିଏ ଆହୁରି ସହମିଯାଏ, ସଙ୍କୁଚିତ ହୋଇଯାଏ ସେମିତି ଅଭିନୟ କଲେ ଅବଗୁଣ୍ଠନବତୀ କୁମାର ଚନ୍ଦ୍ରଗୁପ୍ତ । ରୁଦ୍ରସିଂହଙ୍କ କାମନାର ଜ୍ୱାଳା ଆହୁରି ପ୍ରବଳତର ହେଉଥାଏ । ସେ କହୁଥାନ୍ତି– ''ହେ ମହାଦେବୀ ! ତୁମକୁ ତୁମର ପୁରାତନ ପତି ଓ ପତିଗୃହକୁ ଛାଡ଼ି ଆସିଥିବାରୁ ନିଶ୍ଚୟ ଦୁଃଖ ହେଉଥିବ । ତୁମ ଭଳି ରୂପ ଲାବଣ୍ୟମୟୀ ରୂପବତୀ ନାରୀ ଯାହାର ବି ପତ୍ନୀ ହେବ ତା'ର ବଞ୍ଚିବା କଷ୍ଟକର ହୋଇପଡ଼ିବ । କାରଣ ତୁମକୁ ପାଇବା ପାଇଁ ଯେ ସମସ୍ତେ ପାଗଳ । ହେଲେ, କ'ଣ କରାଯିବ, ତୁମେ ଅଯଥା ଦୁଃଖ କରନାହିଁ । ତମକୁ ମୁଁ ମୋର ହୃଦୟର ରାଣୀ କରିରଖିବି । ସେ ରାମଗୁପ୍ତଟା ଗୋଟେ ନପୁଂସକ । ସେ ତମକୁ କୌଣସି ଦୈହିକ ସୁଖ ଦେଇପାରିନଥିଲା । ସେସବୁ ଅଭାବ ମୁଁ ପୂରଣ କରିଦେବି । ମୁଁ ଶୁଣିଛି ତୁମେ କୁଆଡ଼େ କୁମାର ଚନ୍ଦ୍ରଗୁପ୍ତଙ୍କୁ ମଧ୍ୟ ଭଲ ପାଉଥିଲ । ତାଙ୍କୁ ବିବାହ କରିବାକୁ ବସିଥିଲ । ତେଣୁ ତୁମର ଅଭାବବୋଧ ଆଖିର ପଲକରେ କେଉଁଆଡ଼େ ମିଳେଇଯିବ । ତୁମ ଓଢ଼ଣା ଏଥର ଖୋଲ ସୁନ୍ଦରୀ ! ଆଉ ସହିପାରିବି ନାହିଁ ଏ ଅବଗୁଣ୍ଠନ ।''

ଶକରାଜ ରୁଦ୍ରସିଂହଙ୍କ ପ୍ରଳାପ ବଢୁଥିବା ଦେଖି କୁମାର ଚନ୍ଦ୍ରଗୁପ୍ତ ଓଢ଼ଣା ଭିତରେ ନିଜର ଅଣ୍ଟାକୁ ଦରାଣ୍ଡି ହେଲେ । ଖଣ୍ଡା, କଟାର ଠିକ୍ ଜାଗାରେ ଅଣ୍ଟାରେ ବନ୍ଧାହୋଇଛି । ରୁଦ୍ରସିଂହ କହିଚାଲିଥା'ନ୍ତି–''ହେ ଦେବୀ ! ତୁମ ଅବସ୍ଥା ପାଇଁ ମୋ ମନରେ ସହାନୁଭୂତି ଜାଗ୍ରତ ହେଉଛି । କିନ୍ତୁ କ'ଣ କରିବି, କୁହ ! ତୁମକୁ ଏଠିକି ନ ଆଣିଥିଲେ ମୋର ପ୍ରତିଶୋଧର ବହ୍ନି ଯେ ସମାପ୍ତ ହୋଇନଥାନ୍ତା । ସେଥିପାଇଁ ରାମଗୁପ୍ତକୁ ଏତେ ଡରେଇଲି । ତୁମର ଶ୍ୱଶୁର ସମ୍ରାଟ ସମୁଦ୍ରଗୁପ୍ତ ମୋର ପୂର୍ବ ପୁରୁଷଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଛନ୍ତି । ତେଣୁ ସେହି ପ୍ରତିଶୋଧର ମୂଲ୍ୟ ସ୍ୱରୂପ ତୁମକୁ ମାଗିଲି । ତୁମ ରୂପର ପ୍ରଶଂସାରେ ମୁଁ ଆଗରୁ ବିହ୍ୱଳିତ ହୋଇସାରିଥିଲି । ତୁମକୁ କୌଣସି ପରିସ୍ଥିତିରେ ଛାଡ଼ି ହେବନାହିଁ । ଯାହାହେଉ ମୋର ପୂର୍ବଜଙ୍କ ଆତ୍ମା ଅନ୍ତତଃ ଟିକେ ଶାନ୍ତି ପାଇଥିବ । ଆଉ ବିଚାରା ସମୁଦ୍ରଗୁପ୍ତଙ୍କ ଆତ୍ମା କାନ୍ଦୁଥିବ ।''

ଓଢ଼ଣା ଭିତରେ ରୁଦ୍ରସିଂହର ପ୍ରଳାପ ଶୁଣୁଶୁଣୁ କୁମାର ଚନ୍ଦ୍ରଗୁପ୍ତ ହସୁଥିଲେ । ଆଉ ଭାବୁଥିଲେ ବର୍ତ୍ତମାନ ଜଣାପଡ଼ିବ କିଏ କାନ୍ଦିବ ରୁଦ୍ରସିଂହ ନା ସମ୍ରାଟ ସମୁଦ୍ରଗୁପ୍ତ । ରୁଦ୍ରସିଂହ କୁମାରଙ୍କ ଆହୁରି ନିକଟବର୍ତ୍ତୀ ହୋଇଆସିଲେ– ''କଥା କୁହ ମଲ୍ଲିକେଶ୍ୱରୀ ପ୍ରିୟତମା ମୋର ! କଥା କୁହ ! ଦେବୀ ! ତୁମପାଇଁ ମୋ ହୃଦୟ କେମିତି ଛମ ଛମେଇ ଯାଉଛି । ତୁମର ଟିକିଏ ସ୍ପର୍ଶ ପାଇବା ପାଇଁ ମୁଁ କେମିତି ପ୍ରଗଳ୍‌ଭ ଆତୁର ହୋଇଉଠୁଛି ।

ମୋ ପ୍ରେମର ଆପ୍ଲୁତ ବିଭୋରତାକୁ କ'ଣ ତୁମେ ଶୁଣିପାରୁନ ? ତୁମ ଶୀତଳ ଆବେଗରେ ମତେ ରିକ୍ତ, ଉଦ୍‌ବେଳିତ କରିଦିଅ, ପ୍ରିୟେ ।''

-''ଏବେ କରୁଛି..'' ବୋଲି କୁମାର ଚନ୍ଦ୍ରଗୁପ୍ତ ଉତ୍ତର ଦେଲେ ।

-''ଶକରାଜ ରୁଦ୍ରସିଂହ ଖୁବ୍‌ଜୋରରେ ଚମକି ପଡ଼ିଲେ- ''ତୁମର ସ୍ୱର ଏମିତି କ'ଣ ଶୁଭୁଛି । ଏ ସ୍ୱର ତ କେଉଁ ପୁରୁଷର ସ୍ୱର ଭଳି ଶୁଭୁଛି ।'' କହି କୁମାରଙ୍କର ଓଢ଼ଣୀକୁ ଟାଣିଦେଲେ । ଓଢ଼ଣୀ ଭିତରୁ କୁମାର ଚନ୍ଦ୍ରଗୁପ୍ତ ବାହାରି ଆସିଲେ । ଶକରାଜ ଚିତ୍କାର କରି ଉଠିଲେ, -''ଠକ, ପ୍ରତାରକ ! ତୁମେ କିଏ ? ଏଠି କ'ଣ କରୁଛ ।''

-''ତୋର କାଳ ! ମୁଁ ଚନ୍ଦ୍ରଗୁପ୍ତ ।''

-''ଧ୍ରୁବଦେବୀଙ୍କୁ ଆଣିନାହଁ ?''

କୁମାର ଚନ୍ଦ୍ରଗୁପ୍ତ ଦାନ୍ତ କଡ଼ମଡ଼ କରି ଉତ୍ତର ଦେଲେ, ''ପାଷଣ୍ଡ ! ବର୍ବର ଶକରାଜ ! ବହୁତ ବେଳୁ ମୁଁ ତୋ'ର ପ୍ରଳାପ ଶୁଣୁଛି । ତୁ କ'ଣ ଭାବିଚୁ ତୁ ମହାଦେବୀଙ୍କୁ ଅପମାନ ଜନକ ଭାବରେ ଏଠିକୁ ନେଇ ଆସିବୁ । ସମ୍ରାଟ ସମୁଦ୍ରଗୁପ୍ତଙ୍କର ମର୍ଯ୍ୟାଦା କ'ଣ ଏତେ ଶସ୍ତା ହୋଇଛି ଯେ ତୋ'ର ଧମକରେ ନଷ୍ଟ ହୋଇଯିବ ? ତା'କୁ ସାମ୍ନା କରିବାକୁ ହେଲେ ଖଣ୍ଡା ଉଠାଅ ଆଉ ଯୁଦ୍ଧ କର ।'' କହି କୁମାର ଅଣ୍ଟାରୁ ଦୁଇଟିଯାକ କଟାରକୁ କାଢ଼ିଆଣି ଶକରାଜ ଆଡ଼କୁ ଗୋଟିଏ ଫିଙ୍ଗିଦେଲେ -''ପ୍ରଥମେ ୟାକୁ ସମ୍ଭାଳ । ମୁଁ ନିରସ୍ତ୍ର ବ୍ୟକ୍ତି ଉପରେ ଆକ୍ରମଣ କରେନାହିଁ ।''

କୁମାରଙ୍କ ଠାରୁ ଫିଙ୍ଗା ଯାଇଥିବା କଟାରକୁ ଶକରାଜ ଧପ୍‌କିନି ଧରିପକାଇଲେ । - ''ଟୋକା ! ଏଠିକି ତୋର କାଳ ତତେ ଡାକି ଆଣିଛି । ତୁ ଏଠୁ ବଞ୍ଚିକରି ଯାଇପାରିବୁ ନାହିଁ । କିଛି ସମୟ ମଧ୍ୟରେ ସାରା ରାଜ୍ୟରେ ରାଷ୍ଟ୍ର ହୋଇଯିବ ଯେ ଗୁପ୍ତକୁଳର ଏକ ପ୍ରଦୀପ ଶକରାଜ ହାତରେ ଲିଭିଗଲା ।'' କହି କଟାରକୁ କୁମାରଙ୍କ ଆଡ଼କୁ ପକାଇଲେ । କିନ୍ତୁ କୁମାର ଚନ୍ଦ୍ରଗୁପ୍ତ ଅସାବଧାନ ନଥିଲେ । ଯେମିତି ଶକରାଜର କଟାର ଉପରକୁ ଉଠିଲା, ବଡ଼ ସ୍ଫୁର୍ତ୍ତିରେ କୁମାର ଆଗକୁ ଡେଇଁପଡ଼ି କଟାରକୁ ଛଡ଼ାଇ ପକାଇଲେ । ଶକରାଜର ବେକକୁ ହାତର ଠେସାରେ ଚାପିବାକୁ ଲାଗିଲେ । ଶକରାଜ ଗଁ ଗଁ କରିବାକୁ ଲାଗିଲା । ତାଙ୍କୁ ଲାଗିଲା ଯେମିତି ଏଇଟା କେଉଁ ପୁରୁଷର ହାତ ନୁହେଁ ବରଂ ସତସତିକା ବାଘର ଦାନ୍ତରେ ପଶିଯାଇଛନ୍ତି । ନିଜକୁ ଛଡ଼ାଇବାକୁ ଶକରାଜ ନିଜର ସମସ୍ତ ଶକ୍ତି ଖଟାଇଲେ ହେଲେ ପାରିଲେ ନାହିଁ । କନ୍ତୁ ଏଭଳି ପରାଜୟକୁ ମଧ୍ୟ ସେ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ । ଯାହାହେଲେ ବି ଶକରାଜ ସାହାସୀ ଥିଲେ । ସେ ପୁନର୍ବାର ପ୍ରାଣପଣେ କୁମାରଙ୍କର ବନ୍ଧନରୁ ଫିଟିବାକୁ ଚେଷ୍ଟାକଲେ, କିନ୍ତୁ ସଫଳ ହୋଇପାରିଲେ ନାହିଁ ।

ଶେଷରେ କୁମାର ନିଜର କଟାରକୁ ସମ୍ଭାଳି ଶକରାଜର ବକ୍ଷରେ ଭୁସିଦେଲେ । କଟାର ଏକାଥରକେ ବକ୍ଷଦେଇ ପିଠିପଟକୁ ଫୁଟିଗଲା । ଶକରାଜ ଆଃ ମଧ କହିପାରିଲେ ନାହିଁ । ସେହିଠାରେ ହିଁ ମୃତ୍ୟୁବରଣ କଲେ । ଶକରାଜ ରୁଦ୍ରସିଂହଙ୍କର ମୃତ୍ୟୁ ସମାଚାର ନିଆଁ ଭଳି ଚତୁର୍ଦ୍ଦିଗରେ ଖେଳିଗଲା । କିନ୍ତୁ କିଛି ଆଉ କରିବାର ନଥିଲା । ଶକରାଜଙ୍କର ଅଧିକାଂଶ ସୈନ୍ୟସାମନ୍ତ ନାରୀ ବେଶଧାରୀ ଗୁପ୍ତ ସୈନ୍ୟଙ୍କ ହାତରେ ମୃତ୍ୟୁବରଣ କରିସାରିଥିଲେ । ଶକ ସୈନ୍ୟବାହିନୀକୁ ନେତୃତ୍ୱ ଦେବାକୁ କେହି ରହିଲେ ନାହିଁ । ଚନ୍ଦ୍ରଗୁପ୍ତ ଶକଦୁର୍ଗକୁ ନିଜ ଅଧିକାରକୁ ନେଇଗଲେ ।

ଯେଉଁମାନେ ଆତ୍ମସମର୍ପଣ କଲେ ସେମାନଙ୍କୁ ଚନ୍ଦ୍ରଗୁପ୍ତ ମୁକ୍ତ କରିଦେଲେ । ବିଦ୍ରୋହୀମାନଙ୍କୁ ବନ୍ଦୀ କରାଗଲା । ଯେଉଁମାନେ ପଳାୟନ ଉଦ୍ୟମ କଲେ ସେମାନଙ୍କୁ ହତ୍ୟା କରାଗଲା । ରକ୍ତାକ୍ତ ହୋଇଉଠିଲା ଶକଭୂମି । ସକାଳ ସୂର୍ଯ୍ୟକିରଣ ଯେତେବେଳେ ଶକରାଜ୍ୟ ଉପରେ ପଡ଼ିଲା ସେତେବେଳେ ନୂତନ ଏକ ସମ୍ଭାବନାର ଆଭା ଯେମିତି ଚତୁର୍ଦ୍ଦିଗ ଖେଳିଗଲା । ଏକ ନବଜୀବନର ସଙ୍କେତ ଲେଖି ହୋଇଗଲା । କୁମାର ଚନ୍ଦ୍ରଗୁପ୍ତ ଶକଦୁର୍ଗ ଅଧିକାର କଲାପରେ ମହାଦେବୀଙ୍କୁ ସେଠାକୁ ଡକାଇଆଣିଲେ । ଦ୍ୱିପ୍ରହର ସୁଦ୍ଧା ମହାଦେବୀ, ଇନ୍ଦ୍ରଦେବ ଓ ଅନ୍ୟାନ୍ୟ ସାମନ୍ତମାନଙ୍କ ସହିତ ଆସି ଶକଦୁର୍ଗରେ ପହଞ୍ଚିଲେ । ତାଙ୍କର ସ୍ୱାଗତ ପାଇଁ କୁମାର ନିଜେ ଦୁର୍ଗଦ୍ୱାର ନିକଟରେ ଉପସ୍ଥିତ ଥିଲେ ।

ଆନନ୍ଦବିଭୋର ଧ୍ରୁବଦେବୀ ଗଦ୍‌ଗଦ୍ ହୋଇ କହିଲେ- "କୁମାର ! ତୁମେ ମତେ କାହିଁକି ଏଠାକୁ ଡାକିଆଣିଲ ? ମୁଁ କ'ଣ ଏହାର ଯୋଗ୍ୟ ?"

ଚନ୍ଦ୍ରଗୁପ୍ତ ନତମସ୍ତକ ହୋଇ କହିଲେ- "ଦେବୀ ! ଏହି ଦୁର୍ଗ ଆଜିଠାରୁ ଆପଣଙ୍କର । ମୋ ହୃଦୟରେ ଧ୍ରୁବତାରା ଭଳି ଏକ ଛୋଟତାରକା ସର୍ବଦା ବିଦ୍ୟମାନ ହୋଇରହିଛି । ମୋର ଏହି ବିଜୟକୁ ମୁଁ ସେହି ଧ୍ରୁବତାରାଙ୍କୁ ହିଁ ସମର୍ପଣ କରୁଛି । ହୁଏତ ଆପଣ ଏହି ତାରକାର ମହତ୍ତ୍ୱକୁ ବୁଝିନପାରନ୍ତି, ଏମିତି ବି ହୋଇପାରେ ଆପଣ ବୁଝିଲେ ମଧ ଅବୁଝା ରହିପାରନ୍ତି । ତଥାପି ଏହି ଦୁର୍ଗ ଉପରେ କାହାର ଅଧିକାର ରହିବା କଥା ତାହା ମୁଁ ଭଲ ଭାବରେ ଜାଣିଛି । କିନ୍ତୁ ସେ ଯାହାହେଉନା କାହିଁକି ଏହି ଦୁର୍ଗ ମୁଁ ଆପଣଙ୍କୁ ଅର୍ପଣ କରୁଛି । ଆପଣ ଏହି ଦୁର୍ଗର ଅଧିଶ୍ୱରୀ । ଆପଣଙ୍କ ଅଧିନରେ ଏହି ଦୁର୍ଗ ରହିବ ।"

ଧ୍ରୁବଦେବୀଙ୍କ ଆଖିରୁ ଖୁସିର ଝଲମଲ ଲୋତକଟୋପା ସବୁ ଖସିପଡୁଥିଲା । ଧ୍ରୁବଦେବୀଙ୍କର ଓଠ ତଳେ ଥିବା ଛୋଟିଆ ତିଳଚିହ୍ନଟି ତାଙ୍କର ଅନିନ୍ଦ୍ୟ ସୁନ୍ଦର ମୁଖମଣ୍ଡଳକୁ ଆହୁରି ରକ୍ତିମ କରି ଦେଉଥିଲା । ସ୍ନେହ ଜରଜର କଣ୍ଠରେ ବିହ୍ୱଳ ହୋଇ ସେ କହିଲେ –

"କୁମାର ! ମୋର ପ୍ରାଣର କୁମାର ! ମତେ ଏତେ ମହାର୍ଘ ଉଚ୍ଚତାର ବର୍ଣ୍ଣାଳୀ ଭିତରେ ବସାଅ ନାହିଁ, ଯେଉଁଠି ମୁଁ ଖସିପଡ଼ିଲେ ମୋର ସମଗ୍ର ଅସ୍ତିତ୍ୱ ଛିନ୍ନଛିନ୍ନ ହୋଇ ନିଃଶେଷ ହୋଇ ଯିବ । ତୁମର ବୀରତ୍ୱ ସାହାସିକତାର ପ୍ରତୀକ ଏହି ଦୁର୍ଗ । ତୁମେ ତୁମ ବାହୁ ବଳରେ ଏହାକୁ ଜିତିଛ ।"

କୁମାର ମହାଦେବୀଙ୍କଠାରୁ କଥା ଛଡ଼ାଇନେଲେ କହିଲେ-"ଆପଣଙ୍କ କଥା ସତ୍ୟ ହୋଇପାରେ ଦେବୀ ! କିନ୍ତୁ ଏହା ପଛରେ କାହାର ପ୍ରେରଣା ଅଛି ଜାଣିଛନ୍ତି ତ ।"

ଧ୍ରୁବଦେବୀ ନିରୀହା କିଶୋରୀ ବାଳିକାଟିଏ ଭଳି ଲାଜେଇ ଗଲେ । ପାଦର ଆଙ୍ଗୁଠିକୁ ମାଟିରେ ଘୋଷାରି ଘୋଷାରି ଧୀରକଣ୍ଠରେ କହିଲେ-"ସେ କଥା ମୁଁ କେମିତି ଜାଣିବି ?"

ଦୁଷ୍ଟାମୀର ହସ ଚନ୍ଦ୍ରଗୁପ୍ତଙ୍କ ଓଠରେ ପହଁରି ଆସିଲା । ଗେହ୍ଲେଇ ଗେହ୍ଲେଇ କହିଲେ- "ଆପଣ ସତରେ ଜାଣନ୍ତି ନାହିଁ ନା ଜାଣିବାକୁ ଚାହାନ୍ତି ନାହିଁ ? ମହାଦେବୀ ! ଯାହାହେଉ ଆପଣଙ୍କର ବିପତ୍ତି କଟିଗଲା । ମୋର ଏ ଶୁଷ୍କ ଜୀବନ ନାରୀ ମୋହରୁ ତୁଟିଯାଇଥିଲା । ମୁଁ କେଉଁଆଡ଼େ ପଳାଇବାକୁ ଚାହୁଁଛି ।"

ଧ୍ରୁବଦେବୀ କୁମାରଙ୍କ କଥା ଶୁଣି ବ୍ୟଗ୍ର ହୋଇପଡ଼ିଲେ । ଭାବୁକ କଣ୍ଠରେ କହିଲେ- "ମତେ ଛାଡ଼ି କୁଆଡ଼େ ଯିବ ?"

-"ଯୁଆଡ଼େ ମୋ ଭାଗ୍ୟ ମତେ ଟାଣିବ ସେଆଡ଼େ ଯିବି ।"

ବ୍ୟାକୁଳ ହୋଇ ପରମ ଆବେଗରେ ଧ୍ରୁବଦେବୀ କୁମାରଙ୍କ ହାତ ଧରିପକାଇଲେ । ବାଷ୍ପରୁଦ୍ଧ ଛଳଛଳ କଣ୍ଠରେ କହିଲେ- "ତୁମେ କୁଆଡ଼େ ଯାଇପାରିବ ନାହିଁ, କୁମାର । ଦେଖ... ଦେଖ କୁମାର ! ତୁମ ସ୍ନେହଭରା ମହିମ୍ନ ଅନୁଭବ ଟିକକ କେମିତି ମୋ ସର୍ବାଙ୍ଗରେ ବୋଳି ହୋଇଯାଉଛି । ତୁମ ଦୀର୍ଘଶ୍ୱାସର ସ୍ୱପ୍ନାତୁରା ବିଭୋର ଆବିଷ୍ଟତା ଅସ୍ଥି, ମଜ୍ଜା, ଆତ୍ମାରେ ସଂଚରେଇ ଯାଉଛି । ତୁମେ ତୁମର ସର୍ବସ୍ୱ ଯାହା ହରେଇଥିଲ ବୋଲି ଚାଲିଯିବାକୁ ଚାହୁଁଥିଲ, ସେସବୁ ତୁମ ପାଦତଳେ ପୁଣିଥରେ ଅଜାଡ଼ିହେବ । ରୁହ, କୁମାର ! ତମେ ଟିକିଏ ଏଇଠି ଅଟକି ଯାଅ । ହଉ ହେଲା ତୁମପାଇଁ ନହେଲା ନାଇଁ ମୋ ପାଇଁ ହେଲେ ଦଣ୍ଡେ ଅଟକିଯାଅ ।"

ଧ୍ରୁବଦେବୀଙ୍କର ଆକୁଳତାର ଆର୍ତ୍ତିରେ ଚନ୍ଦ୍ରଗୁପ୍ତ ତରଳି ଯାଉଥିଲେ । ପ୍ରିୟ ମଣିଷର କୋହଭରା ନିଷ୍ପାପ ଆକର୍ଷଣ ଯେମିତି ତାଙ୍କର ଅନ୍ତରତମ ମୋହମୁଗ୍ଧତାକୁ ଆହୁରି ଆହୁରି ସ୍ପର୍ଶାତୁର କରି ଦେଉଥିଲା । ଥର ଥର କଣ୍ଠରେ ସେ କହିଲେ- "ଯାହା ଆଜ୍ଞା ! ଦେବୀ ।"

ଯାବତୀୟ ଅପମାନ, ଦୁଃଖ ଯନ୍ତ୍ରଣାର କଷଟି ପଥର ଭିତରୁ ମାଜିହୋଇ ଦାଉ ଦାଉ ହୋଇ ଉଜୁଟି ଉଠୁଥିବା ଧ୍ରୁବଦେବୀ ପରମ ସ୍ନେହରେ ଗଭୀର ଆଶ୍ୱସ୍ତିରେ ଚନ୍ଦ୍ରଗୁପ୍ତଙ୍କ ହାତଧରି ଦୁର୍ଗ ଭିତରକୁ ଗଲେ । ଦୁର୍ଗ ଭିତରେ ଗୋଟିଏ ପ୍ରକୋଷ୍ଠ ମଧ୍ୟରେ ଦୁଇଟି ରତ୍ନଜଡ଼ିତ ମୂଲ୍ୟବାନ ସିଂହାସନ ସ୍ଥାପିତ ହୋଇଥିଲା । କୁମାରଙ୍କୁ ସେଥିମଧ୍ୟରୁ ଗୋଟିଏ ସିଂହାସନ ଉପରେ ବସାଇ ଧ୍ରୁବଦେବୀ ଅନ୍ୟ ଆସନରେ ଅଧିଷ୍ଠିତ ହେଲେ । ପ୍ରେମର ଅତୁଳନୀୟ ଆହ୍ଲାଦୀୟ ମୁହୂର୍ତ୍ତକୁ ଯେମିତି ହାତ ମୁଠାରେ ଜଡ଼େଇ ରଖିବା ପାଇଁ ମହାଦେବୀ ଆପ୍ରାଣ ପ୍ରୟାସ କରୁଥିଲେ । ଗୁଣୁଗୁଣୁ ହୋଇ ନିଜ ଭଲପାଇବାର କଳନାକୁ କୁମାରଙ୍କ ଅସ୍ତିତ୍ୱ ଭିତରେ ଚହଟେଇ ଦେବାକୁ ଅସ୍ଥିର ହେଉଥିଲେ । ସେମିତି ଘୁମନ୍ତ ଘୁମନ୍ତ ସ୍ୱରରେ କହିଲେ-"କୁମାର ! ମୋର ପ୍ରାଣର କୁମାର ! ଆଜି ସବୁ ଅଧାଲୁଚା ଅଧାଦେଖା ଅବ୍ୟକ୍ତ ଅନୁଭବର ବନ୍ଧନ ଖୋଲିଯିବ । ଏ ସମସ୍ତ ମିଛମୁଖା, ମିଛ ଆଶ୍ୱସନା, ମିଛ ଆଶାର ହାତଧରି ଏ ସମସ୍ତ ମିଛ ଭିତରୁ ମତେ ବାଟ କଢ଼େଇ ଆଗକୁ ନେଇଚାଲ । ଏଇଟା ମୋର ଇଚ୍ଛା ଖାଲି ନୁହେଁ ମୋର ଅଝଟପଣ । ମୋର ନିଃଶବ୍ଦ ଅନୁରାଗର ଅନ୍ତିମତମ ଅର୍ପଣ ତୁମ ପ୍ରତି କୁମାର ! ମତେ ଭୁଲ୍ ବୁଝିବନି ।"

ଚନ୍ଦ୍ରଗୁପ୍ତ ମୁଗ୍ଧ ଦୃଷ୍ଟିରେ ଯେମିତି ଧ୍ରୁବଦେବୀଙ୍କୁ ପିଇ ଯାଉଥିଲେ । ଏହି ସମୟରେ ଇନ୍ଦ୍ରଦେବ ଝଡ଼ଭଳି ଦୁର୍ଗ ଭିତରେ ପ୍ରବେଶ କଲେ । ଅତ୍ୟନ୍ତ ବ୍ୟସ୍ତ ବିବ୍ରତ ହୋଇ ସେ କହିଲେ-"କୁମାର ! ଶକ ଦୁର୍ଗ ଉପରେ ଆପଣଙ୍କର ବିଜୟ ବାର୍ତ୍ତା ଶୁଣି ମହାରାଜ ମଧ୍ୟ ଏଠାକୁ ଆସି ପହଞ୍ଚିଗଲେଣି, ଦ୍ୱାର ପାଖରେ ସେ ଉପସ୍ଥିତ ରହି ଆପଣଙ୍କୁ ଖୋଜୁଛନ୍ତି ।"

କୁମାର କହିଲେ- "ତାଙ୍କୁ ବାହାରେ ହିଁ ଅଟକାଇ ରଖ । ଅମାତ୍ୟ ଯଦି ତାଙ୍କ ସଙ୍ଗରେ ଅଛନ୍ତି ତାଙ୍କୁ ମଧ୍ୟ ଅଟକାଅ । ସେମାନେ ଯେମିତି ଭିତରକୁ ପ୍ରବେଶ କରିନପାରନ୍ତି ।"

-"ଯାହା ଆଜ୍ଞା..." କହି ଇନ୍ଦ୍ରଦେବ ବାହାରକୁ ଚାଲିଗଲେ । ଏହି ସମୟରେ ପୁରୋହିତ କେଉଁଠି ଥିଲେ ଆସି ପହଞ୍ଚିଗଲେ । ପୁରୋହିତଙ୍କୁ ଦେଖି ଧ୍ରୁବଦେବୀ ରାଗରେ ଜଳିଉଠିଲେ- "ଆପଣ ଏଠି କ'ଣ କରିବାକୁ ପହଞ୍ଚିଗଲେ ପଣ୍ଡିତ ମହୋଦୟ ।"

ପୁରୋହିତ ଶାନ୍ତ ସ୍ୱରରେ କହିଲେ- "ଦେବୀ ! ଆପଣଙ୍କର ପତି ଅଗ୍ନିକୁ ସାକ୍ଷୀ ରଖିଥିବା ପ୍ରତିଜ୍ଞାକୁ ଭଙ୍ଗକରି ଆପଣଙ୍କୁ ଉପହାର ଭାବରେ ଦେଇଥିଲେ । କେବଳ କୁମାର ଚନ୍ଦ୍ରଗୁପ୍ତଙ୍କର ସାହସ ବୀରତ୍ୱ ଓ କୁଶଳତା ପାଇଁ ଆପଣଙ୍କୁ ଶକରାଜ ପାଖକୁ ପଠାଇବାକୁ ନିବୃତ୍ତ କରାଇବାରେ ସକ୍ଷମ ହୋଇଥିଲେ । ଅବଶ୍ୟ ଏଇଟା ଅଲଗା କଥା । ଶାରୀରିକ ଭାବରେ ଶକରାଜଙ୍କ ନିକଟକୁ ଆପଣ ନଗଲେ ମଧ୍ୟ ଆପଣଙ୍କର ନାମ ଧର୍ମଶାସ୍ତ୍ର ଅନୁସାରେ ଶକରାଜଙ୍କ ସହିତ ଯୋଡ଼ିହୋଇଯାଇଛି । ହିନ୍ଦୁ ନାରୀର ନିଜ ପତି

ବ୍ୟତୀତ ଅନ୍ୟକୌଣସି ପୁରୁଷର ନାମ ନେବା ମଧ୍ୟ ତାଙ୍କର ଯଶ ପ୍ରତି କଳଙ୍କ ଲଗାଇଲା ଭଳି ହୋଇଥାଏ । ତେଣୁ ମହାରାଜ ମତେ ଆପଣଙ୍କ ନିକଟକୁ ଶୁଦ୍ଧି କରିବାପାଇଁ ପଠାଇଛନ୍ତି । କାରଣ ଏହି ପରିସ୍ଥିତିରେ ଭଟ୍ଟାରକଙ୍କର ମହାଦେବୀ ଭାବରେ ପୁନଃ ଅବସ୍ଥାପିତ ହେବାକୁ ହେଲେ, ଆପଣଙ୍କର ଶୋଧନ ନିତାନ୍ତ ଆବଶ୍ୟକ ।''

ପୁରୋହିତଙ୍କର ଏହିଭଳି ଅର୍ଥହୀନ ଧର୍ମର ବ୍ୟାଖ୍ୟା ଓ ନିଜପ୍ରତି ଅପମାନ ସୂଚକ ମନ୍ତବ୍ୟ ଶୁଣି ମହାଦେବୀ ତେଇଁପଡ଼ିଲେ ''–ଠକ, ବଦ୍‌ମାସ, ମୂର୍ଖ । ଯା' ଏଠୁ ବାହାର । ମୋର କୌଣସି ସ୍ୱାମୀ କି ପ୍ରଭୁ କେହିନାହାନ୍ତି । ମୁଁ କାହାର ମହାଦେବୀ ନୁହେଁ । ମୁଁ ଉପହାରରେ ଦେଲାଭଳି ଏକବସ୍ତୁ କେବଳ । ସୁତରାଂ ଉପହାର ଦେଇସାରିଲା ପରେ ଉପହାର ଦେଲାବାଲାର କୌଣସି ଅଧିକାର ନାହିଁ ।''

ପୁରୋହିତ କହିଲେ– ''ଦେବୀ ! ପ୍ରତ୍ୟେକ ମଣିଷ ପରିସ୍ଥିତିର ଦାସ । ସମୟ ସହିତ ପାଦଦେଇ ଚାଲୁଥିବା ବ୍ୟକ୍ତି କଦାପି ଦୋଷୀ ହୋଇପାରିବ ନାହିଁ । ଏତେସବୁ ହେଲାପରେ ମଧ୍ୟ ଭଟ୍ଟାରକ ଆପଣଙ୍କୁ ହିଁ ମହାଦେବୀ ବୋଲି ମାନୁଛନ୍ତି ।''

ଧ୍ରୁବଦେବୀ ରାଗରେ ନିଆଁ ହୋଇ କହିଲେ–''ମୁଁ ତୁମର ଭଟ୍ଟାରକ ଉପରେ ଛେପ ପକାଉଛି । ଯେଉଁ ବ୍ୟକ୍ତି ପାଷାଣ୍ଡଠାରୁ ମଧ୍ୟ ନୀଚ ସେ ମୋର କେବେହେଲେ ପତି ହୋଇନାହିଁ କି ହୋଇପାରିବ ନାହିଁ । ମୁହଁ ଖୋଲି ପାରୁନଥିବା ପଶୁ ଭଳି ମତେ ଶିକୁଳି ପିନ୍ଧେଇ ଯେଉଁ ବ୍ୟକ୍ତି ମତେ ଅନ୍ୟ ପୁରୁଷ ହାତରେ ଦେଇଦିଏ କେବଳ ନିଜର ପ୍ରାଣରକ୍ଷା କରିବା ପାଇଁ ସେଭଳି ନିର୍ଲ୍ଲଜ ବ୍ୟକ୍ତି କଦାପି ମୋର ସ୍ୱାମୀ ନୁହେଁ । ମୁଁ ତାକୁ ମୋର ନାରୀତ୍ୱ ରକ୍ଷା ପାଇଁ କେତେ କାକୁତିମିନତି କରିଛି ଅଥଚ ସେ କାପୁରୁଷ ପାଖରେ ଏତେ ଟିକେ ସାହାସ ମଧ୍ୟ ନଥିଲା । ନିଜକୁ ରକ୍ଷା କରିବାପାଇଁ ଓଲଟି ମତେ ଶକରାଜ ପାଖକୁ ପଠାଇବାକୁ ପ୍ରାଣାନ୍ତକ ଉଦ୍ୟମ କରିଥିଲା । ତା' ଉପରେ ପୁଣି ତୁ ମୂର୍ଖ ମତେ ଶୁଦ୍ଧି କରିବାକୁ ଆସିଛୁ । ଯା' ପଳା ଏଠୁ ।''

–''ଦେବୀ ! ଆପଣ ଏଭଳି କଥାବାର୍ତ୍ତା କରି ହିନ୍ଦୁନାରୀର ଧର୍ମ ଓ କର୍ତ୍ତବ୍ୟକୁ ପୂର୍ଣ୍ଣଭାବରେ ଲଙ୍ଘନ କରୁଛନ୍ତି ।''

–''ପୁରୋହିତ ! ତୁମର ଧର୍ମ, ଧର୍ମଶାସ୍ତ୍ର, ବେଦାନ୍ତ, କର୍ମକାଣ୍ଡ ସବୁ ମିଥ୍ୟା । ତୁମେ ନିଜେ ମିଛର ଅବତାର ।''

ପୁରୋହିତ ହସିଲେ, ''ଦେବୀ ! ଆପଣ ତ ଦାର୍ଶନିକ ଭଳି ବିଚାର କରୁଛନ୍ତି । ବେଦାନ୍ତର କଥା କହୁଛନ୍ତି । ବେଦାନ୍ତ ଅନୁସାରେ ସାରାଜଗତ ମିଥ୍ୟା । କିନ୍ତୁ... ''

-''କିନ୍ତୁ ଫିନ୍ତୁ କିଛି ନାହିଁ ପୁରୋହିତ । ତୁମେ ଯେଉଁ ରାକ୍ଷସ ସହିତ ମୋର ବିବାହ କରାଇଥିଲ, ତାହା ଦ୍ୱାରା ମୁଁ ଅତ୍ୟନ୍ତ ଅପମାନ ଓ ଯନ୍ତ୍ରଣା ପାଇସାରିଛି, ତେଣୁ ସେହି ସମସ୍ତ ଅର୍ଥହୀନ ବନ୍ଧନରୁ ମୁଁ ମୁକ୍ତି ଚାହୁଁଛି । ମୁଁ ଜାଣିବାକୁ ଚାହୁଁଛି ଏହି ମୁକ୍ତିର ମାର୍ଗ ଯଦି ଅଛି ତା'ହେଲେ କହ ।''

ପୁରୋହିତ ଧ୍ରୁବଦେବୀଙ୍କର ପ୍ରବଳ ପ୍ରତିକ୍ରିୟାରେ ଏକଦମ୍ ଡରିଗଲେ । ତେଣୁ ଡରିଡ଼ରି କହିଲେ- ''ଦେବୀ ! ସେସବୁ ମୁଁ ପୁସ୍ତକ ଦେଖିଲାପରେ ହିଁ ଆପଣଙ୍କୁ ଜଣାଇପାରିବି ।''

-''ତା'ହେଲେ ଯାଅ । ନିଜର ଧର୍ମଶାସ୍ତ୍ରର ପୃଷ୍ଠା ଓଲଟାଅ । ଯଦି ଏହି କାପୁରୁଷଠାରୁ ମୋର ମୁକ୍ତିର କୌଣସି ମାର୍ଗ ବିଷୟରେ ଲେଖାହୋଇଛି, ତେବେ ଏଠାକୁ ଆସିବ । ଅନ୍ୟଥା ଏଠିକି ଦ୍ୱିତୀୟଥର ଆସିବାରେ କଳ୍ପନା ମଧ୍ୟ କରିବ ନାହିଁ । ମୋର ଶୁଦ୍ଧି ନୁହେଁ ମୁକ୍ତିର ମାର୍ଗ ଆବଶ୍ୟକ ।''

ପୁରୋହିତ ମୁହଁ ତଳକୁ କରି ସେଠାରୁ ଚାଲିଗଲେ । ବାହାରେ ଖୁବ୍ କୋଳାହଳ ଶୁଭିଲା । ଧ୍ରୁବଦେବୀ ସନ୍ଦିଗ୍ଧ ସ୍ୱରରେ ଚନ୍ଦ୍ରଗୁପ୍ତଙ୍କୁ କହିଲେ-''କୁମାର ! ଏଇଟା କି ପ୍ରକାର ଗୋଳମାଳ ଶୁଭୁଛି ?''

-''ଦେବୀ ! ବଡ଼ ଅନର୍ଥ ହୋଇଗଲା । ଭଟ୍ଟାରକ ବଳପୂର୍ବକ ଦୁର୍ଗ ମଧ୍ୟକୁ ପ୍ରବେଶ କରୁଛନ୍ତି । ସେ ଦୁର୍ଗ ବାହାରେ ଥିବା ନିରୀହ ଶକଜନ ସାଧାରଣଙ୍କୁ ହତ୍ୟା କରୁଛନ୍ତି ।'' ଜଣେ ମାଗଧୀ ସୈନ୍ୟ କକ୍ଷ ବାହାରେ ଥାଇ କହିଲା ।

କୁମାର ଚନ୍ଦ୍ରଗୁପ୍ତ ଚିନ୍ତିତ ହୋଇ କହିଲେ- ''ଏମିତି କାହିଁକି କରୁଛନ୍ତି ଭଟ୍ଟାରକ ?''

ସୈନିକ କହିଲା -''ମୁଁ କ'ଣ କହିପାରିବି କୁମାର ! ସେ ଆଚାର୍ଯ୍ୟ ବିଷ୍ଣୁଦତ୍ତ ଓ ତାଙ୍କର ପାଳିତା କନ୍ୟାଙ୍କୁ ମଧ୍ୟ ନୃଶଂସ ଭାବରେ ହତ୍ୟା କରିସାରିଲେଣି । ସେ ଅତ୍ୟନ୍ତ ଭୟଙ୍କର ଦେଖାଯାଉଛନ୍ତି । ସେ ଯଦି ବେଶି ସମୟ ବାହାରେ ରହନ୍ତି ତେବେ ଆଉ କେଉଁ ଅନର୍ଥ ଘଟାଇବେ, କିଏ ଜାଣେ ?''

ଧ୍ରୁବଦେବୀ ଚିନ୍ତିତ ହୋଇ ଥକିଗଲା ଭଳି ସୈନିକକୁ କହିଲେ- ''ଭଟ୍ଟାରକଙ୍କୁ ଦୁର୍ଗ ଭିତରକୁ ଆସିବାକୁ ଦିଅ ।''

ଚନ୍ଦ୍ରଗୁପ୍ତ କହିଲେ-'' ଇନ୍ଦ୍ରଦେବ ତଥା ଅନ୍ୟ ସୈନ୍ୟସାମନ୍ତ ମାନଙ୍କୁ ମଧ୍ୟ ସାଙ୍ଗରେ ଆସିବାକୁ କହିବ ।''

ସୈନିକ ଅଭିବାଦନ କରି ଚାଲିଗଲା । କିଛି ସମୟ ମଧ୍ୟରେ ଅମାତ୍ୟଙ୍କୁ ସାଙ୍ଗରେ ନେଇ ରାମଗୁପ୍ତ ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କଲେ । ତାଙ୍କ ପଛର ଇନ୍ଦ୍ରଦେବ ଏବଂ କେତେକ ସୈନ୍ୟ ମଧ୍ୟ ଆସିଥିଲେ । ପ୍ରକୋଷ୍ଠ ଭିତରକୁ ଆସି ରାମଗୁପ୍ତ ଉତ୍ସାହିତ ହୋଇକହିଲେ–" ମହାଦେବୀଙ୍କର ଜୟହେଉ । ମୋ ପାଇଁ ଗୋଟିଏ ହେଲ ଆସନ ଏଠାରେ ସ୍ଥାପିତ ହୋଇନାହିଁ ? ଗୋଟିଏ ସିଂହାସନ ଉପରେ ମହାଦେବୀ, ଅନ୍ୟଟିରେ କୁମାର ବସିଛନ୍ତି । ମୁଁ କେଉଁଠି ବସିବି ? ଏ କୁମାର ତୁମେ ଏଠାରୁ ଉଠିଯାଅ, ଦେଖୁନ କି କିଏ ଆସିଛନ୍ତି ?"

କୁମାର ରୁକ୍ଷ ଅଥଚ ଦୃଢ଼ ସ୍ୱରରେ କହିଲେ– "କିଏ ଆସିଛି ?"

–"ଭଟ୍ଟାରକ... କ'ଣ ଚିହ୍ନିପାରୁନ ?"

–"ଚିହ୍ନିତ ପାରୁଛି । ଆପଣ ମଗଧର ମହାରାଜ ହୋଇପାରନ୍ତି । ଏହି ଦୁର୍ଗ ଓ ରାଜ୍ୟ ଉପରେ କେବଳ ମହାଦେବୀଙ୍କର ଅଧିକାର ଅଛି । ଏଠାରେ କିଏ କେଉଁ ଆସନରେ ବସିବେ, ତାହା ସେ ହିଁ ନିର୍ଣ୍ଣୟ କରୁଛନ୍ତି । ମୁଁ କେବଳ ତାଙ୍କ ଆଦେଶରେ ଏଠାରେ ବସିଛି । ମତେ ଏଠାରୁ ଉଠାଇବାକୁ ହେଲେ ପ୍ରଥମେ ମହାଦେବୀଙ୍କର ଅନୁମତି ପ୍ରାପ୍ତ କରନ୍ତୁ ।"

ରାମଗୁପ୍ତ ମୁହଁ ଫୁଲାଇ କହିଲେ–" କୁମାର ! ତୁମେ ମୁଣ୍ଡରେ ବହୁତ ଚଢ଼ିଗଲଣି । ଗୋଟିଏ ଛୋଟ ବିଜୟ କ'ଣ ପାଇଗଲ ବୋଲି ଆକାଶକୁ ଛୁଇଁଗଲଣି ।" ଧ୍ରୁବଦେବୀଙ୍କ ଆଡ଼କୁ ଚାହିଁ କହିଲେ–"ମହାଦେବୀ ! କୁମାରଙ୍କୁ କୁହ ସେ ଆସନରୁ ଉଠିଆସିବ ।"

ମହାଦେବୀ ପଚାରିଲେ– "କାହିଁକି ?"

–"ଏଥିପାଇଁ କି ଯେ ଆସନର ପ୍ରକୃତ ଅଧିକାରୀ ଅର୍ଥାତ୍ ତୁମର ପତିଦେବ ଆସିଯାଇଛନ୍ତି ।"

ମହାଦେବୀ ଆଶ୍ଚର୍ଯ୍ୟ ହୋଇ କହିଲେ– "ମୋର ସ୍ୱାମୀ ? କିଏ ? ଯିଏ ମତେ ଶକରାଜ ହାତରେ ଅର୍ପଣ କରିବାର ସବୁ ପ୍ରକାର ଉଦ୍ୟମ କରିଥିଲେ ?"

ମହାଦେବୀଙ୍କର କଟୁ ବ୍ୟଙ୍ଗ ବାଣରେ ମଧ୍ୟ ରାମଗୁପ୍ତଙ୍କର କୌଣସି ପ୍ରତିକ୍ରିୟା ନଥିଲା ବରଂ ନିର୍ଲ୍ଲଜ ଭାବରେ ହେ ହେ ହୋଇ ହସିଉଠିଲେ–"ବାଃ ମହାଦେବୀ । ତୁମେ ଆଜି ପର୍ଯ୍ୟନ୍ତ ସେ କଥା ମନେ ରଖିଛ ? ମୁଁ ତ କେବେଠାରୁ ସେ କଥା ଭୁଲିଗଲିଣି । ଆମର ସୁଖୀ ଦାମ୍ପତ୍ୟ ଜୀବନ ପାଇଁ ତୁମେ ସେସବୁ କଥା ଭୁଲିଯିବା ନିହାତି ଆବଶ୍ୟକ ।"

-''ମୁଁ ତ ଭୁଲି ଯାଇଛି । କିନ୍ତୁ ଆପଣ ଏକବାରେ ଭୁଲିଯାନ୍ତୁ, ମୁଁ ଆପଣଙ୍କର ମହାଦେବୀ ବୋଲି । ଏହି ଦୁର୍ଗ ପ୍ରତି ମଧ ଆପଣଙ୍କ ହୀନଦୃଷ୍ଟି ଯେପରି ନ ରହେ । ଏହି ଦୁର୍ଗ ବର୍ତ୍ତମାନ ମୋର ଓ କୁମାରଙ୍କର କେବଳ ନୁହେଁ ସେହି ସମସ୍ତ ସୈନିକମାନଙ୍କର ଯେଉଁମାନେ ନିଜର ଜୀବନକୁ ବାଜି ଲଗେଇ ଏହି ଦୁର୍ଗକୁ ହାସଲ କରିଛନ୍ତି ।''

ଏସବୁ ଶୁଣି ରାମଗୁପ୍ତ ରାଗିଗଲେ-'' ଆଚ୍ଛା ! ତା'ହେଲେ ଏହି କଥା । ଅମାତ୍ୟ ! ଦେଖୁଛନ୍ତି ତ । ଦୁଇଜଣଙ୍କର ମନର ପାପ କେମିତି ସାମ୍ନାକୁ ଆସୁଛି । କିନ୍ତୁ ମୁଁ ଏ ପର୍ଯ୍ୟନ୍ତ ବଞ୍ଚିଛି । ମୁଁ ଥାଉ ଥାଉ ମୋର ପତ୍ନୀ ପରପୁରୁଷ ସହିତ ସହବାସ କରିବ ଏହା କଦାପି ହୋଇପାରିବ ନାହିଁ ।'' ତା'ପରେ ତାଳି ବଜାଇ କହିଲେ- ''ସୈନିକଗଣ !'' ଏହି ଦୁଇଜଣ ଦୋଷୀ ପ୍ରେମିକ ପ୍ରେମିକାଙ୍କୁ କାରାଗାରରେ ବନ୍ଦୀ କରାଯାଉ ।'' କିନ୍ତୁ ରାମଗୁପ୍ତଙ୍କର ଆଦେଶ ଶୁଣିଲାପରେ ମଧ କୌଣସି ସୈନିକ ଆଗକୁ ବଢ଼ିଲେ ନାହିଁ । ସମସ୍ତେ ଯଥା ସ୍ଥାନରେ ଛିଡ଼ା ହୋଇଥା'ନ୍ତି । ସେ ଡରିଯାଇ କୁମାର ଓ ମହାଦେବୀଙ୍କ ଆଡ଼କୁ ଅନେଇଲେ । ଦୁହେଁ ହସୁଥା'ନ୍ତି । ରାମଗୁପ୍ତ ଚିତ୍କାରକରି ଉଠିଲେ- ''ଅମାତ୍ୟ ! ବିଦ୍ରୋହ ସୃଷ୍ଟି ହେଲାଣି । ମୋ ବିରୁଦ୍ଧରେ ଭୟଙ୍କର ଷଡ଼ଯନ୍ତ୍ର ହେଉଛି । ମୋର ସୈନ୍ୟବାହିନୀ ସମସ୍ତେ ବିଶ୍ୱାସଘାତ କରିଛନ୍ତି । ଏବେ ମୁଁ କ'ଣ କରିବି ?''

ଅମାତ୍ୟ ପରାଜିତ ଭଳି ଧୀର ସ୍ୱରରେ କହିଲେ- ''ଭଟ୍ଟାରକ ! ଆପଣ ଶାନ୍ତ ହୁଅନ୍ତୁ । କ'ଣ ହେଉଛି ଅପେକ୍ଷା କରନ୍ତୁ । ଏହି ସମୟରେ ଆମେ ଦୁଇଜଣ ବନ୍ଦୀ ଛଡ଼ା କିଛି ନୋହୁଁ ।''

ରାମଗୁପ୍ତ ଆହୁରି ଚିତ୍କାର କରିଉଠିଲେ -''ବନ୍ଦୀ ? କିଏ ଆମକୁ ବନ୍ଦୀ କରିବ ଦେଖିବା ? ତା'ର ରକ୍ତ ପିଇଯିବି ।'' ପାଗଳ ଭଳି ସେ ଚାରିଆଡ଼କୁ ବୁଲି ବୁଲି ଦେଖିବାକୁ ଲାଗିଲେ । ଯେମିତି କୌଣସି ଜଣେ ସୈନିକ ଆଗେଇ ଆସି ତାଙ୍କୁ ବନ୍ଦୀ କରିଦେବ । କିନ୍ତୁ କେହି ହେଲେ ଆସିଲେ ନାହିଁ । କିନ୍ତୁ ସେମାନଙ୍କ ଓଠରେ ବ୍ୟଙ୍ଗାତ୍ମକ ହସ ଖେଳିଗଲା । ରାମଗୁପ୍ତଙ୍କର ଦେହରେ ଯେମିତି ନିଆଁଚେଙ୍ଗ ଲାଗିଗଲା-''ହସ ହସ ଆହୁରି ଜୋର୍‌ରେ ହସ । କିଛି ସମୟ ମଧରେ ମୁଁ ସମସ୍ତଙ୍କୁ ଦେଖିନେବି । କ'ଣ ତୁମେମାନେ ମତେ ଭାବିଛ କି ? କାପୁରୁଷ ? ଏବେ ମଜା ଚଖାଉଛି ସମସ୍ତଙ୍କୁ !''

ପୁରୋହିତ ଏମିତି ପାଟିତୁଣ୍ଡ ସମୟରେ ସେଠାରେ ପ୍ରବେଶ କଲେ । ଅଭିଭାଦନ ଜଣାଇଲେ - ''ମହାରାଜଙ୍କର ଜୟ ହେଉ । ଆପଣ ଏତେ ବିବ୍ରତ କାହିଁକି ?''

ରାମଗୁପ୍ତ କହିଲେ-''ପଣ୍ଡିତ ମହାଶୟ ! ମୋ ସହିତ ଛଳକପଟ କରାଯାଇଛି ।''

ପୁରୋହିତ ନୀରବ ରହିଲେ । ଧ୍ରୁବଦେବୀ ଧଡ଼କିନା ପଚାରିଲେ,–"ପଣ୍ଡିତେ ! ଆପଣ ସବୁ ଧର୍ମଶାସ୍ତ୍ର ଦେଖି ଆସିଲେ ତ ?"

ପୁରୋହିତ କହିଲେ– "ହଁ, ଦେବୀ !"

–"କୌଣସି ଉପାୟ ଅଛି ?"

ପୁରୋହିତ ନୀରବ ରହିଲେ । ଧ୍ରୁବଦେବୀ ଧଡ଼କେଇ ପଚାରିଲେ– "କହୁନ କାହିଁକି ? ଜିଭକୁ କ'ଣ ଛିଣ୍ଡାଇ ପକାଇଲେ କି ? ସେଥିରେ ପୁଣି ନିଜେ ଧର୍ମର ନିୟାମକ ବୋଲାଉଛ । ନାରୀମାନଙ୍କ ପାଇଁ ସେମାନଙ୍କ ଇଚ୍ଛା ବିରୁଦ୍ଧରେ ଧର୍ମର ଦ୍ୱାହି ଦେଇ, ବିବାହ ନାଟକ ନାଗଫାଶ ବନ୍ଧନ ପକାଇ ଦେଇ, ସମସ୍ତ, ଅଧିକାର ଛଡ଼େଇ ନେଇ ସେମାନଙ୍କୁ ଜୋର ଜବରଦସ୍ତି ଭାବରେ ମୂକ, ବଧିର କରିଦିଆଯାଉଛି । ବିବାହର ଅଗ୍ନିଚକ୍ର, ଶାଶୁଘର, ସ୍ୱାମୀର ଅତ୍ୟାଚାରରୁ ମୁକ୍ତ ହେବାପାଇଁ ନିଜର ଆତ୍ମରକ୍ଷା ପାଇଁ କେଉଁଠି ଆଶ୍ରୟ ସେ ମାଗିବ ବୋଲି ବ୍ୟବସ୍ଥା କରିଛି କି ? ନା ଖାଲି ଆଶ୍ୱସନା ଦେଇ ଭବିଷ୍ୟତର ସୁନେଲି ସ୍ୱପ୍ନର ସମ୍ଭାବନା ଦେଖାଇ ଚୁପ୍ ହୋଇଯାଇଛ ? ତେଣୁ ତୁମକୁ ଏହାର ଉତ୍ତର ଦେବାକୁ ପଡ଼ିବ ପଣ୍ଡିତ ପ୍ରବର !"

ମହାଦେବୀଙ୍କର ଅକାଟ୍ୟ ଯୁକ୍ତିକୁ କାଟିବା ତାଙ୍କ ପକ୍ଷରେ ସମ୍ଭବପର ନଥିଲା । – "ନା, ମହାଦେବୀ ! ପତିପତ୍ନୀଙ୍କର ପରସ୍ପର ପ୍ରତି ବିଶ୍ୱାସ, ସଦ୍‌ଭାବନା, ସହଯୋଗର ନାମ ହିଁ 'ପାଣିଗ୍ରହଣ' । ଯଦି ଏଥିରେ ତ୍ରୁଟି ରହୁଛି ତେବେ ବିବାହକୁ କଦାପି ସଫଳ ଦାମ୍ପତ୍ୟ ବନ୍ଧନ ବୋଲି କୁହାଯାଇପାରିବ ନାହିଁ ।"

ଧ୍ରୁବଦେବୀ କଥାକୁ କାଟି କହିଲେ –"ସେ ଯାହା ବି ହେଉ, ମୁଁ ତୁମକୁ ପଚାରୁଛି ତୁମର ଧର୍ମଶାସ୍ତ୍ରରେ ଜଣେ କ୍ଳୀବ ପତି ଠାରୁ ପ୍ରଥମଥର ପାଇଁ ପରିତ୍ୟକ୍ତ ହୋଇଥିବା ପତ୍ନୀ କ'ଣ ପୁଣିଥରେ ତାକୁ ଗ୍ରହଣ କରି ବିଷପାନ କରିବ ନା ମୁକ୍ତିର ବାଟ ଖୋଜିବ ସେ ସେଠାରୁ ବିଷୟରେ କିଛି ଆଲୋଚନା ହୋଇନାହିଁ କି ?"

ପୁରୋହିତ ଆଶ୍ଚର୍ଯ୍ୟ ହୋଇ ଚମକି ପଡ଼ିଲେ–"କ'ଣ କହୁଛନ୍ତି ? କ୍ଳୀବ ? ଅର୍ଥାତ୍ ପୁରୁଷତ୍ୱହୀନ ?"

ଧ୍ରୁବଦେବୀ କହିଲେ– "ହଁ !"

ପୁରୋହିତ ଲଜ୍ଜିତ କଣ୍ଠରେ କହିଲେ– "ଏହି ବିଷୟକୁ ମୁଁ ଦେଖିନାହିଁ କି ଆଲୋଚନା କରିନାହିଁ ?"

–''ତା'ହେଲେ ପୁଣି ଯା'ନ୍ତୁ ନିଜର ଶାସ୍ତ୍ର ସବୁକୁ ଘାଣ୍ଟନ୍ତୁ ।'' ପୁରୋହିତ କହିଲେ– ''ମୋର ଯିବାର ଆବଶ୍ୟକତା ନାହିଁ ମହାଦେବୀ ! ମୁଁ ମୋର ଧର୍ମଶାସ୍ତ୍ର ଗୁଡ଼ିକୁ ନେଇଆସିଛି ।'' ନିଜର ମୁଣିରୁ ଗୋଟିଏ ମୋଟା ପୁସ୍ତକ ବାହାର କରି ପୃଷ୍ଠା ପତ୍ର ଓଲଟାଇଲେ । ବାତାବରଣଟି ପୂରାପୂରି ନୀରବ ହୋଇଗଲା । କିଛି ସମୟ ପରେ ପୁରୋହିତ ମୁଣ୍ଡ ଉପରକୁ ଉଠାଇ ଚାରିଆଡ଼କୁ ଚାହିଁ କହିଲେ –''ଉପସ୍ଥିତ ସଜ୍ଜନମଣ୍ଡଳୀ ! ବିବାହର ସମ୍ପର୍କ ପତିପତ୍ନୀଙ୍କର ପରସ୍ପର ପ୍ରତି ପ୍ରେମ, ସହଯୋଗ ଓ ବିଶ୍ୱାସ ଉପରେ ପ୍ରତିଷ୍ଠିତ ହୋଇଥାଏ । ଏତକ ନରହିଲେ ବିବାହ ଅସଫଳ ହୋଇଯାଏ । କିନ୍ତୁ ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ବିବାହିତା ହିନ୍ଦୁପତ୍ନୀର କଳହଜନିତ ଅଶାନ୍ତି ପରିସ୍ଥିତି ସୃଷ୍ଟି ହେଲେ ମଧ୍ୟ ପତିକୁ ପରିତ୍ୟାଗ କରାଯାଏ ନାହିଁ । ଏଭଳି ମଧ୍ୟ ଲେଖାଯାଇଛି ଯେ ବିବାହର ଆଠବର୍ଷ ମଧ୍ୟରେ ଯଦି ପତ୍ନୀ ବନ୍ଧ୍ୟା ହୁଏ, କିମ୍ବା ଦଶବର୍ଷ ମଧ୍ୟରେ ବାରମ୍ବାର ପତ୍ନୀ ସନ୍ତାନ ଜନ୍ମକରି ମଧ୍ୟ ତା'ର ସନ୍ତାନ ମୃତ୍ୟୁବରଣ କରେ ଓ ବାରବର୍ଷ ମଧ୍ୟରେ ପତ୍ନୀ କେବଳ କନ୍ୟାସନ୍ତାନ ଜନ୍ମକରେ ତେବେ ତା'କୁ ପତି ପରିତ୍ୟାଗ କରିପାରିବ ।''

ପୁରୋହିତଙ୍କ ଏସବୁ ତଥ୍ୟ ଶୁଣିଲାପରେ ଧ୍ରୁବଦେବୀ କହିଲେ–''ପଣ୍ଡିତେ ! ଏଠାକୁ ମୁଁ ତୁମକୁ ପୁରୁଷର ଅଧିକାର ସାବ୍ୟସ୍ତ ପାଇଁ ମତ ଦେବାକୁ ଡାକିନଥିଲି । ନାରୀ ମାନଙ୍କର କ'ଣ ଅଧିକାର ଅଛି ଆଗ କୁହ ।''

ପୁରୋହିତ ହାତ ଦେଖାଇ କହିଲେ –''ଧୈର୍ଯ୍ୟ ରଖନ୍ତୁ ମହାଦେବୀ ! ବର୍ତ୍ତମାନ ନାରୀମାନଙ୍କର ଅଧିକାର ବିଷୟରେ କହୁଛି । ଧର୍ମଶାସ୍ତ୍ର କହୁଛି ଯେ ପତ୍ନୀ ସହିତ ପତିର ଶାରୀରିକ ସମ୍ପର୍କ ହେବା ପୂର୍ବରୁ ଯଦି ପତି ମରିଯାଏ, ବା ପତି ନୀଚକୁଳର ହୋଇଥାଏ ବା ପତି ପତ୍ନୀକୁ ଶାରୀରିକ ଆକ୍ରମଣପୂର୍ବକ ମାରିବାକୁ ଉଦ୍ୟମ କରେ କିମ୍ବା କ୍ଲୀବ ନପୁଂସକ ହୋଇଥିଲେ ଏସବୁଥିରୁ ଯଦି ଗୋଟିଏ ଘଟଣାରେ ମଧ୍ୟ ପତି ଦୋଷୀ ସାବ୍ୟସ୍ତ ହୁଏ ତେବେ ପତ୍ନୀ ପତିଠାରୁ ମୁକ୍ତି ପାଇପାରିବ ।''

ଧ୍ରୁବଦେବୀ ପଚାରିଲେ–''ତା'ହେଲେ ଏହି କ୍ଷେତ୍ରରେ ତୁମର କେଉଁ ବ୍ୟବସ୍ଥାଟି ଲାଗୁହେବ ?''

ପୁରୋହିତ ଥରେ ରାମଗୁପ୍ତଙ୍କ ଆଡ଼କୁ ଚାହିଁଦେଇ ଧ୍ରୁବଦେବୀଙ୍କୁ କହିଲେ– ''ଇଏ ମୃତ କିମ୍ବା ଦେଶରୁ ବିତାଡ଼ିତ ହୋଇଥିବାର ଦଣ୍ଡ ଭୋଗୁନାହାନ୍ତି । କିନ୍ତୁ ଆତ୍ମସମ୍ମାନ ବିହୀନ, ଆଚରଣରେ ଅଭଦ୍ର ବ୍ୟବହାର, ଭାଷା ଅଶ୍ଳୀଳ ଏବଂ କର୍ମରେ କ୍ଲୀବ ଅଟନ୍ତି । ତେଣୁ ଧର୍ମଶାସ୍ତ୍ର ଅନୁସାଙ୍କର ମହାଦେବୀଙ୍କୁ ମହାରାଜ ମୁକ୍ତିର ଆଦେଶ ଦେଇପାରିବେ ।

ନିୟମ ଅନୁସାରେ ମହାଦେବୀଙ୍କର ଇଚ୍ଛା ବା ସମ୍ମାନ ବିରୁଦ୍ଧରେ ମହାରାଜଙ୍କର କୌଣସି ଅଧିକାର ସାବ୍ୟସ୍ତ ହୋଇପାରିବ ନାହିଁ ।"

ପୁରୋହିତଙ୍କର ବ୍ୟାଖ୍ୟା ଶୁଣି ରାମଗୁପ୍ତ କ୍ରୋଧରେ ଗରଜିଉଠିଲେ-"ମୂର୍ଖ ଅପଗଣ୍ଡ ବୃଦ୍ଧ ! ଚୁପ୍ ରୁହ । ନହେଲେ ତତେ ମାରି ଶେଷ କରିଦେବି ।" ଅମାତ୍ୟ ଆଡ଼କୁ ଚାହିଁ କହିଲେ-"ଅମାତ୍ୟ ! ଏହି ଦୁଇକଡ଼ିର ପଣ୍ଡିତଟା ଶେଷରେ ମୋ ବିରୁଦ୍ଧରେ ଯାଉଛି । ଏ ମିଛୁଆଟାକୁ କାଢ଼ି ଫିଙ୍ଗ ଏଠୁ । ତୁମେ କିଛି କହୁନ କାହିଁକି ? ଏ ଦୁର୍ଗ କାହାର, ତାହା କହୁନ ?"

ଅମାତ୍ୟ ଧୀର ସ୍ଥିର ହୋଇ କହିଲେ- "ଭଟ୍ଟାରକ ! ଏହି ବିଷୟରେ ମୁଁ କିଛି କହିବା ବର୍ତ୍ତମାନ ଠିକ୍ ହେବନାହିଁ । ଏହି ସମସ୍ୟା ମନ୍ତ୍ରୀ ପରିଷଦ ସମ୍ମୁଖରେ ଉପସ୍ଥାପିତ ହେବା ଉଚିତ । ପରିଷଦ ଯେଉଁ ନିଷ୍ପତ୍ତି ନେବେ ତାକୁ ପାଳନ କରିବା ଠିକ୍ ହେବ ।"

ଧ୍ରୁବଦେବୀ କହିଲେ- "ମୁଁ ଓ କୁମାର ପରିଷଦର ନିର୍ଣ୍ଣୟ ଗ୍ରହଣ କରିବୁ । କ'ଣ କହୁଛନ୍ତି କୁମାର ?"

କୁମାର ଚନ୍ଦ୍ରଗୁପ୍ତ ସ୍ୱୀକୃତି ସ୍ୱରୂପ ମୁଣ୍ଡ ହଲାଇ ହଁ କଲେ ।

ରାମଗୁପ୍ତ ଅନ୍ୟକୌଣସି ଉପାୟ ନଦେଖି ବାଧ ହୋଇକହିଲେ- "ପରିଷଦର ନିର୍ଣ୍ଣୟକୁ ମୋର ମାନିବାରେ ଆପତ୍ତି ରହିବ ନାହିଁ । ଅମାତ୍ୟ ଶିଖରସେଣ ! ତୁମେ ଯାଇ ପରିଷଦର ବୈଠକ ଡକାଇବାର ବ୍ୟବସ୍ଥା କର ।"

ଅତ୍ୟନ୍ତ ବିଚଳିତ ହୋଇ ସେଠାରୁ ରାମଗୁପ୍ତ ଓ ଅମାତ୍ୟ ପ୍ରସ୍ଥାନ କଲେ ।

ମନ୍ତ୍ରୀ ପରିଷଦର ବୈଠକ କେତେ ଘଣ୍ଟା ଧରି ଚାଲିଥାଏ । ପରିଷଦର ସଦସ୍ୟମାନେ ଗୁରୁତ୍ୱଦେଇ ପରସ୍ପର ମଧ୍ୟରେ ଆଲୋଚନା କରୁଥା'ନ୍ତି । ବୈଠକ ଗୃହରେ ରାମଗୁପ୍ତ ଓ ଧ୍ରୁବଦେବୀ । କୁମାର ଚନ୍ଦ୍ରଗୁପ୍ତ, ସାମନ୍ତଗଣ, ଅମାତ୍ୟ ପ୍ରମୁଖ ଉପସ୍ଥିତ ଥା'ନ୍ତି । ଅନେକ ସମୟ ଧରି ଆଲୋଚନା ହେଲାପରେ ମନ୍ତ୍ରୀପରିଷଦର ଅଧ୍ୟକ୍ଷ ସମବେତ ସମସ୍ତଙ୍କୁ ଉଦ୍‌ବୋଧନ ଦେଇ କହିଲେ-"ମହାରାଜ ରାମଗୁପ୍ତ, ସମ୍ମାନନୀୟ ସଜ୍ଜନ ପଣ୍ଡିତ ମଣ୍ଡଳୀ ! ମୁଁ ଏବଂ ମୋର ପରିଷଦର ମାନନୀୟ ସଦସ୍ୟମାନେ ଏହି ସମସ୍ୟା ଉପରେ ପୁଙ୍ଖାନୁପୁଙ୍ଖ ଆଲୋଚନା ପରେ ଏହି ସିଦ୍ଧାନ୍ତ ନେଲେ ଯେ ଶକଦୁର୍ଗ ଉପରେ କୁମାର ଚନ୍ଦ୍ରଗୁପ୍ତ ଓ ମହାଦେବୀଙ୍କର ଅଧିକାର ସମ୍ପୂର୍ଣ୍ଣ ନ୍ୟାୟସଙ୍ଗତ । ରାମଗୁପ୍ତ ଏ କ୍ଷେତ୍ରରେ ହସ୍ତକ୍ଷେପ କରିବା ଅନୁଚିତ ହେବ ।"

ରମଗୁପ୍ତ ଚିତ୍କାର କଲେ-"କାହିଁକି ?"

ପରିଷଦର ଅଧକ୍ଷ ଶାନ୍ତ ସ୍ୱରରେ କହିଲେ- "ଯଦିଓ ପରିଷଦ ଭଟ୍ଟାରକଙ୍କର କାହିଁକିର ଉତ୍ତର ଦେବାକୁ ବାଧ୍ୟନୁହେଁ, ତଥାପି ମୁଁ ଏହି 'କାହିଁକି'ର ଉତ୍ତର ଦେଉଛି । ରାଜାର ପ୍ରଧାନ କର୍ତ୍ତବ୍ୟ ହେଉଛି ରାଜ୍ୟର ସୁରକ୍ଷା, ମର୍ଯ୍ୟାଦା ରକ୍ଷା କରିବା ଓ ପ୍ରଜାମାନଙ୍କୁ ରକ୍ଷାକରିବା, କିନ୍ତୁ ଯେଉଁ ବ୍ୟକ୍ତି ନିଜେ ସ୍ୱୟଂ କୁଳର, ରାଜ୍ୟର ସମ୍ମାନ ସହିତ ନିଜ ପତ୍ନୀର ସୁରକ୍ଷା କରିପାରିଲା ନାହିଁ ସେ ରାଜ୍ୟ କିମ୍ବା ରାଜ୍ୟର ପ୍ରଜାଙ୍କର କିପ୍ରକାର ସୁରକ୍ଷା କରିବ ? ତେଣୁ ଅତ୍ୟାଚାରୀ, ଆଚରଣହୀନ, କାପୁରୁଷ ରାମଗୁପ୍ତଙ୍କର ଗୁପ୍ତ ସାମ୍ରାଜ୍ୟର ମହାନ୍ ସିଂହାସନ ଉପରେ ସୁଦ୍ଧା ବସିବାର କୌଣସି ଅଧିକାର ନାହିଁ । ପରିଷଦ ରାମଗୁପ୍ତଙ୍କ ଉପରେ ମହାଅଭିଯୋଗର ଆରୋପ ଲଗାଇ ତାଙ୍କୁ ମଗଧର ସିଂହାସନରୁ ବହିଷ୍କୃତ କରୁଛି ଏବଂ ଏହା ସହିତ ଘୋଷଣା କରୁଛି ଯେ ଏହି ସିଂହାସନରେ ପ୍ରକୃତ ଅଧିକାରୀ ଚନ୍ଦ୍ରଗୁପ୍ତଙ୍କୁ ସେଥିରେ ଅଧିଷ୍ଠିତ କରାଉଛି । ତାଙ୍କୁ ରାଜ୍ୟର ରାଜ୍ୟ ପରିଚାଳନାର ସମସ୍ତ ଦାୟିତ୍ୱ ହସ୍ତାନ୍ତରିତ କରୁଛି ।"

ପରିଷଦର ନିର୍ଣ୍ଣୟ ଶୁଣିଲା ପରେ ସମସ୍ତ ସଭାସଦ, ସଦସ୍ୟ ତଥା ଉପସ୍ଥିତ ଜନସାଧାରଣ ଆନନ୍ଦ ଉଲ୍ଲାସରେ ଜୟଧ୍ୱନି କରିବାକୁ ଲାଗିଲେ –'ମହାରାଜ ଚନ୍ଦ୍ରଗୁପ୍ତଙ୍କର ଜୟ ହେଉ' ଧ୍ୱନିରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଲା । ଅମାତ୍ୟଙ୍କ ମୁହଁରୁ ହସ ଲିଭି ଯାଇଥିଲା । ପରିଷଦ ଏଭଳି ନିଷ୍ପତ୍ତି ନେବ ବୋଲି ସେ କଳ୍ପନା କରିପାରିନଥିଲେ । ରାମଗୁପ୍ତ ଭୟରେ ଏପଟ ସେପଟ ଦେଖୁଥିଲେ । ତାଙ୍କୁ ଲାଗୁଥିଲା ଯେ ସେ ବନ୍ଦୀ ହେବେ । ତେଣୁ ତାଙ୍କର ହାତ ବାରମ୍ବାର ଖଣ୍ଡାର ଖୋଳପାକୁ ଯାଉଥିଲା । ପାଟିକରି କହିଲେ-"ତୁମେ ସମସ୍ତେ ବିଦ୍ରୋହୀ, ମିଥ୍ୟାବାଦୀ । ତୁମମାନଙ୍କର ଛଳକପଟ ଯୋଗୁଁ ମୁଁ ପରାଜିତ ହେଲେ ମଧ୍ୟ ନିଜର ଅଧିକାର କୌଣସି କାଳେ ଛାଡ଼ିବି ନାହିଁ । ଯିଏ ମୋଠାରୁ ରାଜ୍ୟ ଛଡ଼ାଇନେବ ମୁଁ ତା'କୁ ଖଣ୍ଡାରେ ହାଣି ଶେଷ କରିଦେବି ।"

ଅମାତ୍ୟ ରାମଗୁପ୍ତଙ୍କ ପ୍ରଳାପ ବନ୍ଦ କରିବାକୁ ଯାଇ ବୁଝାଇଲେ- "ମହାରାଜ ! ପରିଷଦର ନିଷ୍ପତ୍ତି ହିଁ ଶେଷ ନିର୍ଣ୍ଣୟ ମାତ୍ର । ଯାହାହେଲେ ମଧ୍ୟ ଏହାକୁ ସ୍ୱୀକାର କରିବାକୁ ପଡ଼ିବ । ସମୂହ ନିଷ୍ପତ୍ତିକୁ ବିରୋଧ କରିପାରିବେ ନାହିଁ । ଆପଣଙ୍କୁ ମାନିବାକୁ ହିଁ ପଡ଼ିବ ।"

ରାମଗୁପ୍ତ ଆହୁରି ବିକଳ ଭାବରେ ଅମାତ୍ୟଙ୍କୁ ଚାହିଁ କହିଲେ- "ଅମାତ୍ୟ ! ତୁମେ ଏକଥା କହୁଛ ?"

–"ହଁ, ଭଟ୍ଟାରକ ! ମୁଁ ପରିଷଦକୁ ଅବମାନନା କରିପାରିବିନାହିଁ ।"

ଧ୍ରୁବଦେବୀ ରାମଗୁପ୍ତଙ୍କୁ ଧମକଦେଲା ଭଳି କହିଲେ, ''ଭଟ୍ଟାରକ ! ତୁମେ ଏଠାରୁ ତଥା ରାଜ୍ୟରୁ ବାହାରି ଚାଲିଯାଅ । ଯେପରି ଭବିଷ୍ୟତରେ କେବେହେଲେ ଏହାର ସୀମା ନମାଡ଼ ।''

ନିର୍ଲ୍ଲଜ ରାମଗୁପ୍ତ ତଥାପି ନିଜର ଆଣ୍ଠ ଛାଡୁନଥା'ନ୍ତି –''ଏହାକୁ କ'ଣ ମୁଁ ଆଦେଶ ନା ପ୍ରାର୍ଥନା ବୋଲି ଭାବିବି ?''

–''ହଁ..ହଁ ଆଜ୍ଞା ! ଏହା ହିଁ ମହାଦେବୀର ଆଜ୍ଞା । ମୁଁ କୁମାର ଚନ୍ଦ୍ରଗୁପ୍ତଙ୍କର ଜୀବନସଙ୍ଗିନୀ ହେବାପାଇଁ ପରିଷଦ ସମ୍ମୁଖରେ ଘୋଷଣା ମଧ କରି ସାରିଛି ।''

ରାମଗୁପ୍ତ ଚୋରେଇ ଚୋରେଇ ସମସ୍ତଙ୍କୁ ଦେଖିଲେ । ହୁଏତ କେହିହେଲେ ତାଙ୍କୁ ସମର୍ଥନ ଅବା କରିବ । କିନ୍ତୁ ସମସ୍ତଙ୍କର ଦୃଷ୍ଟିରେ ତାଙ୍କ ନିଜ ପ୍ରତି ଅସୀମ ଘୃଣା ଅବହେଳା ଦେଖି ଡରିଗଲେ ।

–''ଆରେ ! ଏଠାରେ କ'ଣ ସମସ୍ତେ ଗୋଟିଏ ରାଗରେ ଗୀତ ଗାଉଛନ୍ତି । ସତରେ କ'ଣ ମୁଁ କାପୁରୁଷ, ଭୀରୁ ?''

ମହାଦେବୀ ଚିତ୍କାର କରିଉଠିଲେ,–''ହଁ ତୁମେ ଭୀରୁ । ତୁମେ ଅପଦାର୍ଥ ।''

ରାମଗୁପ୍ତ ଆହୁରି ଜୋର୍‌ରେ ପାଗଳ ଭଳି ହସିବାକୁ ଲାଗିଲେ । ନିଜର ବସ୍ତ୍ର ଚିରିପକାଇଲେ, ବାଳକୁ ମୁଠା ମୁଠାକରି ଟାଣିବାକୁ ଲାଗିଲେ । ପ୍ରଳାପ କରିବାକୁ ଲାଗିଲେ, ହାଃ..ହାଃ...ହାଃ... ମୁଁ ଭୀରୁ... କାପୁରୁଷ, ହାଃ...ହାଃ...ହାଃ.. ଶୁଣ ସମସ୍ତେ ମନଦେଇ ଶୁଣ ! ମୁଁ କ୍ଲୀବ । ମୁଁ ବଞ୍ଚି ଥାଉ ଥାଉ କେହି ରାଜା ହୋଇପାରିବ ନାହିଁ । ଏ ରାଜ୍ୟ ମୋର ... ଏ ସିଂହାସନ ମୋର... ହାଃ..ହାଃ..ହାଃ.. କହି କହି ଯିବାକୁ ଉଦ୍ୟତ ହେଲେ ।

ଏହା ପୂର୍ବରୁ କ'ଣ ହେଉଛି ବୋଲି ସମସ୍ତେ ଭାବିଲାବେଳକୁ ରାମଗୁପ୍ତ ନିଜର ଖଣ୍ଡାକୁ ବାହାର କରିଆଣିଲେ ଓ ନିଜର ଗଳା ଉପରେ ରଖି ଜୋର୍‌ରେ କାଟିଦେଲେ । ଖଚ୍ ଖଚ୍ ଶବ୍ଦରେ ରାମଗୁପ୍ତଙ୍କ ମୁଣ୍ଡ ବେକରୁ ଅଲଗା ହୋଇ ତଳେ ପଡ଼ିଗଲା । ଚତୁର୍ଦ୍ଦିଗରେ ଲାଲ ରକ୍ତର ନଦୀ ବୋହିଗଲା ।

୦୦୦



ସମକାଳୀନ ଓଡ଼ିଆ କଥା ସାହିତ୍ୟ ଓ କବିତା ସର୍ଜନରେ ନିଭୃତ-ବ୍ୟକ୍ତିତ୍ୱର ନୂତନ ସ୍ୱାକ୍ଷର-ଡକ୍ଟର ବିଧୁପ୍ରଭା ରଥ । ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ମୌଳିକ ଦୃଷ୍ଟିଭଙ୍ଗୀ ପାଇଁ ପାଠକ ଓ ସମାଲୋଚକ ମାନଙ୍କଦ୍ୱାରା ସେ ଶ୍ରଦ୍ଧାର ସହିତ ସ୍ୱୀକୃତ । ଓଡ଼ିଆ ଭାଷା ଓ ସାହିତ୍ୟର ଛାତ୍ରୀ ଭାବେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ଓ ସ୍ୱର୍ଣ୍ଣ ପଦକ ପ୍ରାପ୍ତ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀର ସୌନ୍ଦର୍ଯ୍ୟତାତ୍ତ୍ୱିକ ଅନୁଶୀଳନ' ଗବେଷଣା ପାଇଁ ଡକ୍ଟରେଟ ଡିଗ୍ରୀର ଅଧିକାରିଣୀ । ତାଙ୍କ ରଚିତ ଓ ପ୍ରକାଶିତ ଗବେଷଣା ଗ୍ରନ୍ଥ ମଧ୍ୟରେ 'ଠାକୁର ଅଭିରାମ ପରମହଂସଙ୍କ ଜୀବନ ସାହିତ୍ୟ ଓ ଦର୍ଶନ', 'ସୀତାକାନ୍ତ ମହାପାତ୍ରଙ୍କ କାବ୍ୟମାନସ ମିଥ୍', ଲଳିତ ନିବଂଧ ମଧ୍ୟରେ 'ପ୍ରେମ ଓ ପ୍ରତୀକ୍ଷା', 'ପ୍ରେମରୁ ସମାଧି', 'ମିଛ ମଣିଷର ଅସ୍ମିତା', 'ହୃଦୟ ଭିକ୍ଷା', ଉପନ୍ୟାସ ମଧ୍ୟରେ 'ଶୁଣ ଫାଲଗୁନି', 'ମେଘାମ୍ବରୀ', 'ସୁଲଗ୍ନା', 'ରକ୍ତ ରଞ୍ଜିତ ନାୟକ ଭଗତ ସିଂ', 'ଚାଣକ୍ୟ ଏବଂ ମଗଧର ମହାରାଣୀ' ଅନ୍ୟତମ । 'ହଂସଧ୍ୱନି' ଓ 'ତମେ ଆସୁଛ ବୋଲି' ନାମକ ଦୁଇଟି କବିତା ସଂକଳନ ପ୍ରକାଶିତ । ଜୀବନ ଓ ଜଗତ ପ୍ରତି ଉଦାର ଦରଦୀ ଦୃଷ୍ଟିଭଙ୍ଗୀ ସହିତ ପ୍ରେମ ପ୍ରତି ପ୍ରତ୍ୟୟପୂର୍ଣ୍ଣ ପ୍ରତିବଦ୍ଧତା ତାଙ୍କ କଥା ଓ କବିତାରେ ପ୍ରତିଫଳିତ । ଡକ୍ଟର ବିଧୁପ୍ରଭା ସଂପ୍ରତି ମହିଳା ଓ ଶିଶୁ ବିକାଶ ପ୍ରକଳ୍ପ ଅଧିକାରୀ ଭାବେ ଇନ୍ଦିରା ନଗର-୨ୟ ଲେନ୍, ବ୍ରହ୍ମପୁରଠାରେ ସପରିବାର ଅବସ୍ଥାପିତ ।



ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦବିହାରୀ, କଟକ-୭୫୩୦୦୨